# ମିତ୍ର ସ୍ୱଳ୍ପ

ବାମାଚରଣ ମିତ୍ର



ଆଦ୍ୟା ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର : କଟକ-୨

ପ୍ରଥମ ସଂସ୍କରଣ
ଶ୍ରୀଗୁଣ୍ଡିଚା, ୧୯୮୧

ମୁଦ୍ରାକର
ଭାରତୀ ପ୍ରେସ୍
କଟକ

ମୂଲ୍ୟ
ବୋର୍ଡ଼ ବନ୍ଧାଇ : ୨୦ ଟଙ୍କା ମାତ୍ର
ସାଦା ବନ୍ଧାଇ : ୧୫ ଟଙ୍କା ମାତ୍ର

# *Mitra Swalpa*

Bamacharan Mitra

Publisher
Sri Anant Misra
Cuttack Students' Store
Balubazar, Cuttack-2

First Edition
July, 1981

Price
Deluxe : Rs. 20.00
Popular : Rs. 15.00

# ଉତ୍ସର୍ଗ

ପିତା ୰ କୃଷ୍ଣ ପ୍ରସାଦ ମିଶ୍ରଙ୍କ ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ

# ସୂଚୀପତ୍ର

# ମିମିର ଭୂଗୋଳ ଶିକ୍ଷା

ଜୀବନ ବାବୁ ମନସ୍ଥ କଲେ, ନା, ମିମିକୁ ଗଢ଼ିବାକୁ ହେବ··· ।

ମିମି ତାଙ୍କର ଏକ ମାତ୍ର ବଂଶଧର । ବୟସ ବର୍ତ୍ତମାନ ନଅ ବର୍ଷ । ପଞ୍ଚମ ଶ୍ରେଣୀରେ ପାଠ ପଢ଼େ । ଜୀବନ ବାବୁ ଜୀବନପଣ କରି ତାକୁ ଗଢ଼ିବାରେ ଲାଗିଛନ୍ତି । ତାକୁ ଗଢ଼ିବାର ନାନା ଯୋଜନା ଅଛି ତାଙ୍କର । କିନ୍ତୁ ସେ ଯୋଜନା ସବୁ ସମ୍ଭାଳିବାରେ ମିମିର ବା ସାମର୍ଥ୍ୟ କେତେ ? ହେଲେ ଜୀବନ ବାବୁଙ୍କ ସେଥିପ୍ରତି ନଜର ନାହିଁ । ବ୍ୟର୍ଥତା ତାଙ୍କୁ କରିଛି ନିର୍ମମ ସ୍ୱପ୍ନବିଳାସୀ । ବ୍ୟର୍ଥତା ତାଙ୍କୁ କରିଛି ଅନ୍ଧ ଓ କ୍ରୂର ।

ସକାଳୁ ବ୍ୟାୟାମ, ତା'ପରେ ଦୁଇଟି ଅଣ୍ଡା ଓ ଗିଲାସେ ଲେମ୍ବୁ ସରବତ ପରେ ନାଚ ଓ ଗୀତ ଶିକ୍ଷା, ତା'ପରେ ପଢ଼ା, ତା'ପରେ ଚାଟିଆଏ ମାଂସ ସହ ଭାତ ଖାଇ ଇସ୍କୁଲ, ଇସ୍କୁଲରୁ ଫେରି ପୁଣି ଗୀତ, ଚାଲିଛି ଏମିତି ରାତି ଏଗାର ପର୍ଯ୍ୟନ୍ତ । ମିନଟିଏ ବି ଫୁରୁସତ ନାହିଁ । ଗୃହିଣୀ, ଚାକର ବାକର ସମସ୍ତେ ଲାଗିଛନ୍ତି ମିମି ପଛରେ । ଟଙ୍କା ପାଣି ପରି ଖରଚ ହେଉଛି । ନ ଥିଲେ ଧାର ହେଉଛି, ଭ୍ରୂକ୍ଷେପ ନାହିଁ ସେଥିପ୍ରତି । ଚାକର ବାକରଙ୍କୁ ସୁବର୍ଣ୍ଣ ସୁଯୋଗ ପଡ଼ିଯାଇଛି, ବେଶ୍ ଦି ପଇସା ହାତପେଠ ହେଉଛି ତାଙ୍କର ।

ହେଲେ ମିମିର ବା ଶକ୍ତି କେତେ ସେ ନଅଁଗିଳା ଯୋଜନା ସବୁକୁ ସମ୍ଭାଳିବାକୁ । ସେ ଯୋଜନାରେ ମିମିର ମଙ୍ଗଳ ବା ଭବିଷ୍ୟତର ତ ସ୍ଥାନ ନାହିଁ, ଅଛି କେବଳ ଜୀବନ ବାବୁଙ୍କ ପ୍ରତିଷ୍ଠା ପାଇବାର ନିର୍ମମ ଅନ୍ଧ ବ୍ୟଗ୍ରତା । ସେ ଯୋଜନା ଭାରରେ ମିମି ନିଷ୍ପେଷିତ ହୋଇ ଦିନକୁ ଦିନ ଆହୁରି ଦୁର୍ବଳ ହୋଇ ପଡ଼ୁଛି ।

ମିମି ପଢ଼ାରେ ଭୁଲ କଲେ ଜୀବନ ବାବୁ ଯେତେବେଳେ ଧୈର୍ଯ୍ୟ ହରାଇ ତାକୁ ନିର୍ମମ ଭାବରେ ପ୍ରହାର କରନ୍ତି ସେତେବେଳେ ତାଙ୍କ ବଡ଼ ଭାଇ ତାଙ୍କୁ

କହନ୍ତି, ଶାନ୍ତ ହ, ଶାନ୍ତ ହ, କାହିଁକି ସେଥିରେ ମରୁଚୁ , ଅସ୍ୱାଭାବିକ ଭାବରେ ଚେଷ୍ଟା କଲେ ଫଳ ଓଲଟା ହୁଏ । ଜୀବନ ବାବୁ ଥରେ ରାଗିଯାଇ କହିଲେ ତୁମର କଅଣ ଗଲା, ମୋ ଗାଳିକୁ ମୁଁ ଲଣ୍ଡବାଟେ ଖୋଜୁଚି । ତାଙ୍କ ବଡ଼ ଭାଇ ହୃଦୟ ବାବୁ ମ୍ଳାନ ହସି କହିଥିଲେ, 'ତୁ ବୁଦ୍ଧିମାନ୍ ଜୀବନ, ତୁ କେତେ ନିର୍ମମ ହୋଇ ଯାଉଚୁ । ଯେଉଁ ମିମିକୁ ତୁ...... ।' ସେ ଆଉ କହି ନ ପାରି ମୁହଁ ବୁଲାଇ ଦେଇଥିଲେ ।

ମିମିର ସତେ ସେ ଦିନ ଆଉ ନାହିଁ । ସରି ଯାଇଛି ସେ ଦିନ । ତାକୁ ଯେତେବେଳେ ଏକବର୍ଷ ବୟସ ସେତେବେଳେ ଦିନେ ତା'ର ବାପା ଶୋଇଥିବା ବେଳେ ମିମି ବାପାର ନାକକୁ ଅନେକ ବେଳ ଯାଏ ଦେଖି ଶେଷରେ ସିଦ୍ଧାନ୍ତ କଲା, ନାକଟା ନିହାତି ଅଡ଼ୁଆ କରୁଥିବ ବାପାଙ୍କୁ ନିଶ୍ଚୟ । ନାକକୁ ସେ ଜାବୁଡ଼ି ଧରି ଉଠାଇ ଫିଙ୍ଗି ଦେବାକୁ ଚେଷ୍ଟା କଲା । ତାହାର ନଖରେ ବାପାଙ୍କ ନାକ ଚିରି ହୋଇଗଲା । ରକ୍ତ ବୋହିଲା । ଜୀବନ ବାବୁଙ୍କ ନିଦ ଭାଙ୍ଗିଗଲା ଯନ୍ତ୍ରଣାରେ କିନ୍ତୁ ସେ ଉଠି ପାରିଲେ ନାହିଁ କାଳେ ତାଙ୍କ ବୁକୁରେ ବସିଥିବା ମିମି ପଡ଼ିଯିବ ବୋଲି । ଝିଅ ନଖାତ କାନରେ ରକ୍ତ ପୋଛି ସେ ହସି ମିମିକୁ ଚୁମ୍ବନ ଦେଲେ । ତା'ପରେ ପାଣି ଲାଗି ସେ କ୍ଷତ ଘା ହୋଇ ଶୁଖିବାକୁ ଲାଗିଲା ଅନେକ ଦିନ । କିଛି ଖର୍ଚ୍ଚ ମଧ୍ୟ ହେଲା ସେଥିପାଇଁ । ସେ ଚିହ୍ନ ଆଜି ପର୍ଯ୍ୟନ୍ତ ଅଛି । ସେତେବେଳେ କିନ୍ତୁ ଜୀବନ ବାବୁଙ୍କୁ କେହି ଦାଗ କଥା ପଚାରିଲେ ସେ ହସି ହସି ତା'ର ଇତିହାସ କହୁଥିଲେ ଗର୍ବର ସହିତ, ସତେ ଯେମିତି କେଉଁ ଯୁଦ୍ଧରେ ସେ ଖଡ଼୍ଗାଘାତର ଚିହ୍ନ । ସତ କହିଲେ, ଏ ବି ତ ଜୀବନସଂଗ୍ରାମର ଗୋଟାଏ ଦାଗ ।

ଜୀବନ ବାବୁଙ୍କ ବଡ଼ ଭାଇ ଶାନ୍ତ ପ୍ରକୃତିର ଲୋକ । ସାମାନ୍ୟ ଗୋଟିଏ ଚାକିରି ତାଙ୍କର । ଯାହା ସଚ୍ଚୋଟ ଉପାୟରେ ରୋଜଗାର କରନ୍ତି ସେଥିରେ ଦୁଃଖରେ ଚଳୁଥିଲେ ମଧ୍ୟ କେବେହେଁ ତାଙ୍କୁ କେହି ଆପତ୍ତି କରିବାର ଶୁଣି ନାହାନ୍ତି । ସଦାବେଳେ ହସ ହସ ମୁହଁଟି । ଦପ୍ତର କାମ ସାରି ସିଧାସଳଖ ଘରକୁ ଆସି ଗୁହାଳ ସଫା, ନର୍ଦ୍ଦମା ସଫା, କନ୍ଥା ସିଲେଇ, ଭାଗବତ ପଢ଼ା, ପୂଜା ଆଦି କାମରେ ସେ ଲାଗି ଯାଆନ୍ତି । ତାଙ୍କର ସ୍ତ୍ରୀ ମଝିରେ ମଝିରେ ଦୁଃଖ କଷ୍ଟ କଥା କହି ବସିଲେ ସେ କହନ୍ତି, ଭଗବାନଙ୍କ ପ୍ରତ୍ୟେକ କଥାରେ ଆମେ ଯଦି ଆପତ୍ତି କରୁ ତେବେ ସୁଖ ମିଳିବ କେଉଁଠି ? ଲକ୍ଷେ ପାଇଲେ ବି ସୁଖ ପାଇବ ନାହିଁ ।

ସେ ଯାହା ଦେଉଛନ୍ତି ବୁଝି ଶୁଝି ଦଉଛନ୍ତି । ବେଶୀ ଦେଲେ ଆମେ ସମ୍ଭାଳି ପାରିବୁ ନାହିଁ ।

ସ୍ତ୍ରୀ କିନ୍ତୁ ଛାଡ଼ିବାର ନୁହଁନ୍ତି । କହିଲେ, 'ଏସବୁ ଅପାରଗ ଲୋକର କଥା । ତୁମ ଭଳି ଯଦି ସମସ୍ତେ ହୁଅନ୍ତେ ତାହାହେଲେ ଏ ଦେଶ କେବେଠୁଁ ଦରିଦ୍ର ହୁଅନ୍ତାଣି ।'

ହୃଦୟ ବାବୁ ହସି କହିଲେ, 'ତା ହୁଏତ ସତ । କିନ୍ତୁ ଧନୀ ଉଚ୍ଛୃଙ୍ଖଳ ଦେଶ ବା ଲୋକ ତାହାଠୁ ଆହୁରି ବିପଦ୍‌ଜନକ । ଅନେକ ଲୋକର କଷ୍ଟ ଓ ମୃତ୍ୟୁର କାରଣ ହୁଏ ସେ ।'

ସ୍ତ୍ରୀ ଦୀର୍ଘ ନିଶ୍ୱାସ ପକାଇ କହିଲେ, 'ତୁମର ସାଙ୍ଗର କେତେ ଲୋକ ଉପରକୁ ଉପରକୁ ଯାଇ କେଉଁଠି ଉଠିଲେଣି, ଅଉ ତୁମେ......'

ହୃଦୟ ବାବୁ ହସିଲେ । କହିଲେ, 'କେହି ସିନା ଆନନ୍ଦ କେମିତି ମିଳିବ ସେ ଚିନ୍ତା କରନ୍ତି, ନା ଖାଲି ଅନ୍ୟକୁ ଚପି ଯିବାର ଦୁଶ୍ଚିନ୍ତା ! ଜ୍ଞାନ ହେଉ, ଅର୍ଥ ହେଉ, କ୍ଷମତା ହେଉ, କ୍ରୀଡ଼ା ହେଉ ସବୁଥିରେ ମୁଁ କେମିତି ଅନ୍ୟକୁ ଚପି ଯିବି । ଗାଗାରିନ୍ ମହାଶୂନ୍ୟକୁ ଗଲା ! ଅନେକ ଆକ୍ଷେପ କଲେ ଜଣେ ଋଷୀୟ ଏ କଥା ପାରିଲା, ଆମେ ପାରିଲୁ ନାହିଁ । କହୋ, କେତେବର୍ଷ ପରର ଇତିହାସ ବର୍ଣ୍ଣନା କହିବ ଋଷୀୟ ଲୋକ ଯାଇଥିଲା, ଆଉ କେହି ପାରି ନ ଥିଲେ ? ମାନବ ଜାତିର ବିକାଶର ଇତିହାସ କହିବ ଅମୁକ ଯୁଗରେ ମାନବ ଜାତିର ବୁଦ୍ଧି ଏମିତି ବିକଶିତ ହୋଇଥିଲା । ଯିଏ ବି ଯାହା କରୁଛି ସେ ଯଦି ମାନବ ଜାତିର ଚରମ ବିକାଶ ପାଇଁ କରେ ସେଥିରେ ସମସ୍ତଙ୍କର ମଙ୍ଗଳ । ନାହିଁ ତ ଗଲା ଭିଟାକଟି ଯୁଦ୍ଧ । ସେ ବିକାଶରେ କିଛି ଲାଭ ନାହିଁ, ବରଞ୍ଚ ମରଣ ।' ସ୍ତ୍ରୀ ତାଙ୍କର ମୁହଁ ମୋଡ଼ି ଚାଲିଗଲେ ।

ହୃଦୟ ବାବୁ ମିମିକୁ ଖୁବ ସ୍ନେହ କରନ୍ତି । ମିମିର ମଧ୍ୟ [illegible] ବାବୁ । ଜୀବନ ବାବୁ ଯେତେବେଳେ ଚଡ଼ାଉ ପଡ଼ାଉ ମିମିକୁ ପ୍ରହାର କରନ୍ତି ସେତେବେଳେ ହୃଦୟ ବାବୁ ତାଙ୍କ ଘର ଭିତରେ ଆଖି ବୁଜିଦେଇ ବସି ଲୁହ ପୋଛନ୍ତି । ନିହାତି ସହି ନ ପାରିଲେ 'ଶ୍ରୀକୃଷ୍ଣ ଶ୍ରୀକୃଷ୍ଣ' ଜପନ୍ତି ।

ଦିନେ ଦିନ ବେଳରେ ଜୀବନ ବାବୁ ଭୂଟୋଙ୍କ ଫଟୋ ଦେଇ ଚାଲିଗଲେ କୁଳାଇଣେଇ ସହରକୁ । ମିମି ଭୁଟୋଙ୍କ ମୂର୍ଚ୍ଛନା କରିବାକୁ ଲାଗିଲା...କେତେଗୁଡ଼ାଏ

କେତେ ମିଶି ହୁଏ ଗୋଟିଏ ପରିବାର ଓ ଘର । କେତେଗୁଡ଼ିଏ ଘର ମିଳି ଗୋଟିଏ ଗ୍ରାମ ହୁଏ । କେତେଗୁଡ଼ିଏ ଗ୍ରାମ ମିଳି ଗୋଟିଏ ଥାନା, କେତେଗୁଡ଼ିଏ ଥାନା ମିଳି ହୁଏ ସବ୍‌ଡିଭିଜନ । କେତେଗୁଡ଼ିଏ ସବ୍‌ଡିଭିଜନ ମିଳି ଗୋଟିଏ ଜିଲ୍ଲା । କେତେ-ଗୁଡ଼ିଏ ଜିଲ୍ଲା ମିଶି ଗୋଟିଏ ପ୍ରଦେଶ । କେତେଗୁଡ଼ିଏ ପ୍ରଦେଶ ମିଶି ହୁଏ ଗୋଟିଏ ଦେଶ । କେତେଗୁଡ଼ିଏ ଦେଶ ମିଶି ହୁଏ ଏକ ମହାଦେଶ । ଏପରି କେତେଗୁଡ଼ିଏ ମହାଦେଶ ମିଶି ପୃଥିବୀର ଭୂଭାଗ ।

ମିମି ମୁହଁରେ ପଢ଼ି ଯାଉଛି ସତ, ମନ କିନ୍ତୁ ତା'ର ବଡ଼ ବାପାଙ୍କଠି ଓ ନାନୀଙ୍କ ପାଖରେ । ବଡ଼ ଏଗାର ବାଜିଲାଣି । ବୋଉ ରୋଷେଇଶାଳରେ ଚୁଲ୍ଲୀ ମୂଳରେ ଶୋଇପଡ଼ିଛି । ମିମିକୁ ଖାଇବାକୁ ଡାକିବାକୁ ତାଙ୍କର ସାହସ ନାହିଁ । ଜୀବନ ବାବୁ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି । ସେ ସେତେବେଳେ ବେଦ ଉପନିଷଦ୍‌ରୁ ଶ୍ଳୋକ ସବୁ ଉଦ୍ଧାର କରି କୁଳୀନ ବ୍ରାହ୍ମଣଙ୍କର ସମାଜରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାରେ ଲାଗିଛନ୍ତି । ଅବୁପଠ ଘରେ ହୃଦୟ ବାବୁ ଅଭୁକ୍ତ ବସିଛନ୍ତି । ମିମିର ପଢ଼ା ସରିଲେ ସେ ଓ ତା'ର ନାନୀ ତାଙ୍କ ସଙ୍ଗେ ନଇତି ଖାଆନ୍ତି । ନାନୀ ଏପର୍ଯ୍ୟନ୍ତ ଖାଇନାହିଁ, ମ୍ୟାଉଁ ମ୍ୟାଉଁ ରଡ଼ି ଛାଡ଼ୁଛି । ମିମି ଖାଇବାକୁ ନ ବସିଲେ ସେ ଖାଏ ନାହିଁ ।

ମିମିର ମନ ବଡ଼ ବାପାଙ୍କଠି ଆଉ ନାନୀଙ୍କଠି । ତଥାପି ସେ ଢୁଳାଇ ଢୁଳାଇ ପଢ଼ି ଚାଲିଛି । ବାପାଙ୍କ କଡ଼ା ଆଦେଶ, ସେ ନ ଫେରିବା ପର୍ଯ୍ୟନ୍ତ ମିମି ଯେପରି ପଢ଼ା ଜାଗାରୁ ନ ଉଠେ । ସେ ଆଦେଶ ଅମାନ୍ୟ କରିବାକୁ କାହାରି ସାହସ ନାହିଁ । କିନ୍ତୁ ପାଠରେ ମନ ନ ଥିବାରୁ ମିମିର ଆଖି ଢୋଳେଇ ଗଲାଣି । ସେ ଢୋଳେଇ ଢୋଳେଇ କହି ଚାଲିଛି, କେତେଗୁଡ଼ିଏ ଦେଶ ମିଶି ହୁଏ ଗୋଟିଏ ଘର । ଘରେ ବଡ଼ ବାପା ଥାଆନ୍ତି । ଯେଉଁ ଘରେ ବଡ଼ ବାପା ଥାଆନ୍ତି ତାକୁ କହନ୍ତି ମହାଦେଶ, ଯେଉଁଠି ନାନୀ ଅଛି, ମୋତେ ଡାକୁଛି । ତା'ପରେ ବାଁ'ର ହଠାତ୍ ଖିଆଲ ହେଲା କଅଣ ଗୁଡ଼ାଏ ସେ ଇସ୍ତାଡ଼ୁ ପିସ୍ତାଡ଼ୁ କହୁଛି । ଚମକି ଉଠି ସେ ଆଖି ରଗଡ଼େ ପୁଣି ପଢ଼ା ମୁଖସ୍ଥ ହୋଇଛି କି ନା ବୁଝିବାକୁ ଯାଇ ନିଜକୁ ନିଜେ ପ୍ରଶ୍ନ ପଚାରି ଉତ୍ତର ଦେବାକୁ ଲାଗିଲା···ହୁଁ···ହୁଁ···କେତେ-ଗୁଡ଼ିଏ ପୃଥିବୀ ମିଳି କଣ ହୁଏ କି ? କଅଣ ହୁଏ କି ?

ଏହାର ଉତ୍ତର ସେ ଦେଇ ପାରିଲା ନାହିଁ । ବ୍ୟସ୍ତ ହୋଇ ସେ ବହିର ପତ୍ର ଓଲଟାଇବାକୁ ଲାଗିଲା । କେଉଁଠି ତା'ର ଉତ୍ତର ପାଇଲା ନାହିଁ ।

ହୃଦୟ ବାବୁ କାନ ପାରି ସବୁ ଶୁଣୁଥାଆନ୍ତି । ମୁରୁକି ମୁରୁକି ହସୁ ଥାଆନ୍ତି କିନ୍ତୁ ଆଖିରେ ତାଙ୍କର ଲୁହ ।

ଏହି ସମୟରେ ଶୁଭିଲା ଗର୍ଜନ, ମିମି ଏଇ ତୋର ପଢ଼ା ? ଜୀବନ ବାବୁ କେତେବେଳୁ ଗୁପ୍ତରେ ଛିଡ଼ା ହୋଇ ମିମିକୁ ଲକ୍ଷ୍ୟ କରୁଛନ୍ତି କାହାରିକୁ ଜଣା ନାହିଁ ।

ହୃଦୟ ବାବୁ ଓ ମମିର ସ୍ୱପ୍ନରୁ ଅଚଡ଼ା ଖସିପଡ଼ିଲା । ହୃଦୟ ବାବୁ ସବୁ ବାଧା ଏଡ଼ାଇଦେଇ ଦୌଡ଼ି ଆସି ଛିଡ଼ା ହେଲେ ମିମି ପାଖେ ।

ଜୀବନ ବାବୁ ଥରେ ତରାଟି ତାଙ୍କୁ ଚାହିଁ ମିମି ପାଖରୁ ବହି ଛଡ଼ାଇ ଦେଇ ପଚାରିଲେ, 'ଜହ, ଗାଁ, ଥାନା, ସବ୍‌ଡିଭିଜନ, ଜିଲ୍ଲା, ପ୍ରଦେଶ, ଦେଶ, ମହାଦେଶ କାହାକୁ କହନ୍ତି ।'

ମିମି କେବଳ ବଲବଲ କରି ଚାହିଁଲା । ମନେ ତାରି କରୁ ନାହିଁ । ସେ ସବୁ କଅଣ ସେ ବୁଝି ବି ପାରିଲା ନାହିଁ । ମିଟିଂରେ ମିଟିଂରେ ସେ କଣେଇ କଣେଇ ବଡ ବାପାଙ୍କ ଆଡେ ଚାହୁଁ ଥାଏ । ସେ ଚାହାଣି ଜୀବନ ବାବୁଙ୍କୁ ଉତ୍‌କ୍ଷିପ୍ତ କରି ଦେଲା । କ୍ରୋଧରେ ସେ ବହିଟି ଫୋପାଡ଼ିଲେ ମିମି ଉପରକୁ । ଆଖିପତାରେ ବହି ବାଜିଲା । ମିମି ଯନ୍ତ୍ରଣାରେ ଚିତ୍କାର କରିଉଠିଲା । ମିମି କୋହ ଧଡ଼ପଡ଼ କରି ଉଠି ବସି ସ୍ୱର୍ଗ ନର୍କ [illegible] ଉଠାଇଲେ । ହୃଦୟ ବାବୁ ମିମିକୁ କୋଳକୁ ଉଠାଇ ନେଇ ଚାଲିଲେ ନିଜ [illegible] । ଜୀବନ ବାବୁ ତାଙ୍କ କୋଳରୁ ମିମିକୁ ଛଡ଼ାଇ ଆଣି ତଳେ ବସାଇ ଦେଇ ଦୁଇଗୋଡ଼ ଫାଙ୍କ କରି ତା' ପାଖରେ ଛିଡ଼ା ହେଲେ ।

ହୃଦୟ ବାବୁ ହୃଦୟଙ୍ଗମ କଲେ, ବର୍ତ୍ତମାନ ବାଧା ଦେଲେ ଜୀବନ ବାବୁଙ୍କ ମିମି ଉପରେ ଅତ୍ୟାଚାର ବଢ଼ିଯିବ ସବୁ ରାଗ ଯାଇ ପଡ଼ିବ ମିମି ଉପରେ । ତେଣୁ ସେ ମିମିକୁ କୋଳକୁ ଆଉଜାଇ ନେଇ କହିଲେ, ଅଚ୍ଛା ତୁ ଦେଖେ ମୁଁ ତାକୁ ଦଶ ମିନିଟରେ ସବୁ ପଢ଼ା କରାଇ ଦେଉଛି ।

ମିମି ସାହସ ପାଇ ବହିଟି ଖୋଲି ବଡ ବାପାଙ୍କ କୋଳକୁ ଆଉଜି ବସିଲା । ହୃଦୟ ବାବୁ ଗର୍ବରେ ଗଦଗଦ ହୋଇ ସେମିତି ଚୁପ୍ ହୋଇ ରହିଲେ ।

ହୃଦୟବାବୁ ବୁଝାଇବାକୁ ଲାଗିଲେ, କିନ୍ତୁ ମିମିର ଲାଗିଲା ଗୋଟାଏ ଖେଳ, ଚନ୍ଦ୍ର ଖେଳ । ସେ ପଚାରିଲା, 'ଅଚ୍ଛା ତେବେ, ବଡ ବାପା କହିଲ କେତେଗୁଡ଼ାଏ ପୃଥିବୀ ମିଶି କଅଣ ହୁଏ ।'

ହୃଦୟ ବାବୁ ବଲ ବଲ କରି ଚାହିଁଲେ କିଛି କ୍ଷଣ । ତା'ପରେ କହିଲେ, ଏମିତି କେତେଗୁଡ଼ାଏ ପୃଥିବୀ ଭଳିଆ ଗ୍ରହ ମିଶି ହୁଏ ସୌର ଜଗତ । 'ମୋହନ ସୂର୍ଯ୍ୟ ଚାରିପଟେ ଚକାଭଉଁରି ଖେଳୁ ଥାଆନ୍ତି ।'

ମିମି ଆନନ୍ଦରେ ତାଳିମାରି କହିଲା, 'ବାଃ ଭାରି ମଜା । ଅଚ୍ଛା, ତେବେ କେତେ-ଗୁଡ଼ାଏ ସୌର ଜଗତ ମିଶି କ'ଣ ହୁଏ ?' ପ୍ରଶ୍ନ ପଚାରି ସେ ବଡ ବାପାଙ୍କ ମୁହଁ [illegible] ହାତ ହଲାଇ କହିଲା, 'କହ ତ ପା-ରି-ବ-ନା-ହିଁ ଅ-ଆ-ଆ-ଜ ।' କିନ୍ତୁ ସେ ବଡ଼ ବାପାଙ୍କ ଅପାରଗତାରେ ମୁଗ୍ଧ ହୋଇ ଆନନ୍ଦରେ ବଡ଼ ବାପାଙ୍କ କୋଳରେ ଗଡ଼ି ଗଲା ।

ହୃଦୟ ବାବୁ କିନ୍ତୁ ଉତ୍ତର ଦେଲେ । ଆଖି ତାଙ୍କର ଛଳ ଛଳ । ସେ କହିଲେ, 'ମା, କୃଷ୍ଣ ଯେତେବେଳେ ସାନ ପିଲାଟିଏ, ଦିନେ ସେ ଗୁରୁଣ୍ଡି ଗୁରୁଣ୍ଡି ବୁଲି ମାଟି ଖାଉଥିଲେ, ଯଶୋଦା କୃଷ୍ଣଙ୍କୁ ମାଟି ଖାଇବାର ଦେଖି ତାଙ୍କୁ ଧରି କହିଲେ, ଆଁ କର ପାଟି, ଆଁ କର । ଭଗବାନ ଆଁ କରି ଦେଲେ । ଯଶୋଦା ତ ଦେଖି ବାବା ।' କଅଣ ଦେଖିଲେ ? ତା'ର ଉତ୍ତରରେ ହୃଦୟ ବାବୁ ଗାଇଲେ, 'କୋଇଲି ହାଇ ଯେ ମାରଇ ସୃଷ୍ଟି ତୁଣ୍ଡ, ତା ତୁଣ୍ଡେ ଦିଶିଲା ସପତ ବ୍ରହ୍ମାଣ୍ଡ ନେ କୋଇଲି ।' ପୁଣି ଗାଇଲେ, 'ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତା ପ୍ରତିଲୋମେ ବିରାଜଇ ।'

ଆଖି ପୋଛି ମିମିକୁ ଚୁମ୍ବନ ଦେଇ କହିଲେ, 'ମା ତୁ ଯେଉଁ ପ୍ରଶ୍ନ କଲୁ ସେ ଭୂଗୋଳ ନୁହେଁ, ତୋର । ଏ ଯେତେ ସବୁ ସୃଷ୍ଟି ହୋଇଛି, ପରମାଣୁଠାରୁ ଆରମ୍ଭ କରି କୋଟି କୋଟି ମହା ମହା ସୂର୍ଯ୍ୟ ପର୍ଯ୍ୟନ୍ତ, ସବୁ ମିଶି ହେଉଛନ୍ତି ସେ । ମା, କେ କହିପାରିବ ତାଙ୍କ କଥା !'

ହୃଦୟବାବୁଙ୍କ ଆଖିରୁ ପାଣି ଝରି ପଡ଼ୁଥାଏ । ମିମି କଅଣ ବୁଝିଲା କେ ଜାଣେ ସେ ବି କାନ୍ଦି ପକାଇଲା ଭେଁ କରି ।

# ଚଳଚ୍ଚିତ୍ର

ଫେଡ୍ ଇନ୍ —

ଜମିଦାର ଭୂପେନ୍ଦ୍ର ନାରାୟଣ ଭ୍ରମରବର ରାୟ ଜଳଖିଆ ସାରି ହାତ ଧୋଇବାକୁ ବାହାରିଲେ ବାରଣ୍ଡାକୁ । ଚାକର ପାଣିଢାଳ ଗାମୁଛା ଧରି ଆଗେ ଆଗେ ଗଲା । ବୈଠକର ଖଞ୍ଜା ପାରି ହୋଇ ଖମାର ଖଞ୍ଜା ପାଖରେ କଳାମୁହଁ ଖମାର କଣରେ ଯେଉଁଠି ବଡ଼ବଡ଼ ଚୂନ ବସ୍ତା ରହୁଛି, ସେଇଠି ଗୋଧୂଳିର ଅନ୍ଧାର ଲେଖାଏ ଜମି ସାରିଲାଣି । ଭୂପେନ୍ଦ୍ର ସେ କଣବାଟେ ଚାଲି ଯିବାବେଳେ ଅନ୍ଧାର ଭିତରେ ଧଳା ହୋଇ କ'ଣ ଟିକିଏ ହଲିଗଲା । ଭୂପେନ୍ଦ୍ର ଦେଖି ନଦେଖିଲା ପରି ମୁହଁ ହାତ ଧୋଇ ଗାମୁଛାରେ ପୋଛି ଆଉ ଖଞ୍ଜାକୁ ନ ଫେରି ବାଡ଼ପଟେ ଦେଇ ଚାଲିଗଲେ କୁଟୀରଘରକୁ । ଗଲାବେଳେ କହିଗଲେ, 'ମଦନା, ପାନ, ଲଣ୍ଠଣ ଶୀଘ୍ର ନେଇଆ ।'

ଭୂପେନ୍ଦ୍ର ଚାଲିଯିବା ପରେ ଅନ୍ଧାର ଭିତରୁ ଗୋଟିଏ ଦୀର୍ଘ ନିଶ୍ୱାସ ଶୁଭିଲା । ସେ ଦୀର୍ଘ ନିଶ୍ୱାସରେ ଥିଲା ଗଭୀର ବେଦନାର ନିର୍ଲିପ୍ତତା ।

—କଟ୍—

ଫ୍ଲାସ୍ ବ୍ୟାକ୍ —

ଭୂପେନ୍ଦ୍ରଙ୍କ ବର୍ତ୍ତମାନ ବୟସ ଛଇଁତିରିଶ । ଦଶବର୍ଷ ଆଗର କଥା । ଭୂପେନ୍ଦ୍ର କଲେଜର ପଢ଼ା ସାରି ଏମ୍. ଏ. ବି. ଏଲ୍. ପାଶ୍ କରି କଟକରୁ ନିଜ ଘରକୁ ଫେରିଥାନ୍ତି । ଘରେ ବୋଉ ସତ୍ୟନାରାୟଣ ପାଲା ବସାଇଥାନ୍ତି । ଠାକୁରଘର ଖଞ୍ଜାରୁ ମୃଦଙ୍ଗ ଓ ଗିନିର ତାନମାନ ଭିତରେ ଗାୟକର ପାଟି ଶୁଭୁଛି, କାଞ୍ଚନପୁର ଯୁବରାଜ କହିଲେ, 'ମୁଁ ଯଶ ଅର୍ଜିବି । ମହାକବି କାଳିଦାସ

କହୁଛନ୍ତି, ରଘୁବଂଶ ପ୍ରଥମ ସର୍ଗରେ, ଯଶ ପାଇଁ ଜିଗୀଷୁ ରାଜାମାନେ ରାଜ୍ୟ ଜୟ କରନ୍ତି । ତେଣୁ...' ଇତ୍ୟାଦି ଇତ୍ୟାଦି ।

ଭୂପେନ୍ଦ୍ର ମା'ଙ୍କୁ ପ୍ରଣାମ କରି କହିଲେ, 'ବୋଉ, ମୁଁ ବିଲାତ ଯିବ । ବଡ଼ ବାରିଷ୍ଟର ହେବ । ବେଶୀ ନୁହେଁ ବର୍ଷଟିଏ ରହିବ । ତୁ ଅନୁମତି ଦେ ।'

ମା' ନିର୍ବାକ ଭାବରେ ପୁଅ ଆଡ଼େ ଚାହିଁ ରହିଲେ । ଆଖିରୁ ତାଙ୍କର ଦୁଇଧାର ଲୁହ ଅବିରାମ ଝରିବାକୁ ଲାଗିଲା । କିଛିକ୍ଷଣ ପରେ ଲୁହ ପୋଛି ସେ କହିଲେ, 'ତୋର ବାରବର୍ଷ ବୟସରେ ତୋର ବାପ ଚାଲିଗଲେ । ତୁ ଗୋଟିଏ ବୋଲି ପୁଅ । ଧନର ଅଭାବ ନାହିଁ । ବସି ଖାଇଲେ ସାତ ପୁରୁଷ ଖାଇବ । ତୋତେ ମୁଁ ଦଣ୍ଡେ ହେଲେ ଆଖି ଅଢ଼ୁଆଳ କରି ନାହିଁ । ତୁ ଚାଲିଗଲେ ମୋ ଜୀବନ ରହିବ ତ ?'

ଭୂପେନ୍ଦ୍ର ବିରକ୍ତି ଚାପିଦେଇ କହିଲେ, 'ବୋଉ, ଏଥି ପାଇଁ ତ...ନା, ମା, ମୁଁ ଯିବ, ଯିବାର ସବୁ ଯୋଗାଡ଼ କରି ସାରିଛି ।'

ମା' ମୁଣ୍ଡରେ ହାତ ଦେଇ ବସିପଡ଼ିଲେ । ତା ପରେ ମୂର୍ଚ୍ଛା ଗଲେ । ଘରଅଡ଼େ ଚହଳ ପଡ଼ିଗଲା । ଭୂପେନ୍ଦ୍ର ମା'ଙ୍କୁ କୋଳକୁ ଟାଣିନେଇ ପାଣି ଛାଟି-ମାରି ହୋସ୍ କରାଇ ଦୀର୍ଘନିଶ୍ୱାସ ପକାଇ କହିଲେ, ମୁଁ ତୋତେ ଛାଡ଼ି କେଉଁଠାକୁ ଯିବ ନାହିଁ ।

—ଓ୍ୟାଇପ୍—

ଭୂପେନ୍ଦ୍ର ନତମସ୍ତକରେ ମାତାଙ୍କ ସମ୍ମୁଖରେ ଦଣ୍ଡାୟମାନ । ପାନ ଛଙ୍ଗ୍ ଛଙ୍ଗ୍ ମା କହିଲେ, 'ଭୂପ, ତୋ ବାପା ମଲାବେଳେ କହିଯାଇଥିଲେ ରାଜନପୁର ଜମିଦାରଙ୍କ ଝିଅ ସହିତ ତୋର ବାହା ଦେବାକୁ । ଝିଅଟିକୁ ମୁଁ ଦେଖିନାହିଁ । ଶୁଣିଛି ଦେଖିବାକୁ ମନ୍ଦ ନୁହେଁ । ଭଲ ପାଠଶାଠ ପଢ଼ିଛି, ପାସ୍ କରିଛି, ବୃତ୍ତି ପାଇଛି । ବାପ ଅନ୍ତେ ସେଇ ସବୁ ଜମିଦାରୀ ପାଇବ । ଅନ୍ୟ କେହି ନାହାନ୍ତି ତା ବାପର । ଝିଅଟିକୁ ଦେଖିବା ଦରକାର ନାହିଁ । ତୋ ବାପା ଆଜ୍ଞା ଦେଇ ଯାଇଛନ୍ତି । ଦେଖି ଆଉ ଲାଭ କ'ଣ । କାଲି ରାଜନପୁର ଗୁମାସ୍ତା ଆସିଥିଲା । ଆଉ ମାସ ଦଶ ଦିନକୁ ଦିନ ଠିକ୍ କରିଛି । ଝିଅଟି ନା' ଲୀଲା...ଅନ...।

ଭୂପେନ୍ଦ୍ରର ଆଜି ଗୋଟିଏ ସ୍ୱପ୍ନ ଭାଙ୍ଗିଗଲା । ମନଟା ତାଙ୍କର ଏଥର ଭାରି ଚିଡ଼ି ଉଠିଲା; କିନ୍ତୁ କିଛି ନ କହି ସେ ମୁହଁ ତଳକୁ ପୋତି ଛୁଡ଼ାଇଦେଲେ ।

ମା କହିଲେ, 'କରେ କହୁନୁ, ଲାଜ କଅଣ ? ବଡ଼ ବୁଝିଲ, ଯା, ଯା' ।

ଭୂପେନ୍ଦ୍ର କିଛି ଗୋଟାଏ କଡ଼ା କଥା କହିବାକୁ ଯାଉଥିଲେ; କିନ୍ତୁ କେବଳ 'ବୋଉ...' କହି ଓଠରେ ଓଠ ଚିପି ନୀରବ ରହିଲେ ।

ମା' ହସି ହସି କହିଲେ, 'କହ, କହ, ଦେଖିବାକୁ ଯିବୁ ଝିଅକୁ... ହଉ...'

'ନା, ମୁଁ ସେ କଥା କହୁ ନ ଥିଲି, କହୁଥିଲି...ନା...ଥାଉ,' କହି ଭୂପେନ୍ଦ୍ର ଲୁଙ୍କିଗଲେ ।

—ଓ୍ୟାଇପ୍—

ମଧ୍ୟରାତ୍ରି । ବଡ଼ ଏଗାର ବାଜିଲାଣି । ତୁଳସୀର ସମବୟସୀ ଗୋଟିଏ ବାଳିକା ତୁଳସୀକୁ ଧରି ଆଣି ଘରେ ଖଟ ଉପରେ ବସାଇ ଦେଇ ତାର ଓଢ଼ଣା ଟେକି ଚାହିଁ ରହିଲା । ବାଳିକାଟି ଏଇ ଗାଁ'ର । ଏପର୍ଯ୍ୟନ୍ତ ବିବାହ ହୋଇନାହିଁ, ନାଁ ତାର ଲବଣୀ । ଲବଣୀର ଚରିତ୍ର ତୁଳସୀର ଚରିତ୍ରର ଠିକ୍ ଓଲଟା । ତୁଳସୀ ଧୀରସ୍ଥିର, ସ୍ୱଳ୍ପବାକ୍, ବୁକୁ ଫାଟିଗଲେ ମୁହଁରୁ ପଦେ କଥା ବାହାରିବ ନାହିଁ । ଲବଣୀ ଚପଳା, ସେ ଯେଉଁଠି ଥିବ ତାର କଳହାସ୍ୟରେ ସେ ସ୍ଥାନ ଉଜ୍ଜ୍ୱଳ ହଉଥିବ । ତୁଳସୀର ଦେହର ରଙ୍ଗ ଘୋର କାଳିଆ, କପାଳ ଉଚ୍ଚ, ଦନ୍ତପଙ୍କ୍ତି ଈଷତ୍ ଉନ୍ନତ; କିନ୍ତୁ ଲବଣୀର ଦେହର ରଙ୍ଗ ଆଉଟା ସୁନା ପରି । ତୁଳସୀ ଲବଣୀକୁ ଦେଖି ଚମତ୍କୃତା ହେଲେ ।

ତୁଳସୀକୁ ଦେଖି ଲବଣୀ ଖିଲ୍ ଖିଲ୍ ହସି ଉଠିଲେ । ତୁଳସୀ ଅପ୍ରସ୍ତୁତ ହୋଇ ଓଢ଼ଣା ଟାଣି ତଳକୁ ମୁହଁ ପୋତି ବସି ରହିଲେ । ଲବଣୀ ତାର ଓଢ଼ଣା ତଳକୁ ଖସାଇ ଦେଇ ଚିବୁକ ଟେକି ଧରି କିଛିକ୍ଷଣ ଚାହିଁ ହଠାତ୍ ତୁଳସୀ ମୁହଁରେ ଗୋଟିଏ ଆମ୍ବକଷି ଗେଞ୍ଜି ଦେଇ କହିଲେ, 'ଆଜିଠୁ ତୁମେ ମୋର ଆମ୍ବକଷି ।'

ଦୁଇ ସଖୀଙ୍କ ଭିତରେ ଅନେକକ୍ଷଣ କଥାହେଲା । ଲବଣୀ କହିଲେ, ଆମ୍ଭକଷି ! ଆଜିକି ଦଶ ଏତେ ଉତ୍ସାହରେ କାହିଁକି ଆସିଲି । ଆଜି କେତୁଟା ଦିନ ପରେ ତ ମୁଁ ସ୍ବାଧୀନ ବାହାହୋଇ ବହୁତ ଦୂର ଦେଖେଲି । ମୋତେ କିନ୍ତୁ ଭୁଲିବ ନାହିଁ, ଭୁଲ ।'

ତୁଳସୀ ଲବଣୀର ହାତରେ ହାତ ରଖି କେବଳ ଅନାଇ ରହିଲେ । ଅଖି ତାଙ୍କର ଛଳ ଛଳ ହୋଇଗଲା । ଲବଣୀ ଅଧୀର ଭାବରେ କାନ୍ଦି ପକାଇଲେ ।

ଅତିଥିମାନେ ଖିଆପିଆ ସାରି ବିଦାୟ ନେଲେଣି ଜମିଦାର ଘର ପ୍ରାୟ ନୀରବ ହୋଇ ଆସିଲାଣି । କେବଳ ବାଡ଼ିପଟେ କୁକୁରମାନଙ୍କର କଜିଆ ଓ ଠାକୁର ଚଞ୍ଚାରୁ ଭୂଜାବାଲାମାନଙ୍କର ଗୀତ ଭାସି ଆସୁଛି ।

ଲବଣୀ କହିଲେ, 'ଆମ୍ଭକଷି ! ଯାଏଁ ଏଥର । ମନେ ମନେ କହୁଥିବ ପୋଡ଼ାମୁହୀଁ କାହିଁକି ବସି ବକର ବକର ହେଉଛି । ମୁଁ ବୁଝିପାରୁଛି ଯେ, ନା ଯା' ଏଥର । ସାଆନ୍ତେ ଆସିବେ ଏଇକ୍ଷଣି ।

ଲବଣୀ ଚାଲିଗଲେ । ଭୟ, ଆନନ୍ଦ, ଲଜ୍ଜା, ଅନିଶ୍ଚିତତା ଆଦି ନାନା ଭାବନାରେ ତୁଳସୀଙ୍କ ନିଃଶ୍ୱାସ ରୁଦ୍ଧ ହୋଇଆସିଲା । କିଛିକ୍ଷଣ ପରେ ପ୍ରବେଶ କଲେ ଭୂପେନ୍ଦ୍ର । ତୁଳସୀ ଓଢ଼ଣା ଟାଣି ବସି ରହିଲେ । ଭୂପେନ୍ଦ୍ର ଆସି ନବ-ବଧୂର ଓଢ଼ଣା ଟେକି ଚାହିଁଲେ । ତୁଳସୀ ଦେବୀଙ୍କ ଗୁଣ୍ଠନରୁ ଅଡ଼ୁଆ ଖସି ପଡ଼ିଲା । ସେ ଜୀବନରେ ସ୍ୱାମୀସୁଖ ପାଇବେ କି ଦୁଃଖ ପାଇବେ ସ୍ୱାମୀଙ୍କର ଏଇ ଚାହିଁବାରେ ହିଁ ତାହାର ନିଷ୍ପତ୍ତି ହୋଇଯିବ । ଭୂପେନ୍ଦ୍ର ଚାହିଁ ଓଢ଼ଣା ପକାଇ ଦେଇ ଅନ୍ୟଆଡ଼େ ମୁହଁକରି ପଡ଼ି ରହିଲେ । କ୍ରୋଧ, ଅପମାନ, ହତାଶାରେ ସେ କାନ୍ଦି ପକାଇଲେ । ତୁଳସୀ ପଥର ମୂର୍ତ୍ତି ଭଳି ସେମିତି ବସି ରହିଲେ । ଅଖିରୁ ତାଙ୍କର ଲୁହଧାର ଅବିରାମ ବହିବାକୁ ଲାଗିଲା; କିନ୍ତୁ ମୁହଁରୁ ସାମାନ୍ୟ ଟିକିଏ ଶବ୍ଦ ବାହାରିଲା ନାହିଁ । ଥରେ ଭାବିଲେ ସ୍ୱାମୀଙ୍କ ଗୋଡ଼ଧରି କହିବେ, 'ମୋର ଆଉ କିଛି ଲୋଡ଼ାନାହିଁ, ଖାଲି ଦୂରରୁ ତୁମ ପୂଜା କରିବାକୁ ମୋତେ ଅନୁମତି ଦିଅ !' କିନ୍ତୁ ଏତିକି କହିବାକୁ ଯେଉଁ ସୌନ୍ଦର୍ଯ୍ୟ ଦରକାର ତା ମଧ୍ୟ ତାଙ୍କର ନାହିଁ ।

ଠାକୁର ଘଣ୍ଟାରୁ ପୂଜାବାଲାମାନଙ୍କର ପାଟି ଶୁଭୁଥିଲା, ମଉନବ୍ରତ୍ତ କହିଲେ, ନାଥ···” ଟାୟୁଙ୍କ କହିଲେ । ପାଳିଆ କହିଲା, “ଓଁ” ।

—ନାଥ, ମୁଁ କୁରୂପା । ହେଲେ କେତେ ଦାସୀ ଆପଣଙ୍କର ଅଛନ୍ତି । ମୋତେ ସେଇ ଦାସୀମାନଙ୍କ ପରି ତୁମର ପୂଜା କରିବାକୁ ଦିଅ । ଏଇଠି କହନ୍ତୁ ରବୀନ୍ଦ୍ରନାଥ କହିଲେ—

—କଅଣ କହିଲେ···

—କହିଲେ, ଆଁ ହିଁ···ଆଁ···ଆଁ···ପରାଣେ ଭଲବାସା କେନ ଗୋ···ଓ···ଓ ଦିଲେ···ଏ···ଏ, ରୂପ ନା ଦେଲ ଯଦି ବଧି ହେ···ଏ···ଏଏ ···ଏ । ଅର୍ଥା, ହୃଦ ର ତଳେ ଢ଼ିପା, ଝଠୁଛି ଉଚ୍ଛ୍ୱଳିଦ୍ୱା, ପ୍ରକବ ତାରେ ଚିହ୍ନା କ ଦିଏ···ଏଏଏ···ଏ ।

ଝମ୍ ଝମ୍ ଝମ୍ ।·····କରଝଞ୍ଜ କହିଲା । ଗୁମ୍ଭୁ ଗୁମ୍ଭୁ ଧା ଧିନ୍ନା, ଚାକଧିନନା···ମୃଦଙ୍ଗ କହିଲା ।

—ଓ୍ୟାଇପ୍—

ପରଦିନ ରାତି । ଖାଇସାରି ଭୁପେନ୍ଦ୍ର ବାହାରିଲେ କଟେର ଘରେ ଶୋଇବାକୁ । ମା’ ପଚାରିଲେ, ‘କରେ ପିଆଡ଼େ କୁଆଡ଼େ ଯାଉଚୁ ?’

—‘ନା, ବୋଉ, କାଲି ସକାଳୁ ହରିପୁରକୁ ଯିବ ବାକିଆ ଖଜଣା ଆଦାୟ କରିବାକୁ । ଆଜ ରାତି ଭିତରେ କାଗଜ ପତ୍ର ସଜାଡ଼ି ରଖିବାକୁ ହେବ ।’

ମା’ ଦୀର୍ଘ ନିଃଶ୍ୱାସ ପକାଇ ଉଠି ଛିଡ଼ାହୋଇ ଦେଖିଲେ, ବୋହୂ ଘରରେ ଛିଡ଼ା ହୋଇଛି । ବୋହୂକୁ ଦେଖି ମନେ ମନେ ସେ କହିଲେ—‘ଅଲକ୍ଷଣୀଟା । କାହିଁକି ଥରେ ଦେଖିବାକୁ ଗଲନାହିଁ ମୁଁ । ମୋ ପୁଅ କଅଣ କରିବ ଲୋ ! ହେ ମା’ ମଙ୍ଗଳା, ନେଇଯାଅ, ନେଇଯାଅ, ଦରଭାର ନାହିଁ ଏ ବୋହୂ ମୋର —

ତୁଳସୀ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଯାଇ ଖଟ ଉପରେ [illegible] । ଆଖିରୁ ତାଙ୍କର ପାଣି ଶୁଖି ଯାଇଥିଲା । ଖଟ ଉପରୁ ଯେତେବେଳେ ଉଠିଲା ସେତେବେଳେ ସୂର୍ଯ୍ୟ ଫାଟିଲାଣି ।

ସେଇଦିନୁ ଭୂପେନ୍ଦ୍ର ଘଡ଼ିରେ ଆଉ ଶୋଇବା ଘଣ୍ଟାକୁ ଅପେକ୍ଷା ନାହିଁ ।

—ନିଡ୍—

ଦୁଇବର୍ଷ ପରେ ।

ଭୂପେନ୍ଦ୍ର କଚେରି ଘରେ କାର୍ଯ୍ୟବ୍ୟସ୍ତ; କିନ୍ତୁ ମନ ତାଙ୍କର ଉଦାସୀନ । କେବେଠୁଁ ଲେଖୁ ଲେଖୁ କଲମ ହାତରୁ ଖସି ପଡ଼ୁଛି । କଚେରି ଘଣ୍ଟା ଘଡ଼ିରେ ଢଂ ଢଂ କରି ଦୁଇଟା ବାଜିଲା ।

—ଓ୍ୟାଣ୍ଟ୍—

ଆହୁରି ଦୁଇବର୍ଷ ପରେ । ଭୂପେନ୍ଦ୍ର ଧର୍ମାନୁରାଗୀ, ଈଶ୍ୱର ପ୍ରେମ ଅନୁରାଗ । କଚେରି ଘରେ ଗୁରୁଦେବ ବସିଛନ୍ତି ।

ଭୂପେନ୍ଦ୍ର ପଚାରିଲେ, 'ମୋତେ ବାଟ ଦେଖାଇ ଦିଅ । ଏ ଜୀବନକୁ ସବୁ ଦିଗରୁ ଉପଭୋଗ କରିବି ନା ଉପଭୋଗର ସମସ୍ତ ଦୁଆର ବନ୍ଦ କରିଦେଇ କୃଚ୍ଛ୍ର ସାଧନ କରିବି ?'

'ବତ୍ସ—ଗୁରୁଦେବ ଭୂପେନ୍ଦ୍ର ମୁଣ୍ଡ ଉପରେ ହାତ ରଖି କହିଲେ, 'ଇନ୍ଦ୍ରିୟରୋଧ କଲେ ତାର ବାହାର ପ୍ରକାଶ ସିନା ବନ୍ଦ ହୋଇପାରେ; କିନ୍ତୁ ଭିତରେ ବିକୃତି ସୃଷ୍ଟି କରେ । ସେ କୃଚ୍ଛ୍ର ସାଧନାରେ କିଛି ଲାଭନାହିଁ…'

—ତେବେ ? ତେବେ କଅଣ…

—ହଁ, ହଁ । ଭୋଗେଚ୍ଛାର ତ୍ୟାଗ ଆଣିବାକୁ ହେବ । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି, ମନରେ ଇନ୍ଦ୍ରିୟ ଲାଳସା ରଖି ଯେ କେବଳ କର୍ମେନ୍ଦ୍ରିୟ ସଂଯତ କରେ, ସେ ମିଥ୍ୟାଚାରୀ । ତେଣୁ ଭଗବାନ୍ କହିଛନ୍ତି, ଜୀବନ ପ୍ରକୃତିର ଅନୁଗାମୀ, ଇନ୍ଦ୍ରିୟଦ୍ୱାରା କୌଣସି ଲାଭ ନାହିଁ । ଉପଭୋଗ କର, ଉପଭୋଗ କର: ତେବେ ତ୍ୟାଗ ଆପେ ଆପେ ଆସିଯିବ ।

ଭୂପେନ୍ଦ୍ର ମାନସପଟରେ ଗୋଟିଏ ସୁନ୍ଦର ମୁହଁ ଅଙ୍କିତ ହୋଇଗଲା ।

—ଓ୍ୟାଇଷ୍—

ଭୂପେନ୍ଦ୍ର ପରଦିନ ବାହାରିଲେ ହରିପୁର ।

—ଓ୍ୟାଇଷ୍—

କହୁଥିବା ବେଳେ ମା' ପୁଅର ଅପଥ ଗମନରେ ବ୍ୟଥିତା । ତୁଳସୀ ଥାଳବଟା ରଖି ଦେଉଥିଲେ । ମା' କହିଲେ, 'ମରୁନାହୁଁ ବୋଉ ! ଆମ ବାଡ଼ି ପୋଖରୀରେ ଏବେ ପାଣି…'

ତୁଳସୀ ଦୀର୍ଘନିଃଶ୍ୱାସ ପକାଇ ଛିଡ଼ା ହୋଇ ରହିଲେ ।

ମା' ବକି ଚାଲିଲେ, 'ପୁଅଟା ମୋର ଦରପୁରରେ ରହିଲା । ତୋର ପାଇଁଲେ ବାଳଗା । ମୁଁ କାଲି ଯିବି ପୁଅକୁ ଫେରାଇ ଆଣିବି ଯେମିତି ହେଲେ ।'

ତୁଳସୀ ଦେଖା ମାରିବାରେ ଚାଲିଗଲେ ।

—ୱାଇପ୍—

ଭୂପେନ୍ଦ୍ର ଫେରିଛନ୍ତି । କିନ୍ତୁ ଖଞ୍ଜା ଭିତରକୁ ନୁହଁ । ବାହାରେ କଚେରି ଘରେ ତାଙ୍କର ଶୋଇବାର ସ୍ଥାୟୀ ବନ୍ଦୋବସ୍ତ କରିଛନ୍ତି ।

—ୱାଇପ୍—

ଭୂପେନ୍ଦ୍ର ଦିନ ରାତି ଭିତରେ ଦୁଇଥର ଖଞ୍ଜା ଭିତରକୁ ଆସନ୍ତି—ଥରେ ଦିନ ଦଶଟାବେଳେ ଖାଇବାକୁ, ଆଉଥରେ ସନ୍ଧ୍ୟାବେଳେ ଜଳଖିଆ ପାଇଁ । ରାତିର ଖାଇବା ତାଙ୍କର କଚେରି ଘରକୁ ଯାଏ । ଭୂପେନ୍ଦ୍ର ଫେରିବା ପରେ ପାଞ୍ଚବର୍ଷ ବିତି ଗଲାଣି । ନିତି ଭୂପେନ୍ଦ୍ର ଜଳଖିଆ ଖାଇ ସାରି ଯେତେବେଳେ ମୁହଁ ଧୋଇବାକୁ ଖମାର ଖଞ୍ଜାକୁ ଯାଆନ୍ତି, ସେତେବେଳେ ଧୂମ କଣ ଅନ୍ଧାରରୁ ଗୋଟିଏ ଦୀର୍ଘନିଃଶ୍ୱାସ ବାହାରି ଆସେ ଆଶା, ଆବେଦନ ନେଇ । ସେ ଦିନ ମଧ୍ୟ ସେମିତି ।

ଭୂପେନ୍ଦ୍ର ଚାଲିଯିବା ପରେ ତୁଳସୀ ଅନ୍ଧାରରୁ ବାହାରି ବାଡ଼ କବାଟ ଯେମିତି ଖୋଲିଛନ୍ତି ଝଙ୍କାଳିଆ କାମିନୀଗଛ ତଳର ଚହଳିଆ ଅନ୍ଧାର ଭିତରୁ "ଖେଁ ଖେଁ" ଗୋଟାଏ ଶବ୍ଦ ଶୁଭିଲା । ତୁଳସୀ ଭଲ କରି ଦୃଷ୍ଟି ଦେଖିଲେ ଅନ୍ଧାର ଭିତରେ ଧଳା ହୋଇ ମେଞ୍ଚାଏ କଅଁଳ ଦିଶୁଛି । ଆହୁରି ଭଲ କରି ଦୃଷ୍ଟି ଦେଖିଲେ ସେ ଧଳା ମେଞ୍ଚାକ କୁନ୍ଦ କୁନ୍ଦ ତାଙ୍କର ଆଡ଼କୁ ଆସୁଛି । ତୁଳସୀ ଏଥର ଭୟରେ ଯେମିତି 'ବୋ…' ବୋଲି ପାଟିକରି ଉଠିଲେ, ସେ ଧଳା ମେଞ୍ଚାକ ଛିଡ଼ା ହୋଇ ହାତ ବଢ଼ାଇ ତାଙ୍କ ପାଟି ଚପିଧରି କହିଲା, 'ଆସ୍ତେକରି, ଡରି ଗଲୁ କି ? ମୁଁ ପରି !'

ତୁଳସୀ ଆଖିରୁ ପାଣି ଝରି ପଡ଼ିଲା । ସେ କହିଲେ, 'ଅମୃତକଷି ଏତେ ଦିନକେ ମନେ ପଡ଼ିଲା ! ଶ୍ୱଶୁରଘର କଅଣ ଆଜି କେମିତି କରୁଛନ୍ତି ? ବାପଘରକୁ କଅଣ ଏମନ୍ତେ ତୋ ଘର ପାସୋରି ଯାଉଛନ୍ତି ? କେବେ ଆସିଲୁ ?'

ଲବଣୀ କହିଲେ, 'ଆଜି ଆସିଲି । ଏଠାକୁ ଆସି ତୋତେ ଦେଖାଦେଲି ଯେଉଁ ଆନନ୍ଦ ତୁ ପାଇବୁ ତାର ଚଉଗୁଣ ଆନନ୍ଦ କହି ହେଉନାହିଁ । ଅମୃତକଷି, ଶାଶୁ, ନଣନ୍ଦ ତ ମୋର କେହି ନାହାନ୍ତି । ବାହା ହୋଇ ଯେଉଁଠି ପଶିଛି ସବୁ ସମ୍ଭାଳିବାକୁ ହେଲା । ମରିବାକୁ ବେଳ ନାହିଁ ସେଠି ।'

ଲବଣୀ ପ୍ରଗଲ୍ଭା, କିନ୍ତୁ ବୁଦ୍ଧିମତୀ । ନିଜର ସ୍ୱାମୀ ସନ୍ତାନ ସୁଖ କଥା କହିଲେ ଅମୃତକଷି ମନରେ କଷ୍ଟ ହେବ ବୋଲି ତୁଳସୀ ଯେତେ ପଚାରିଲେ ବି ସେ ସେକଥା ଏଡ଼ି ଦେଇ ଅନ୍ୟ କଥା କହେ ।

ତୁଳସୀ ହସି କହିଲେ, 'ଅମୃତକଷି, ତୁ କଅଣ ଭାବୁଛୁ ତୋ ସୁଖ କଥା ଶୁଣି ମୋ ମନରେ କଷ୍ଟ ହେବ ?'

ଲବଣୀ ଅପ୍ରସ୍ତୁତ ହୋଇ କହିଲେ, 'ନା ଲୋ ଅମୃତକଷି, ସେ ଜଞ୍ଜାଳ କଥା କେତେ କହିବି । ଆଚ୍ଛା ଅମୃତକଷି, ତୋତେ ଦିନେ ହେଲେ ପଦେ କଥା ବି ସେ କହି ନାହାନ୍ତି ?'

—ନା

—ତୁ କେମିତି ସହୁଚୁ ଲୋ ଅମୃତକଷି, ମୁଁ ହୋଇଥିଲେ ତ...

—କଅଣ କରିଥା'ନ୍ତୁ ?

—ଅଚ୍ଛା, ସେ ମାଇକିନିଆଟା ଅଛି, ନା ତାକୁ ଛାଡ଼ି ଦେଲେଣି ? ଛି, ଛି ଛିଇ ସାଆନ୍ତେ ଏମିତି ହେବେ, କିଏ ଜାଣିଥିଲା ।

—'ଆଜି କଅଣ କରନ୍ତେ ସେ ଯୋ । ମୋର ତ ରୂପ ଦେଖୁଚୁ, ସେ କଅଣ ଏ ଯୁବା ବୟସରେ ତପସ୍ୟା କରନ୍ତେ । ପୁରୁଷଟି ସିଏ ।

—ପୁରୁଷ ବୋଲି କଅଣ ସାତଖୁଣ ମାଫ୍ । ଯଦି ସେ ଏମିତି ହେଲେ... ମୁଁ ହୋଇଥିଲେ, ମୁଁ ବି...ମୋର ତ ସେ ଅଧିକାର ଅଛି...'

—ହଁ, ତୁ ଠିକ୍ କହୁଛୁ । ସେମାନେ ହେଲେ ପୁରୁଷ, ତାଙ୍କର ସେଥିରେ ଦୋଷ ନାହିଁ । ଆମେ ପତ୍ନୀ, ଆମେ ସବୁ ମା'ମାନେ, ଦଶ ମାସ ପିଲା ପେଟରେ ଧରିବୁ, ପିଲା ମଣିଷ କରିବୁ । ଏ ସଂସାର ଚଳାଇବାକୁ ଭଗବାନ ଏ ସଂସାରର ସବୁ ଦାୟିତ୍ୱ ଆମ ଉପରେ ଲଦି ଦେଇଛନ୍ତି । ଆମେ ଉଚ୍ଛୃଙ୍ଖଳ ହେଲେ ଏ ସଂସାର ଭୁଷୁଡ଼ି ପଡ଼ିବ ସେ···

—ଅନୁକଷି, ତୁ ଏତେ ପାଠ ପଢ଼ିଛୁ, ଅଜି କାଲିକା ଯୁଗରେ ତୁ ଏକଥା କହୁଛୁ । ଆଜିକାଲି ନାରୀମାନେ ସ୍ୱାଧୀନ । ପୁରୁଷର ଅଧିକାର ସଙ୍ଗେ ଆମର ଅଧିକାର ସମାନ ।

ଭୁଲଣୀ ହସି କହିଲେ, 'ସ୍ୱାଧୀନ ଆମେ କେବେହେଲେ ହେବୁ । ମୁଁ ତ ଜାଣେ ପୁରୁଷମାନେ ପରାଧୀନ । ଆମର ସ୍ୱାମୀ ନ ହେଲେ ଚଳିପିବ; କିନ୍ତୁ ତାଙ୍କର ଆମେ ନ ଥିଲେ ଚଳେନାହିଁ । ମୁଁ ତ ଦେଖେ ଯେ ସ୍ତ୍ରୀମାନେ ପୁରୁଷ ଉପରେ ଯେତେ ଅତ୍ୟାଚାର କରନ୍ତି, ପୁରୁଷମାନେ ସେତେ ଅତ୍ୟାଚାର କରନ୍ତିନାହିଁ । ପୁରୁଷଙ୍କ ବାଡ଼ଆଟା ଅଣ୍ଟିରେ ପଡ଼ିଛି ସିନା; କିନ୍ତୁ ତା ଅନ୍ତରେ ତ ତାଙ୍କୁ ଆମେ ବାନ୍ଧି ରଖିଥାଉ । ଗୋଟାଏ କଣୁଆ ବାଘକୁ ବାନ୍ଧି ରଖିଲେ ସେ ଟିକିଏ ନାମୁଛି ହଏ ନାହିଁ କି ? ଏ କଥା ଆମେ ଯେଉଁଦିନୁ ଭୁଲିଗଲୁ, ଯେଉଁଦିନୁ ଆମେ ପୁରୁଷମାନଙ୍କ ଭଳି ଉଚ୍ଛୃଙ୍ଖଳ ହେବାକୁ ଯାଇଛୁ, ସେହିଦିନୁ ସମାନ ଅଧିକାର, ସ୍ୱାଧୀନତା କଥା ଉଠିଛି । କହ, ଆମେ ଚାକର କରିବୁ କାହିଁକି ? ଆମେ ତ ରାଣୀ, ଯେମାନେ ଆମ ଚାକର ଖଟିବେ, ସେମାନେ ଭଲ ଚାକର କରୁଛନ୍ତି କି ନାହିଁ ଆମେ ନଜର ରଖିବୁ । ଆମେ ଯଦି ଦୁଖକୁ ଯିବୁ, ଚାକର କରିବୁ, ତେବେ ତ ସଂସାର ଛାରଖାର ହୋଇଯିବ ।

—ଏତେ କଥା ତ କହୁଛୁ, ସାଆନ୍ତେ ତେବେ ଏମି[illegible]ହେଲେ କାହିଁକି ?'

—ସେଟା ମୋ ଦୋଷରୁ, ମୋ କପାଳ ଦୋଷରୁ । ପ୍ରେମ ତାଙ୍କ ମନରେ ଥିଲେ ହୁଏ ନା । ପୁରୁଷଙ୍କ ନିକଟରେ ବାଟେଇ ବୁଝେଇ ତାକୁ ପ୍ରକାଶ କରିବାକୁ ହୁଏ, ନାନା ଉପାୟରେ । ମୁଁ ତାହା କରିନାହିଁ, କରି ପାରୁନାହିଁ ।

—ପୁରୁଷେ କୁହାନ୍ତି ଖାଇ ବାହାରେ ରୂପଟା । ମନ ତାଙ୍କ ପାଖରେ କିଛି ନୁହେଁ । ନ ହେଲେ ପିଏ ସମସ୍ତଙ୍କୁ ଖାଇବାକୁ ଦେଇ ନିଜ ଭାତ ବାଢ଼ି ରଖି

ହେଉଥାଏ କାଳେ କିଏ ଭିକାରୀଟାଏ ମାଗିଦେବ ବୋଲି, ବେଲବୁଡ଼ାକୁ ଯାଇ ଖାଏ, ତା ମନ କଥା କିଏ ବୁଝିବ, ଶାଶୂ ନା ସ୍ୱାମୀ ? ସ୍ୱ ପୁରୁଷମାନେ ଭାରି ବଦମାସ୍ । ଖାଲି ଦୁଧ ଖୋଜି ବୁଲୁଥାଆନ୍ତି । ଯେଉଁଠି ଦେଖନ୍ତି ସେଠି ମାଛି ଭଳିଆ ଲାଗି ଯାଆନ୍ତି ।

—ଆମ୍ବକଷି, ଏ ଦେହ ଭିତରେ ମନ ଅଛି । କିଏ ଜଣେ ବଡ଼ ଇଂରେଜ ଲେଖକ ଲେଖିଛନ୍ତି ଯେ, ନାରୀ ହୃଦୟ କୋଠା । ଉପର ମହଲକୁ ଯିବାକୁ ହେଲେ ତଳ ମହଲା ଦେଇ ଯିବାକୁ ହେବ । ଏ ତ ଭଗବାନଙ୍କ ନିୟମ । ଭଗବାନ ପୁରୁଷଙ୍କୁ ବାରବୁଲା କରି ଆମକୁ କରିଛନ୍ତି ଅନ୍ନପୂର୍ଣ୍ଣା । ଆମେ ବାରବୁଲା ହେଲେ ଦୁହିଁଙ୍କ ଘରଖୋର ହୋଇଯିବ ଯେ ! ଆମ ପ୍ରକୃତି ବି ତା ନୁହେଁ ।

—ତୁ କଅଣ ତେବେ ତାଙ୍କ ବାରବୁଲା ସ୍ୱଭାବକୁ ଭଲ କହୁଚୁ ?

—'ନା ଦେଇଁ ପୁରୁଷ ବନ୍ଧୁ ହାତ ପାଲରେ ପଡ଼େ, ସେ ଲମ୍ପଟ ହୋଇଯାଏ, ସବୁ ଭଲ ତାର ମରିଯାଏ । ତେଣୁ ଆମର ମୁନିମାନେ ଏକ ସ୍ୱଚ୍ଛ ଆଦେଶ ଦେଇଛନ୍ତି । ଆମେ ଏକେଶ୍ୱରୀ । ସ୍ତ୍ରୀର କର୍ତ୍ତବ୍ୟ—ଛଳେ ବଳେ କୌଶଳେ ସ୍ୱାମୀକୁ ବଶୀଭୂତ କରିବା, ତାହେଲେ ଯାଇ ପୁରୁଷ ଏ ସଂସାରରେ କର୍ତ୍ତବ୍ୟ କରି ପାରିବ, ନ ହେଲେ ବାରବୁଲା ହୋଇ ବୁଲୁଥିବ ।

—ତେବେ ଏ ରୂପ ତୁ ଏମିତି କରି ରଖିଚୁ କାହିଁକି ? ଟିକିଏ ସାଜସଜ ହ । ତୁଳସୀ ହସିଲେ । ଲବଣୀ କହିଲେ, 'ନା ମୁଁ ତୋତେ ଆଜିନେ ସଜେଇ ସୁଜେଇ ଦେବି । ଦେଖିବୁ ଫେର୍ ମୋର ବାହାଦୁରୀ ।'

ଝଙ୍କାପଟୁ ପାଟି ଶୁଭିଲା, 'କଲେ ବୋଉ, ତଳୁଣି କି ନେ ?'

ତୁଳସୀ ତରତର ହୋଇ ଉଠି କହିଲେ, 'ଚାଲ୍ ଅମ୍ବକଷି, ମାଙ୍କ ପୂଜାବେଳ ହୋଇଗଲାଣି ।'

ଲବଣୀ ଅନ୍ୟମନସ୍କ ଭାବରେ କହିଲେ, 'ଠିକ୍ ଠିକ୍ ହେଇଚି ।'

—କଅଣ ଠିକ୍ ? କଅଣ ହେଇଚି ?

—କିଛି ନାହିଁ, ଚାଲ୍ ।

—କିଠ୍—

ପରଦିନ । ଲବଣୀଙ୍କ ଘରେ ଜଣେ କେଳୁଣୀ ପସରା ରଖି ବସିଛି ।

କେଳୁଣୀ କହୁଚି, 'ମା, ସାତଖଣ୍ଡ ହଳଦୀ ଆଣ, ଟିକିଏ ସିନ୍ଦୂର ଅଣ ।'

ଲବଣୀ ଆଣି ସବୁ ଦେଲେ । କେଳୁଣୀ ସାତଖଣ୍ଡ ହଳଦୀକୁ ଆଖି ସାମନାରେ ଧରି କଅଣ ବଡ଼ ବଡ଼ ହୋଇ କହିଲା । ତା ପରେ ହଳଦୀକୁ କଅଣ କ.ହାର କରି ସିନ୍ଦୂର ସାଥିରେ ମିଶାଇ ଗୋଳାଦେଇ କହିଲା, 'ଏକୁ ଏ ହଳଦୀ ମାଖି ଗାଧୋଇବେ । ଗାଧୋଇ ସାରି ଏଇ ସିନ୍ଦୂର ମୁଣ୍ଡରେ ଦିଅନ୍ତୁ । ଏମିତି ପିନ୍ଧିବ ଯେ ସ୍ୱାମୀଙ୍କ ନଜର ପଡ଼ିବ । ବାସ୍, ତା ପରେ ଦେଖିବ ।'

କେଳୁଣୀ ଚାଲିଗଲା । ଲବଣୀଙ୍କ ଆଖି ଆନନ୍ଦରେ ଝଲ୍ମଲିତ ହେଲା ।

କିଛିଦିନ ପରେ ଗାଧୋଇବା ବେଳ ।

ଅଜ ସକାଳେ ଲବଣୀ ଆସି କହିଲେ, 'ଆମ୍ଭକଷି ଅଜ କଣ ଗାଧୋଇ ଦିବୁ ନାହିଁ କି ? ଚାଲ, ଅଜ ହଳଦୀ ମାଖି ପୋଖରୀରେ ଗାଧୋଇବା ।'

ଦୁଇ ସଖି ଗଲେ ପୋଖରୀକୁ ଗାଧୋଇବାକୁ । ଲବଣୀ ହେଇ ହଳଦୀ ତୁଳସୀ ଦେହରେ ମଖାଇଦେଇ ଗାଧୋଇବାକୁ ଲାଗିଲେ ।

ଯେଉଁଦିନ ଝରାବେଳେ ଲବଣୀ କାର୍ଯ୍ୟଉପଲକ୍ଷରେ ଭୂପେନ୍ଦ୍ରଙ୍କ କଚେରି ଘରକୁ ଅସିଚନ୍ତି, ସାଜସଜ ସେ ଅସିଚନ୍ତି । ଭୂପେନ୍ଦ୍ର ତାଙ୍କ ରୂପ ଦେଖି ମୁଗ୍ଧ ଭାବରେ ଅନାଇଁ ରହିଚନ୍ତି ।

—'ହଇ ସାଆନ୍ତେ ଏମିତି କଅଣ ଅନାଇ ଦେଖୁଚନ୍ତି...'

—'ତୁମକୁ ଲବଣୀ, କି ସୁନ୍ଦର ତୁମେ...'

—ଏ ଗୁଣ ଏ ପର୍ଯ୍ୟନ୍ତ ଯାଇନାହିଁ । ଦୁନଅଧାକ ସ୍ତ୍ରୀ ଲୋକଙ୍କୁ ଖାଲି ଏମିତି ଆଖିରେ ଦେଖୁଥିବ । ତେବେ ଅଜ କହିବ କଅଣ ତୁମେ । ଟାଳି ଏଇଆ କହି ବନେ ମନେପିକ ସିନା । କେତେ ଲୋକ ଏମିତି ମଲେଣି । କଅଣ ଲାଭ ଅଛି ସେଥିରେ ! ନିଜ ସ୍ତ୍ରୀକୁ ଟିକିଏ ଚାହିଁ, ଦେଖ ତା ମନକୁ ।'

ଭୂପେନ୍ଦ୍ର ତଳକୁ ମୁହଁ ପୋତିଲେ ।

—ତିନି—

ସେଇ ଦିନ ସନ୍ଧ୍ୟାବେଳେ । ଲବଣୀ ତୁଳସୀକୁ ଅଜ ସଜାଇ ମୁଣ୍ଡରେ ସିନ୍ଦୂରଟୋପା ଦେଇ ଥରେ ଅନାଇ ଦୀର୍ଘନିଃଶ୍ୱାସ ପକାଇ କହିଲେ, 'ଅମ୍ଭକଷି, ତୋତେ ମୋ ରାଣ, ଅଜ ଯେମିତି ହେଲେ ଥରେ ବୁ ତାଙ୍କୁ ଭଲ କରି ଦେଖାଦେବୁ ।'

ତୁଳସୀ ହସି କହିଲେ, 'ହଉ' ।

ବଂଶୀ ଘରକୁ ଯାଇ ତୁଳସୀମଣ୍ଡପମୂଳେ ଭଗବାନଙ୍କର ପ୍ରାର୍ଥନା କରିବାରେ ଲାଗିଲେ

×     ×     ×

ଭୂପେନ୍ଦ୍ର ଭାବି ଚାଲିଛନ୍ତି...

ଛି, ଛି, ଏ ଜୀବନଟାକୁ ମୁଁ କଳଙ୍କ କଲି ! ଯୌବନର କ୍ଷଣିକ ମୋହରେ ପଡ଼ି ମୁଁ କେତେ ଦୂରକୁ ଗଡ଼ିଯାଇଛି । ଖାଲି ଲାଳସାବହ୍ନିରେ ପଡ଼ି ଜଳି ଯାଉଛି ।

ଭୂପେନ୍ଦ୍ରଙ୍କ ଆଖି ଛଳ ଛଳ ହୋଇଗଲା ।

ଡ୍ରାଇଭର ଅଟକି କହିଲା, ସାଆନ୍ତେ, ଠା ହେଲାଣି !

—ଡିଷ୍ଲଭ୍—

ଭୂପେନ୍ଦ୍ର ଜଳଖିଆ ଖାଇସାରି ମୁହଁ ଧୋଇବାକୁ ଗଲେ ।

ଆମାର ଘର କୋଣ ଅନ୍ଧାରରେ ଚାରିଦିନ ପରି ଆଜି ମଧ୍ୟ ସେହିଭଳି କୋଟିଏ ଘୃଣାର କ୍ଷୋଭ ଶୁଭିଲା । ଭୂପେନ୍ଦ୍ର ଛିଙ୍କା ହୋଇଗଲେ । ତୁଳସୀ ତାଙ୍କର ମୁହଁଥର ଚିକିଏ ଚାହିଁଦେଲେ ।

ଭୂପେନ୍ଦ୍ର କିଛି ନ କହି ମୁହଁହାତ ଧୋଇ ଖଞ୍ଜା ଭିତରକୁ ଆସି କହିଲେ, ବୋଉ, ମୋ ଦେହଟା ଆଜି ଭଲ ଲାଗୁନାହିଁ । ମୁଁ ଆଜି ପରେ ଖାଇବି ।

ମା' କିଛି ବୁଝିପାରିଲେ ନାହିଁ । ଅବାକ୍ ହୋଇ ଚାହିଁ ରହିଲେ ।

ଭୂପେନ୍ଦ୍ର ଯାଇ ଖଟ ଉପରେ ଶୋଇ ପଡ଼ିଲେ ।

ମା ପାଟିକରି କହିଲେ, ବୋହୂ, ଭୂପ ଦେହ ଖରାପ, ଶୀଘ୍ର ଖାଇପିଇ ଜଳଦି ଯାଅ ।

ତୁଳସୀ ଖାଇସାରି ଦେଖିଲେ ଶୋଇବାଘର ଦୁଆର ମେଲା । ଅନ୍ଧାରର ସଙ୍କେତ ସେ ବୁଝିଲେ । ଧୀରେ ଧୀରେ ଯାଇ ସେ ଖଟ ଉପରେ ବସିଲେ ।

ଭୂପେନ୍ଦ୍ର ଉଠି ତୁଳସୀଙ୍କ ହାତ ଧରିଲେ । ଦୁହିଁଙ୍କ ମୁହଁରେ ହସ ଫୁଟିଲା !

—କ୍ଲୋଜ୍ ଅପ୍—

# ଗୋଟିଏ ମକଦ୍ଦମାର କଥା

ଅନାଦି କାଳରୁ ସାରା ବିଶ୍ୱବ୍ରହ୍ମାଣ୍ଡରେ ଘଟି ଯାଇଥିବା ଓ ଅନନ୍ତ କାଳ ପର୍ଯ୍ୟନ୍ତ ଭବିଷ୍ୟତରେ ଘଟିବା ଅସଂଖ୍ୟ ଘଟଣା ପ୍ରବାହରୁ ଘଟନା ବିନ୍ଦୁଟିଏ ବିଚ୍ଛିନ୍ନ କରି ଆଣି ଅଦାଲତ ତାଙ୍କର ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିବାରୁ ନିମ୍ନ ଆକାର ଧାରଣ କଲା ।

× × ×

ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ ମୁଦାଲା ହରି ମହୁରିଆ ।

୧ ନମ୍ବର ମୁଦ୍ଦେଇ ସାକ୍ଷୀର ସାକ୍ଷ୍ୟ :—ମୋର ନାମ ଉଜ୍ଜଳ ଦେଈ । ମୋର ସ୍ୱାମୀର ନାମ ହରି ମହୁରିଆ । ମୋର ବୟସ ପଚିଶ ବର୍ଷ । ମୋର ଗ୍ରାମ ଦଇତାପୁର । ଥାନା ବାସୁଦେବପୁର, ଜିଲ୍ଲା ବାଲେଶ୍ୱର । ହାଲ୍ ସାକିନ୍ ବାପଘର ଗାଁ ଚନ୍ଦନପୁର । ବ୍ୟବସାୟ ମୂଲିଆଣୀ ।

କାଠଗଡ଼ାରେ ଛିଡ଼ା ହୋଇଥିବା ମୁଦାଲା ମୋର ଗେରସ୍ତ । ମୁଁ ମୁଦାଲାକୁ ଆଠ ବର୍ଷ ହେବ ବାହା ହୋଇଛି । ତାକୁ ବାହା ହେବା ଆଗରୁ ମୁଁ ଯୋଜନପୁରର ରାମ ଝଣ୍ଟିଆକୁ ବାହା ହୋଇଥିଲି । ତାକୁ ବାହା ହୋଇ ତା ପାଖରେ ବରଷେ ଥିଲି । ସେ କୁପୁରୁଷ ବୋଲି ତାକୁ ଛାଡ଼ିଦେଇ ମୁଦାଲାକୁ ବାହା ହେଲି । ( ଅଦାଲତରେ ପ୍ରଶ୍ନ—କୁପୁରୁଷ ମାନେ ? ସାକ୍ଷୀ—ତା ମାନେ ଅପାରଗ, ନପୁଂସକ )

ମୁଦାଲା ମୋର ଚରିତ୍ର ସନ୍ଦେହ କରି ସବୁବେଳେ ମାରେ, ଛଟପୀ ବୋଲି ଗାଳିଦିଏ । ମୁଁ ଗୀତ ଗାଇଲେ କି ଅଳତାନାଇଲେ ସେ ରାଗେ । ଏମିତିକି ତାର ଧରମପୁଅ ପବିତ୍ର ଅଛି ବୋଲି ସନ୍ଦେହ କରି ମୋତେ ମାରେ ।

ଗଲ ବୈଶାଖ ପୂନେଇ ଆଗଦିନ ମୋ ବାପା ବୋଉ ଆମ ଘରକୁ ଆସିଥିଲେ । ମୁଁ ତାଙ୍କ ସହିତ ଯିବାକୁ ଜିଦ୍ କଲି । ମୁଦାଲ ମୋତେ ଛାଡ଼ିଦେବାକୁ ମନା କଲା । କହିଲା, ବୃଷ୍ଟିବାସ ସମୟ, ଘରେ ଗାଈଗୋରୁ ଅଛନ୍ତି, ମୁଁ ଗଲେ ଚଳିବନାହିଁ । ମୁଁ କହିଲି ସେ ସବୁରେ ମୋର କିଛି ନାହିଁ । ମନା ନ ମାନି ମୁଁ ବାପ ଘରକୁ ଚାଲିଆସିଲି ।

ତା ପରଦିନ ବୈଶାଖ ପୂନେଇ, ସୂର୍ଯ୍ୟଦେବଙ୍କ ପୂଜା । ମୁଦାଲ ସେଦିନ ଆମ ଘରକୁ ଆସିଲା । ଆସି ମୋତେ ସେଇଦିନ ନେଇ ଯିବାକୁ ଜିଦ୍ କଲା । ମୁଁ ତାକୁ ଗାଳିଦେଇ କହିଲି, ମୋ ବୃଷବାଟ, ଗାଈଗୋରୁ ଛିନଛତ୍ରପ କରି କାହିଁକି ଆସିଲ ? ସେ ମୋତେ ଗାଳିଦେଇ କେଶଝୁଟିକା ନେଇଟିବାକୁ ବସିଲା । ମୋ ଭାଇ ବଗି ମୋ ଗହଣାଟିସ ବନ୍ଧ କରିଦେଇ ଚାଲିଗଲା । ମୁଦାଲ ନ ଯାଇ ସେଦିନ ଆମ ଘରେ ରହିଲା ।

ସେଦିନ ଛୁଇଁନେଉଁଥାଣିକୁ ମୋ ଭାଇର ଟୋକା କପିଳା କାମରୁ ଗୀତ ଗାଇ ଗାଇ ଫେରିଲା । ସେ ଗାଉଥାଏ, 'ତୋର ମୋର ଯେ ପୀରତି··· । ( ସାକ୍ଷୀ ଗୀତଟି ଗାଇବାକୁ ଲଗିବାରୁ ଅଦାଲତ ଆଦେଶ ଦେଲେ—ସାବଧାନ, ଗୀତ ଗାଇଲେ ଅଦାଲତ ଅବମାନନା ଦୋଷରେ ଦଣ୍ଡିତ ହେବ । ମୁଦେଇ ପକ୍ଷ ଓକିଲ ମଧ୍ୟ ସାକ୍ଷୀର ସେତକ ଉକ୍ତି ଆଇନ ଅନୁସାରେ ଅବାନ୍ତରବୋଲି ଆପତ୍ତି ଦର୍ଶାଇଲେ ଓ ଲିଖିତ ହେଲା ) କପିଳା ଚୁରଟା ପାଗ ମାରି ଆଣିଥାଏ । ସନ୍ଧ୍ୟାବେଳକୁ ମୁଁ ଆଉ କପିଳା ପାଗସବୁ ବନେଇ ଚୂନେଇ ପୋଖରୀକୁ ନେଲୁ ଧୋଇବାକୁ । ଆମେ ଦୁହେଁ ପୋଖରୀ କୂଳରେ ବସି ଗପକଲୁ । ମୁଁ କହିଲି, କପିଳା ମୋତେ ଆଉ ତା ଘର କରିବାକୁ ଭଲ ଲାଗୁନାହିଁ । ଏଇ ସମୟରେ ବୁଦା ପାଖରେ ଖସ ଖସ ଶବ୍ଦ ଶୁଣି ଅନେଇ ଦେଖିଲି, ମୁଦାଲ ଲୁଚିକରି ସବୁ ଶୁଣୁଛି । ( ଅଦାଲତ—କପିଳା ସହିତ ଆଗରୁ କେଉଁଣ ତୁମର ଚିହ୍ନା ବା ଭାବ ଥିଲା ? ସାକ୍ଷୀ—ନା । ଅଦାଲତ—ଘଟଣାବେଳେ ତୁମେ କେଉଁଣ କପିଳାକୁ ଭଲ ପାଉଥିଲ ? ସାକ୍ଷୀ—ହଁ । ତାର କେହି ନାହିଁ, ସେ ନିଆଶ୍ରା । ଧର୍ମାବତାର ମୋର କେଉଁଣ ଦୋଷ ହେଲା ସେଥିରେ ? ଅଦାଲତ—ସେ ବିଷୟରେ ମକଦ୍ଦମା ଏ ଅଦାଲତରେ ବିଚାରାଧୀନ ନାହିଁ, ତେଣୁ ସେ ବିଷୟରେ କିଛି କହିବାର ଅଧିକାର ଏ ଅଦାଲତର ନାହିଁ । ସ୍ୱାମୀ ଜୀବିତାବସ୍ଥାରେ ଓ ତା ସହିତ ବିବାହ ବଳବତ୍ତର

ଥିବା ଅବସ୍ଥାରେ ଅନ୍ୟ ବ୍ୟକ୍ତିଷ ପକ୍ଷରେ ଦୈତ୍ତିକ ସମ୍ପତ୍ତ ସ୍ଥାପିତ ନ ହେବା ପର୍ଯ୍ୟନ୍ତ ଏ ଅଦାଲତରେ କଥା କହିବାର ନାହିଁ । ଖାଲି ମାନସିକ ସମ୍ପତ୍ତ ସ୍ଥାପିତ ହେଲେ ସମାଜ ତାର ବ୍ୟବସ୍ଥା କରିପାରେ । ସାକ୍ଷୀ—ତେବେ ଅଦାଲତରେ ଛୁଡ଼ା ହୋଇଥିବା ଲୋକ କାହିଁକି ମୋତେ ମାରିବାକୁ ଧମକାଉଛନ୍ତି ? ଅଦାଲତ— (ସାବଧାନ, ସାକ୍ଷୀକୁ ନିର୍ଭୟରେ ସାକ୍ଷ୍ୟ ଦେବାରେ ଯିଏ ବାଧା ଦେବ, ସେ ଦଣ୍ଡନୀୟ ହେବ )

ସେଦିନ ରାତିରେ ମୁଁ ମାଉଁସ ରାନ୍ଧି ବସିଛି । ମୋ ପାଖରେ କପିଳା ବସି ଗୁଣୁ ଗୁଣୁ ଗୀତ ଗାଉଥାଏ, 'ଆରେ ରେ ଛକିବା··· ।' ନା ହଜୁର ଦୋଷ ହେଲା । ତା ଗୀତଗୁଡ଼ାକ ଖାଲି ମନେ ପଡ଼ିଯାଉଛି । ଭାଉଜ ବି ମୋ ପାଖରେ ବସିଥାଏ । ମୁଁ ଭାଉଜକୁ କହିଲି, ମୁଁ କପିଳା ସାଙ୍ଗରେ ଗ୍ଲାସିବି । ଭାଉଜ କହିଲା, ହେପୁ, ସେମିତି କହୁଛୁ, ଜାଣିଛୁ ନା, ସେ ଶୁଣିବ ଯଦି ତମ ଦ' ଜଣକୁ ଦ' ଦ'ଗଡ଼ କରି କାଟିଦେବ । କପିଳା କହିଲା, ହ୍ୟାପ ଭାରି କଲବାଲା, ମୋ ଏକା ମୁଣ୍ଡକେ ସେ ମାଟି କାମୁଡ଼ିବ । ମୁଁ ହସି ଉଠିଲି । ଅନାଇ ଦେଖିଲି ଘୁମ ପଛପଟୁ ନିଆଁ ହୁଲା ପରି ଦ'ଟା ଆଖି ଦଗୁଛି । ମୁଁ ସେ ଆଖିକୁ ଚିହ୍ନି ଖତେଇ ହେଲି ।

ରାତିରେ ମୁଦାଳ, କପିଳା ଓ ଭାଇ ଅଗଣାରେ ଖାଇ ବସିଲେ । ମୁଁ କପିଳାକୁ ଟିକଏ ବେଶି ମାଉଁସ ଦବାରୁ, ମୁଦାଳ ମୋ ହାତରୁ ସବୁ ମାଉଁସ ଛଡ଼ାଇ ଖାଇଦେଲା । ଖାଇସାରି ସେ ତିନିହେଁ ଅଗଣା ପିଣ୍ଡାରେ ଶୋଇବାକୁ ଗଲେ । ମୋ ପେଟକୁ ଶୋଇବାକୁ ଗଲାବେଳେ ମୋ ପଣତ ଧରି ବାରିପଟ ବଖରକୁ ଟାଣିବାକୁ ଲାଗିଲା । ମୁଁ ପାଟିକରି ଉଠିବାରୁ ସେ ପଳାଇଗଲା । ପୁଣି ପ୍ରାୟ ରାତିଅଧରେ ସେ ମୋ ଶୋଇବା ବଖର କବାଟରେ ଧକ୍କାମାରି ମୋତେ ଡାକିଲା । ମୁଁ ପୁଣି ପାଟି କରିବାରୁ ସେ କବାଟରେ ଖୁବ୍ ଜୋରରେ ଗୋଟିଏ ଗୋଇଠା ମାରି ଚାଲିଗଲା ।

ତାର ପ୍ରାୟ ଘଣ୍ଟାକ ପରେ ଭାଇର ହାଉଳି ଶୁଣି ଆମେ ସବୁ ବାହାରକୁ ଦୌଡ଼ିଆସି ଦେଖିଲୁ, ମୁଦାଳ ହାତରେ ଛୁରୀ ଧରି ଦୌଡି ପଳେଇଗଲା । କପିଳା ତା ପଛରେ ଗୋଡ଼ାଉ ଗୋଡ଼ାଉ ଅଗଣାରେ ଦୁମ୍ କରି ପଡ଼ି ମରିଗଲା । ତାର ଛୋଟି କଣ୍ଠା ହୋଇଥାଏ, ରକ୍ତ ପିଚୁକୁଥାଏ । ମୋ ଗଡ଼ ଯ୍ୟା କେତେବେ ହୋଇ

ପଡ଼ୁଥାଏ । ଆମେ ତାକୁ ସଂସ୍ପର୍ଶ କଲାରୁ, ସେ କହିଲେ, ଜହ୍ନ ଆଲୁଅରେ ସେ ସପ୍ନ ଦେଖିଛି ମୁଦାଲି କପିଳା ଗୁଣ୍ଡ ଉପରେ ବସି କପିଳାର ବେକକୁ ଛୁରୀରେ କାଟୁଥିଲା । ସେତେବେଳେ ମୁନେଇ ଝରକାର ରୂପେଲି ଜହ୍ନ ଅନ୍ଧାରେ ପଡ଼ୁଥାଏ ।

× × ×

ଡାକ୍ତରଙ୍କ ଶବ ବ୍ୟବଚ୍ଛେଦ ବିବରଣୀ ।

ମୃତ କପିଳ ଦାସ । ବୟସ ୩୦ ବର୍ଷ । ହୃଷ୍ଟପୁଷ୍ଟ ଶରୀର, କୌଣସି ରୋଗର ଲକ୍ଷଣ ନାହିଁ । ମୃତବ୍ୟକ୍ତିର କଣ୍ଠନଳୀ ସମ୍ପୂର୍ଣ୍ଣ ବିଚ୍ଛିନ୍ନ । କୌଣସି ଅତି ତୀକ୍ଷ୍ଣ ଅସ୍ତ୍ରଦ୍ୱାରା କଟା ହୋଇଥିବାର ଜଣାପଡ଼େ । କ୍ଷତସ୍ଥାନର ଦୁଇ ପାଖରେ ଦାନ୍ତର ଚିହ୍ନ । କ୍ଷତସ୍ଥାନର ରକ୍ତ ନମୁନା ରଖାଗଲା ।

× × ×

ମୁଦାଲିର ଜବାନ୍ ବନ୍ଦୀ ।

ମୋର ସ୍ତ୍ରୀ ଯାହା କହିଗଲା, ସବୁ ମିଛ । ମୁଁ କଅଣ କରିଛି ଜାଣେନା । ଘଟଣା ଦିନ ରାତିରେ ମୁଁ ଶ୍ୱଶୁର ଘରେ ନ ଥିଲି । ସେଦିନ ରାତିରେ ମୁଁ ଦୁ'ଥର ଚେଷ୍ଟା କଲି, ମୋ ସ୍ତ୍ରୀର ଦେହ ଛୁଇଁ ହୋଇ ଯାଇଥାଆନ୍ତା, ତେବେ ଏମିତି ଘଟି ନ ଥାନ୍ତା । କପିଳା ଯେଉଁ କଣ୍ଠରେ ମୋ ସ୍ତ୍ରୀର ମନ ମୋହିଲା, ସେଇ କଣ୍ଠ ଚାଲିଗଲା । ମୁଁ କଅଣ କରିବି ? ମୁଁ କପିଳାକୁ ମାରିନାହିଁ । ଧର୍ମାବତାର ଯାହା ବିଚାର କରିବେ ।

× × ×

ଅନ୍ୟାନ୍ୟ ଘଟଣାବଳୀ ସବୁ ଅନୁସନ୍ଧାନ ଯନ୍ତ୍ର ତଳେ ଥୁଆ ହେବାର ବେଳ ହୋଇଯିବାରୁ ମୁଦାଲିକୁ ହାଜତକୁ ନେଇଯିବାର ଆଦେଶ ହେଲା । ମୁଦାଲିକୁ ହାତକଡ଼ି ପକାଇ ଦୁଇଜଣ ପୁଲିସ ନେଇଗଲେ । ମୁଦାଲି ଯାଉ ଯାଉ ପ୍ରଳାପ ବକିବାକୁ ଲାଗିଲା, ତୋର ମୋର ଯେ ପିରତି···ସବୁ ଝଡ଼ି ତ ଗଲା···କୃପାସିନ୍ଧୁ ବଦନ, କର ଅବଲୋକନ··· । ହାଜତରୁ ମୁଦାଲିର ଭଙ୍ଗାକଣ୍ଠରେ ଗୀତ ଶୁଭୁଛି । ଅନ୍ୟ ମକଦ୍ଦମା ଶୁଣାଣି ଚାଲିଛି ।

× × ×

ଅଲ୍ଇଣ୍ଡିଆ ରିପୋର୍ଟର୍ ୧୯୬୨, ଏଲାହାବାଦ ୨୨୭ ପୃଷ୍ଠାରେ ମହାମାନ୍ୟ ବିଚାରପତି ଦ୍ୱିବେଦୀ କହିଛନ୍ତି—ଆଇନ [illegible]

ନୁହେଁ । ମନୁଷ୍ୟ-ସମାଜର ନୈତିକ ଓ ସାମାଜିକ ରୋଗର ଚିକିତ୍ସା ଦୁଇ ଅଲଗ ଧାରା । ଏହା ଏକ ଜଟିଳ ଚିକିତ୍ସା । ଏ ଚିକିତ୍ସା-ପଦ୍ଧତି ବୁଝିବାକୁ ହେଲେ ସମାଜ ଓ ବ୍ୟକ୍ତି ବିଷୟରେ ଗଭୀର ଜ୍ଞାନ ପ୍ରୟୋଜନ ।

× × ×

ଏ ଘଟଣା ଯେଉଁଦିନ ଘଟିଥିଲା, ଠିକ୍ ତାର ୨୬୦୦ ବର୍ଷ ପୂର୍ବେ ବୁଦ୍ଧ ବୁଦ୍ଧତ୍ୱ ପ୍ରାପ୍ତ ହୋଇ ପ୍ରଚାର କରିଥିଲେ, ଏ ଜୀବନ ଦୁଃଖପୂର୍ଣ୍ଣ, ଦୁଃଖର କାରଣ କାମନା ! ତା ପୂର୍ବରୁ ବିଶ୍ୱବ୍ରହ୍ମାଣ୍ଡର ନାନା ସ୍ଥାନରେ ନାନା ଭାବରେ ନାନା ଘଟଣା ଘଟିଯାଇଛି ଓ ପରେ ଘଟିଛି ଓ ଭବିଷ୍ୟତରେ ଘଟିବ । କାହାରି ସହିତ କାହାରି କଅଣ ସଂପର୍କ ନାହିଁ ! ଆପେକ୍ଷିକବାଦ (Theory of relativity) ଓ ଉପନିଷଦ୍ କୁହେ, ସ୍ଥାନ ଓ କାଳ ଅଭିନ୍ନ ଓ ନିରବଚ୍ଛିନ୍ନ, ଅନାଦି ଓ ଅନନ୍ତ । ଅସଂଖ୍ୟ ବିନ୍ଦୁର ସମଷ୍ଟିରେ ରେଖାର ସୃଷ୍ଟି ? ଅସଂଖ୍ୟ ଘଟଣାର ସମଷ୍ଟିରେ କି ଗଳ୍ପ ସୃଷ୍ଟି ହେଉଛି ? ଯଦି କେହି ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡ ଓ ସମସ୍ତ କାଳ ଦେଖି ପାରୁଥାନ୍ତ, ତେବେ ସିଏ ନିଶ୍ଚୟ ଅନ୍ୟାନ୍ୟ ସବୁ ଘଟଣା ସହିତ ଏହାର ସମ୍ପର୍କ ଦେଖିପାରୁଥାନ୍ତ ।

ତା ଯଦି ହୁଏ, ତେବେ ମୁଁ ଯେ ଏ ଘଟଣାଟି ଲେଖିଲି, ତା ସହିତ ସେ ଘଟଣାର କି ସଂପର୍କ ? ପୁଣି ବୁଦ୍ଧଙ୍କ ପ୍ରଚାରିତ ସତ୍ୟ ସହିତ କି ସମ୍ପର୍କ ? ଏ ଘଟଣା ଉଲ୍ଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରୁ କିଏ ଦୋଷୀ, କିଏ ନିର୍ଦ୍ଦୋଷ ? ଅଦାଲତର ବା ସମାଜର ଅଣୁବୀକ୍ଷଣ ଯନ୍ତ୍ର ଉଠାଇନେଇ ଅନ୍ୟାନ୍ୟ ସବୁ ଘଟଣା ସହିତ ସମ୍ପର୍କ ରଖି ଏହାକୁ ଦେଖିଲେ ଏହାର କି ରୂପାନ୍ତର ହେବ ?

□□□

# ଯାତ୍ରା ପଥେ

କେତେକ୍ଷଣ ଶୋଇଥିଲି ଜାଣେନା । ହଠାତ୍ ଗୋଟାଏ ଯାନ୍ତ୍ରିକ ଆର୍ତ୍ତନାଦରେ ମୋର ନିଦ ଭାଙ୍ଗିଗଲା ଏବଂ ସାଙ୍ଗେ ସାଙ୍ଗେ ଗୋଟାଏ ପ୍ରଚଣ୍ଡ ଅତର୍କିତ ଧକ୍କାରେ ମୁଁ ଦୁଇ ତିନିବାର ଅଗ୍ରପଶ୍ଚାତ୍ ହୋଇ ବର୍ଥ୍ ଉପରୁ ତଳେ ପଡ଼ିଗଲି । ଡବାଟିରେ ସମସ୍ତେ ଉଠି ବସିଲେ । ସମସ୍ତଙ୍କ ମୁହଁରେ ଫୁଟିଉଠ୍ ଅସ୍ଥୈର୍ଯ୍ୟ ଏବଂ ପ୍ରଶ୍ନବାଚକ ଚିହ୍ନ । ଉତ୍ତର ଦେବ ବା କିଏ ? ସମସ୍ତେ ସ୍ତମ୍ଭିତ ଥିଲେ ।

ବାହାରକୁ ଅନାଇ ଦେଖିଲି ପୂର୍ଣ୍ଣିମାର ପରିଷ୍କାର କିରଣ ଜହ୍ନଆଲୁଅ ଅଜାଡ଼ି ପଡ଼ୁଛି । ରେଳ ଲାଇନର ଦୁଇ ପାଖରେ ବିସ୍ତୀର୍ଣ୍ଣ ପ୍ରାନ୍ତର । ମଝିରେ ମଝିରେ ଗୋଟାଏ ଗୋଟାଏ ବଡ଼ ଗଛ । ଅନନ୍ତ ଦୂରରେ ଦେଖାଯାଉଛି ପର୍ବତର ରେଖା । ଜହ୍ନଆଲୁଅ ନିସ୍ତବ୍ଧ ନିଶ୍ଚଳ । ସମସ୍ତେ ଯେପରି ମୁଗ୍ଧ ହୋଇ ଅପଲକ ଦୃଷ୍ଟିରେ ପୃଥିବୀର ସେଇ ଅପାର୍ଥିବ ଦୃଶ୍ୟ ଉପଭୋଗ କରୁଛନ୍ତି । ନିସ୍ତବ୍ଧତା ଭଙ୍ଗ କରି ଅପୂର୍ବ ସଙ୍ଗୀତରେ ଲାଇନ କଡ଼ରେ ବହିଯାଉଛି ଗୋଟିଏ କ୍ଷୀଣ ପାହାଡ଼ ଝରଣା କୁଳୁକୁଳୁ ହୋଇ । ତା'ର ଯେପରି ଅଜ କ୍ଲାନ୍ତି ନାହିଁ, ବିଶ୍ରାମ ନାହିଁ । ମୁଁ ମଧ୍ୟ ମୁଗ୍ଧ ଭାବରେ ଅନାଇ ରହିଲି ।

ଘଡ଼ିକୁ ଅନାଇ ଦେଖିଲି ରାତି ଦୁଇଟା । ସମସ୍ତେ ଆତଙ୍କିତ ହୋଇ ଦୌଡ଼ିଛନ୍ତି ଗାର୍ଡ଼ ସାହେବ ପାଖକୁ, କିଛି ଦୁର୍ଘଟଣା ଘଟିଛି କି ନା ବୁଝିବାକୁ । କାହାର ପ୍ରତି କାହାର ଭ୍ରୂକ୍ଷେପ ନାହିଁ, ମାଡ଼, ଦଳ, ଚଢ଼, ଉଠି ସମସ୍ତେ ଦୌଡ଼ୁଛନ୍ତି । ମୁଁ କିନ୍ତୁ ଅନାଇ ରହିଲି ସେଇ ଅପୂର୍ବ ସୌନ୍ଦର୍ଯ୍ୟଆଡ଼େ ।

—'ସିଗାରେଟ୍ ପ୍ଲିଜ୍ ।'

ଚମକିପଡ଼ି ଅନାଇ ଦେଖିଲି ଜଣେ ବୃଦ୍ଧ ଭଦ୍ରଲୋକ ସିଗାରେଟ୍ ବଢ଼ାଇ ଛିଡ଼ାହୋଇଛନ୍ତି । ଧନ୍ୟବାଦ ଜଣାଇ ସିଗାରେଟ୍ ନେଲି । ବୃଦ୍ଧ ଡିଅସିଲି ଲଗାଇ ଅତି ବିନମ୍ର ସ୍ୱରରେ ସିଗାରେଟ୍ ଧରାଇଦେଇ କହିଲେ, କିଛି ମନେ କରିବେ ନାହିଁ । ଏ ଅଞ୍ଚଳରେ ଆପଣଙ୍କୁ ହଠାତ୍ ଛିଡ଼ା ହେବାର ଦେଖି ଟିକିଏ ଧୂଆଁ ଯୋଗାଇଲି; କିନ୍ତୁ ମହାଶୟ, ଏଠି ବେଶୀକ୍ଷଣ ଛିଡ଼ା ହେବେନାହିଁ, କବିରାଜ ଦରକାର ହେବ ତା' ହେଲେ ।

ସଂସାରର ଯାତ୍ରା ପଥରେ ମନୁଷ୍ୟ ସ୍ୱର୍ଗେ ସାଥୀ; କିନ୍ତୁ ମନ ଯେତେବେଳେ ଅସୀମର ଉଦ୍ଦେଶ୍ୟରେ ଡେଣା ମେଲିଦିଏ, ସେତେବେଳେ କୌଣସି ସାଥୀ ଭଲ ଲାଗେନାହିଁ । ତଥାପି ଭଦ୍ରତା ଖାତିରରେ ପଚାରିଲି, ଆପଣଙ୍କ···

ବୃଦ୍ଧ ଭଦ୍ରଲୋକ ଯେପରି ଏତିକି ପାଇଁ ଅନାଇ ବସିଥିଲେ । ମୋ କଥା ଶେଷ ନ ହେଉଣୁ କହିଲେ, ମୋ ନାମ ଶଙ୍କର ଦାସ । ପିତା ମୃତ ହରି ଦାସ । ଜାତି ଚାଷା । ସାବିକ ବାସସ୍ଥାନ ମୌଜେ ବଡ଼ୁଆଁ ହରିପୁର, ଥାନା ଯାଜପୁର, ଜିଲ୍ଲା କଟକ । ହାଲ୍ ସାକିନ୍ କେନ୍ଦୁଝର ଜଙ୍ଗଲ । ଏକା ନିଃଶ୍ୱାସକେ ଭଦ୍ରଲୋକ ଏତିକି କହି ଗମ୍ଭୀର ସ୍ୱରରେ ତରବାରି ଡାଇଦାରେ ଦୁଇ ପାହୁଣ୍ଡ ପଛକୁ ଯାଇ ମୁଣ୍ଡ ଝୁଙ୍କାଇ ଗୌରବରେ ଛିଡ଼ାହେଲେ ଏବଂ କିଛିକ୍ଷଣ ପରେ ମୁଣ୍ଡ ଟେକି ପଚାରିଲେ, ଆପଣଙ୍କର ମହାନ୍ ପରିଚୟ ଲାଭ କରି ପାରେ କି ?

କହିଲି, ମୋର ନାମ ଧନଞ୍ଜୟ ବେଣ୍ଡ । ଦିଲ୍ଲୀ ଯାଉଛି ଗୋଟିଏ ବଡ଼ ସ୍ୱକଷ ଉଦ୍ଦେଶ୍ୟରେ ।

ମୋର ଦିଲ୍ଲୀ ଗୋଟିଏ ବଡ଼ ସ୍ୱକଷ ଉଦ୍ଦେଶ୍ୟରେ ଯିବାଣ୍ଟି ତାଙ୍କଠାରୁ ମୋର ଦୂରତ୍ୱ ବୁଝାଇବାରେ ଏବଂ ତାଙ୍କୁ ମୋର ସଙ୍ଗ ଆଶା ତ୍ୟାଗ କରିବାରେ ଯଥେଷ୍ଟ ସ୍ୱରିଥିଲି । ବସ୍ତୁତଃ ଜଣେ ବୃଦ୍ଧର ଏପରି ଚପଳ ଆଚରଣ ମୋତେ ଆଦୌ ଭଲ ଲାଗୁନଥିଲା । ଭଦ୍ରଲୋକ କିନ୍ତୁ ଉତ୍ସାହିତ ହୋଇ କହିଲେ, ବାଃ, ଚମତ୍କାର, ମୁଁ ମଧ୍ୟ ଦିଲ୍ଲୀ ଯାତ୍ରୀ । ଏଥିରେ ମୋର କୌଣସି ଉତ୍ସାହ ନଦେଖି ସେ କ୍ଷୁଣ୍ଣ ସ୍ୱରରେ କହିଲେ, ଓଃ, ଦେଖୁଛି ଆପଣଙ୍କର କଣ ସ୍ୱର ଏପର୍ଯ୍ୟନ୍ତ ଯାଇ ନାହିଁ, କ୍ଷମା କରିବେ; କିନ୍ତୁ ସଙ୍ଗ ଆବଶ୍ୟକ ହେଲେ ଅଧୀନକୁ ସ୍ମରଣ କରିବେ ।

ମୁଁ ଅନ୍ୟ ସହଯାତ୍ରୀ ଅନୁସନ୍ଧାନରେ ଯାଉଛି । ମନେ ରଖିବ, ଟ୍ରେନ୍ ଏଠି କେତେକ୍ଷଣ ଛିଡ଼ା ହେବ ତା'ର ଠିକ୍ ନାହିଁ । ସାମନାରେ ଅନେକ ଦୂର ରେଳଲାଇନ କିଏ ଉଡ଼ାଇଦେଇଛି । ଟ୍ରେନ୍ ଯାତ୍ରୀଙ୍କର ଜୀବନର ଆବଶ୍ୟକତାଠାରୁ କାହାର ରାଜନୈତିକ ବା ଆର୍ଥିକ ଆବଶ୍ୟକତା ବୋଧହୁଏ ଟିକିଏ ବେଶି ହେବାରୁ ଏ ଅନାବଶ୍ୟ ଦୁର୍ଘଟଣା ଘଟିଛି । ଅସ୍ତୁ, ନମସ୍କାର ।

ପରିସ୍ଥିତିର ଭୟାବହତା ମୁଁ ନିମେଷକେ ହୃଦୟଙ୍ଗମ କଲି । ନିମେଷକେ ମୋ ଭିତର ଦାର୍ଶନିକ ଭାବ ଲୁଚିଗଲା । ଏକା ରହିବାକୁ ମୋର ଭୟ ଲାଗିଲା । ଏ ଦୁର୍ଘଟଣାରେ ଯେଉଁ ସାର୍ଟ ଆଗରୁ ଆଗେ ଆସିଛି, ତାହାକୁ ହରାଇବା ଭୟରେ ମୁଁ ଭଦ୍ରଲୋକଙ୍କ ହାତ ଧରି ପକାଇଲି । ଭଦ୍ରଲୋକ ହସି କହିଲେ, ତେବେ ଆସନ୍ତୁ ଅନ୍ୟ ସାଥୀ ଖୋଜି ବାହାରି କରିଯାଉ, ଦୁଇଜଣରେ ଭଲ ଜମିବ ନାହିଁ ।

ଏହି ସମୟରେ ଜଣେ ଯୁବକ ଆମ ଆଡ଼କୁ ଆସିବାର ଦେଖିଲି । ଦୀର୍ଘ, ଗୌର, ସୁନ୍ଦର । ଦେହରେ ଅତି ସାମାନ୍ୟ ବସ୍ତ୍ର ଖଦଡ଼ ଚଦର, ଦୃଷ୍ଟି ତାଙ୍କର ଅସୀମରେ ନିବଦ୍ଧ, ସବୁ ଦେଖି ନଦେଖିଲାପରି । ଧୀର ଗତିରେ ସେ ଆମକୁ ଅତିକ୍ରମ କରି ଚାଲିଗଲେ ଏବଂ ଯାଉ ଯାଉ ନିଜ ମନରେ କହି ଚାଲିଲେ, ସ୍ୱପ୍ରକାଶ ଏବଂ ଜ୍ଞାନାତୀତ ସେଇ ସର୍ବବ୍ୟାପୀ ପୁରୁଷଙ୍କୁ ମୁଁ ଜାଣେ, ମୁଁ ତାଙ୍କୁ ପାଇଛି, ତାଙ୍କଛଡ଼ା ଅନ୍ୟ ଉପାୟ ନାହିଁ । ବେଦାହମେତଂ ପୁରୁଷଂ ମହାନ୍ତମ୍, ଆଦିତ୍ୟ ବର୍ଣ୍ଣମ୍ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାଽତି ମୃତ୍ୟୁମେତି, ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।

ଉପନିଷଦର ଋଷି ଯାଉଛନ୍ତି, ଶଙ୍କରବାବୁ ହସି କହିଲେ, ତାଙ୍କୁ ଡାକିଡାକି । ମହାଶୟ, ଆମେ ନିଃସହାୟ, ନିଃସଙ୍ଗ । ଆମକୁ ସାହାଯ୍ୟ କରିବେ ନି ?

ଭଦ୍ରଲୋକ କିଛି ଦୂର ଯାଇଥିଲେ, ସେଇଠି ଛିଡ଼ାହେଲେ । ସେହିପରି ଅସୀମରେ ଦୃଷ୍ଟି ରଖି । ଟିକିଏ ନୀରବରେ ଛିଡ଼ାହେଲା ପରେ ସେ ଫେରିଲେ ଏବଂ ନିକଟକୁ ଆସି ପଚାରିଲେ, କ'ଣ ଆପଣଙ୍କ ବିପଦ ?

କଙ୍କରବାବୁ କହିଲେ, କହନ୍ତୁ ନା, ଆମେ କେ। ଆପଣଙ୍କର ସଙ୍ଗ ପ୍ରାର୍ଥନା କରୁଛୁ।

ଭଦ୍ରଲୋକ ଟିକିଏ ହସିଲେ। ଚିନ୍ତା କଲେ ବୋଧ ହୁଏ। ଅତି ଶାନ୍ତ ସ୍ୱରରେ କହିଲେ, ଆପଣମାନେ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଦେଖିଆସେ କାହାର କିଛି ବିପଦ ଘଟିଛି କି ନାଁ।

କଙ୍କରବାବୁ ବାଧା ଦେଇ କହିଲେ, ଅଜ୍ଞା ନା। ଅଳ୍ପକେ ଆମେ ସମସ୍ତେ ଗୋଟିଏ ବଡ଼ ସୁଯୋଗ, ଅର୍ଥାତ୍ ସୁବିଧା, ହରାଇବୁ। କାହାର କିଛି ହୋଇନାହିଁ। ବ୍ୟସ୍ତ ହେବାର କୌଣସି କାରଣ ନାହିଁ। ଆପଣଙ୍କର ପରିଚୟ…

—ବ୍ରହ୍ମଦେବ ମିଶ୍ର। ବକ୍ସୀବାଟୀ।

—ବାଃ, ବାଃ, ଅମେ ମଧ୍ୟ କିଛି ଦେଇ ଝରଣା ପାଖରେ ବସିବା।

ଯାତ୍ରୀମାନେ ନାନା ଭଙ୍ଗୀରେ ଯେ ଯାହାର ଡବାକୁ ଫେରୁଥିଲେ। ସେମାନଙ୍କ ମଧ୍ୟରୁ ଗୋଟିଏ ବଳିଷ୍ଠ, ଦୃଢ଼, କମନୀୟ ଅଥଚ ରୁକ୍ଷ ଯୁବକ ହାତରେ ଥିବା ଗୋଟିଏ ପାନ ବେତ ବାଡ଼ିରେ ସମସ୍ତଙ୍କୁ ଆଡ଼େଇ, ହଟୋ, ହଟୋ କହି କ୍ଷିପ୍ରଗତିରେ ଆଗେଇ ଆସୁଥିଲେ ଏବଂ ମଝିରେ ମଝିରେ ଫୁଲିସ୍, ନନ୍‌ସେନ୍ସ, ଡିସ୍‌ଗଷ୍ଟିଂ ଇତ୍ୟାଦି କହି ତାଙ୍କର ବିରକ୍ତି ପ୍ରକାଶ କରୁଥିଲେ।

କଙ୍କରବାବୁ ହଠାତ୍ ତାଙ୍କ ଟେଙ୍କକୁ ଯାଇ ହାତ ପ୍ରସାରିତ କରି ବାଧା ଦେଇ କହିଲେ, ସିଗନାଲ୍ ଅପ୍, ଗାଡ଼ି ରୋକନ୍ତୁ।

ହ୍ୱାଟ୍‌ସ୍ ଦିସ୍ ନନ୍‌ସେନସ୍, କହି ଭଦ୍ରଲୋକ କଙ୍କର ବାବୁଙ୍କ ହାତକୁ ବେତରେ ବାଡ଼େଇ ଦେଲେ। କଙ୍କରବାବୁ ତାଙ୍କ କଥାର ଆଘାତରେ ପ୍ରାୟ ପଡ଼ୁପଡ଼ୁ ଗୋଟାଏ ହାସ୍ୟକର ଭଙ୍ଗି କରି ରହିଗଲେ ଏବଂ ପୁଣି ଦୌଡ଼ିଯାଇ ବାଧା ଦେଇ କହିଲେ, ମହାଶୟ, ଅମେ ତିନହେଁ ବକ୍ସୀବାଟୀ କୋଠି ହୋଇଚ୍ଛୁ… ଆପଣ…

—ସ୍ପ୍ରାଟ୍...ଗୁଡ୍...ମୁଁ ବି...ହେଲନ୍ତୁ'

—ଧନ୍ୟବାଦ, ଆପଣଙ୍କ ପରିଚୟ...

—ଧନୁର୍ଦ୍ଧର ଭଞ୍ଜଦେଓ

—ବାଃ, ଏକଦମ ଚଭୁବର୍ଣ୍ଣି ଯୋଗ ପେ । ହେଲନ୍ତି ଘରଣୀ ପଙ୍କଜ । ଟିକିଏ ରହନ୍ତୁ..., କହି କଙ୍କରବାବୁ ନିଜ ଡବା ପାଖକୁ ଦୌଡ଼ିଗଲେ ଏବଂ ଗୋଟିଏ ବୋତଲ ଓ ପାନ କାଚ ଗିଲାସ ଧରି ଫେରିଲେ ।

ଘରଣୀ ସେ ପାଖରେ ଗୋଟିଏ ପରିଷ୍କାର ସ୍ଥାନ ଦେଖି ଆସନ ବସିଲୁ' କଙ୍କରବାବୁ ଗିଲାସରୁ ମୂଲ୍ୟବାନ୍ ପାନୀୟ ଢାଳି ବ୍ରହ୍ମଦେବ ବାବୁଙ୍କ ଆଡ଼କୁ ବଢ଼ାଇ କହିଲେ, ବ୍ରାହ୍ମଣାଃ ଫାଷ୍ଟ୍

ବ୍ରହ୍ମଦେବବାବୁ ସବିନୟରେ କହିଲେ, ନା, ମୋତେ ଭଲ ଲାଗେନାହିଁ... ତେବେ ଆପଣମାନଙ୍କର ମନ କଷ୍ଟ ହୋଇପାରେ...ଦିଅନ୍ତୁ, ନିର୍ଲିପ୍ତ ଭାବରେ ସେ ଗିଲାସରୁ ପାନୀୟ ଶେଷ କରି ସେହିପରି ଶାନ୍ତ ଭାବରେ ବସିରହିଲେ । ଧନୁର୍ଦ୍ଧରବାବୁ ତାପରେ ଗୋଟିଏ ଗିଲାସ ଶେଷକରି ମୋ ଆଡ଼କୁ ବଢ଼ାଇଦେଇ କହିଲେ; ମୋତେ ଖୁବ୍ ଭଲ ଲାଗେ । ଏହା ମାନସିକ ଓ ଶାରୀରିକ ଶକ୍ତି ଖୁବ୍ ବଢ଼ାଏ ।

ମୋର ପିଇବାର ଇଚ୍ଛା ଥିଲେ ମଧ୍ୟ ବାହାରେ ତାହା ପ୍ରକାଶ ନ କରି ମଦର ଅପକାରିତା ବିଷୟରେ ବୁଝାଇବାକୁ ଆରମ୍ଭ କଲି । ବ୍ରହ୍ମଦେବବାବୁ ହସି କହିଲେ, ମଦର ଅପକାରିତା ବିଷୟରେ ଆପଣ ଯେବେ ଏତେ ଜାଣନ୍ତି, ତେବେ ପିଅନ୍ତୁ, କୌଣସି ଅପକାର ହେବନାହିଁ ।

କଙ୍କରବାବୁ ବାଧାଦେଇ କହିଲେ, ସେ ସବୁ ମୁଁ ନ ଜାଣେ । ନିଅନ୍ତୁ, ପିଅନ୍ତୁ ଆଗେ ।

ତଥାପି ଅନିଚ୍ଛାର ଅଭିନୟ କରି ମୁଁ ଗିଲାସଟି ଶେଷକରି କଙ୍କରବାବୁଙ୍କ ଆଡ଼କୁ ବଢ଼ାଇଦେଲି । କଙ୍କରବାବୁ କହିଲେ; ଆଉ ଦରକାର ? ମୁଁ ମାରବଳେ

ଟିଳପଟି ବନ୍ଦାଇ ରଖିଲ । ଶଙ୍କରବାବୁ ହସି ପୁଣି ଗିଲାସଟି ପୂର୍ଣ୍ଣ କରିଦେଲେ ସୋଡାକୁ ଶେଷକରି ଟିକେଟି ଢାଳି ଥୋଇଦେଲେ । ଶଙ୍କରବାବୁ ବୋତଲଟି ବାକିଙ୍କ ବୋତଲରେ ମୁହଁ ଲଗାଇ ଶେଷକରି କହିଲେ, ବେଶ୍ ଜମିବ, ଏଥର କହନ୍ତୁ, ଏଥର କାହାର କ'ଣ କହିବାର ଅଛି ।

ନା ନା କଥାରେ ଅଳ୍ପ ସମୟ ଭିତରେ ଆଡ୍ଡାଟି ବେଶ୍ ଜମି ଉଠିଲା । ଶଙ୍କରବାବୁ କହିଲେ, ମୋର ପ୍ରସ୍ତାବ, ଏଥର ପ୍ରତ୍ୟେକେ ନିଜ ନିଜ ଜୀବନର ପ୍ରେମର ଅନୁଭୂତି ପ୍ରକାଶ କରନ୍ତୁ···ପ୍ରଥମେ ବ୍ରହ୍ମଦେବବାବୁ ଆପଣ···ବ୍ରାହ୍ମଣାଃ ଫାର୍ଷ୍ଟ ।

ବ୍ରହ୍ମଦେବବାବୁ ଦେହପରି ନିର୍ଲିପ୍ତ ଭାବରେ କହିଲେ, ବେଶ୍ ! ମୁଁ ଭଲ ପାଉଥିଲି ତାଙ୍କୁ ମୋର ସମସ୍ତ ପ୍ରାଣ ଦେଇ । କେତେ ରାତି ଏମିତି କଟାଇଛି ତା ସହିତ··· ! ହଠାତ୍ ଗମ୍ଭୀର ହୋଇ ସେ କିଛିକ୍ଷଣ ନୀରବ ରହିଲେ, ତା'ପରେ ଧୀରେ ଧୀରେ କହିଲେ, ନା, ମୋତେ ବାଦ୍ ଦିଅନ୍ତୁ । ସେ ଅନ୍ୟ ଜଣଙ୍କର ଧର୍ମପତ୍ନୀ ! ତା ବିଷୟରେ ମୋର କୌଣସି ଭାବନା ଚରମ ବିଶୃଙ୍ଖଳତା···

ଆଗ୍ରହର ସହିତ ପଚାରିଲେ, ତେବେ କ'ଣ ପ୍ରତାରଣା ?

—ନା, ପ୍ରତାରଣା କାହିଁକି ହେବ । ମୋତେ ସେ ଭଲ ଲାଗିଲା ନାହିଁ

···ଏଥିରେ ପ୍ରତାରଣା କିଛି ନାହିଁ···

—ଆପଣ କ'ଣ ଅବିବାହିତ ? ଧନଞ୍ଜୟବାବୁ ପଚାରିଲେ ।

—ହଁ

—ବୟସ କେତେ ଆପଣଙ୍କର ?

—ଚାଳିଶ

—ଆପଣ ଆଉ ବିବାହ କରିବେ ନାହିଁ ?

—ନା

—ତା'ର ପାଇଁ, ମୁଁ ପଚାରିଲି ।

—ନା, ତାହାହିଁ ନୁହେଁ, ଦୁନିଆରେ ଅନେକ ନାମ ହୋଇଛି। ମନୁଷ୍ୟର କେତେ ଦୁଃଖ ! କେବେ କାହିଁକି ?···ବୁଦ୍ଧଦେବ ଯେ କହିଛନ୍ତି, କାମନାର ବିନାଶରେ ଦୁଃଖର ବିନାଶ, ଏହା କି'ଣ ଠିକ୍ କଥା ? କାମନା ଥିବ ଅଥଚ ଦୁଃଖ ନ ଥିବ, ଏମିତି କି'ଣ ହୋଇ ପାରେନା ! କାମନାର ବିନାଶ ହେଲେ ମନ ଶରୀରର ବିନାଶ ହେବ । ଏ ଦୁଇର ମଧ୍ୟରେ ସମନ୍ୱୟ କିପରି ହୋଇ ପାରେ ? କିପରି ହୋଇ ପାରେ ? କିପରି ହୋଇ ପାରେ ?

ଏହି ପ୍ରଶ୍ନଟି ସେ ଦୁଇ ତିନିଥର ଧୀରେ ଧୀରେ ନିଜକୁ ନିଜେ ପଚାରି ହେଲାପରି ଅସୀମଙ୍କୁ ଚାହିଁରହିଲେ । କିଛିକ୍ଷଣ ପରେ ତାଙ୍କର ମୁହଁ ଆଶାରେ ଯେପରି ଉଜ୍ଜ୍ୱଳ ହୋଇ ଉଠିଲା । ସେ ଆମଅଡ଼କୁ ଦୃଷ୍ଟି ଫେରାଇ କହିଲେ; ହୋଇପାରେ, ହୋଇପାରେ । ପାତଞ୍ଜଳି ତା'ର ଯୋଗ ମନ୍ତ୍ର ଦେଇ ଯାଇଛନ୍ତି 'ବୃତ୍ତିସାରୂପ୍ୟମ୍ ଇତରତ୍ର' । ନିଜକୁ ସର୍ବର ସବୁ ବସ୍ତୁରେ ଦେଖିବ, ଅର୍ଥାତ୍ ସେବା, ଜଗତର କଲ୍ୟାଣ ସାଧନ । ଗୀତାରେ ଭଗବାନ ମଧ୍ୟ କହିଛନ୍ତି; ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯଃ··· ନିଜର କାମନା ବା ବାଞ୍ଛା ଚରିତାର୍ଥ ହେବା ଯେମିତି ଦରକାର, ଅନ୍ୟର ମଧ୍ୟ ସେହିପରି ଦରକାର ।

ଧନୁର୍ଦ୍ଧରବାବୁ ବିରକ୍ତି ଆଉ ରଖି ନ ପାରି କହିଲେ; କିନ୍ତୁ ଆପଣ ଜାଣନ୍ତି କି, ଏ ବୈଚିତ୍ର୍ୟ ଆପଣଙ୍କର ପ୍ରେମିକାର ପ୍ରତାରଣା ପାଇଁ ?

—ତା'ର ପାଇଁ, ସ୍ୱୀକାର କରୁଛି । ଏ ବିଷୟରେ ସେ ମୋର ଗୁରୁ । ସେଠୁ ଫେରି ନ ଥିଲେ ମୁଁ ଏ ଆନନ୍ଦର ସନ୍ଧାନ ପାଇନଥାନ୍ତି; କିନ୍ତୁ ଏ ତା'ର ପ୍ରତାରଣା ନୁହେଁ ।

ଧନୁର୍ଦ୍ଧରବାବୁ ଉତ୍କ୍ଷିପ୍ତ ଭାବରେ କହିଲେ, ସେ, ପ୍ରତାରଣା ନୁହେଁ ଆଉ କି'ଣ ? ଆପଣମାନଙ୍କ ଭଳି ନରମା ଲୋକଙ୍କ ତାଙ୍କ ମୁହଁ ବଢ଼ାଇଛନ୍ତି । ନ ହେଲେ ସ୍ତ୍ରୀ ସ୍ୱାଧୀନତା କଥା ପୃଥିବୀରେ କୌଣସି ସ୍ତ୍ରୀ ସାହସ କରି ମୁହଁରେ ଧରନ୍ତା ଆଜି ? ପ୍ରେମ·· ମୋହବନ୍ଧ···ପୁଃ···ସବୁ ମିଛ ଦମନ । ସେମାନଙ୍କୁ ଦରକାର ପ୍ରେମ ନୁହେଁ, କଠିନ ଶାସନ । ପୁରୁଷର ପୌରୁଷ ହେଉଛି ନାରୀଙ୍କୁ

ଛାଣି ନିଜ ହାତ ତଳକୁ ଆଣିବା ! କିଏ ଜାଣିଛି ନାଁ କେମାନ ? ଏମାନେ ସବୁ··· ବାଜେ କଥା···ମାର୍କସିଆ ବନ୍ଧୁମାନଙ୍କ ବାର୍ତ୍ତା··· ନାସ୍ତି ଚେତନ ଦସ୍ତା ମାସ୍ତା ଫ୍ଲୁନା···ବସ୍ତୁବାଦୀଙ୍କ··· ମୁଁ ବି ଦିନେ ଭଲ ପାଉଥିଲି, ଜାଣନ୍ତି ? ···ଆପଣଙ୍କ ଭଲ ଭଲ ପାଉଥିଲି···କିନ୍ତୁ ମୋର ନୋବେଲ ପୁରସ୍କାର ପାଇବା ପ୍ରତାରଣା··· ସେ ଆଜି ଜଣେ ଧନୀର ରକ୍ଷିତା ପ୍ରିୟା···ମୁଁ ଦରିଦ୍ର, ତେଣୁ··· ବୁଝନ୍ତୁ ସେ କଥା ···ପ୍ରେମ ପ୍ରେମ ସବୁ ମିଛ··· ଦୁନିଆରେ ଏକମାତ୍ର ସତ୍ୟ ନିଜର ଦକ୍ଷତା ବିସ୍ତାର ···ଯେ କୌଣସି ପ୍ରକାରରେ ନିଜର ନାମ ହାସଲ କରିବାକୁ ହେବ, ନ ହେଲେ ରସାତଳକୁ ଯିବ ! ଏ ଜୀବନ ସଂଗ୍ରାମ ··ଷ୍ଟ୍ରଗଲ୍ ଫର୍ ଏକ୍ଜିଷ୍ଟେନ୍ସ···

ବ୍ରହ୍ମଦେବବାବୁ ଧନୁର୍ଦ୍ଧରବାବୁଙ୍କ କାନ୍ଧରେ ଧୀରେ ହାତ ରଖି କହିଲେ, ଶାନ୍ତ ହୁଅନ୍ତୁ, ଶାନ୍ତ ହୁଅନ୍ତୁ ! ଏଇ ସାମାନ୍ୟ ଘଟଣା ପାଇଁ ଆପଣ ନିଜର ଦୃଷ୍ଟିଭଙ୍ଗିକୁ ବିକୃତ କରନ୍ତୁ ନାହିଁ । ସଂଗ୍ରାମ, ଷ୍ଟ୍ରଗଲ୍ ଏସବୁ ଭ୍ରମାତ୍ମକପୂର୍ଣ୍ଣ ତଥ୍ୟ । ଜୀବନ ହେଉଛି ଆନନ୍ଦ, ଆନନ୍ଦ ।

ଧନୁର୍ଦ୍ଧରବାବୁ ଅଧିକ ଉତ୍କ୍ଷିପ୍ତ ହୋଇ କହିଲେ, ଯାହାକୁ ଆପଣ-ବିକୃତ କହୁଛନ୍ତି, ମୁଁ ବୁଝେ ସେଇଟାର ଚରମ ସତ୍ୟ । ମୋର ଦର୍ଶନ ଶ୍ରବଣ ଦର୍ଶନ···ଯାହା ଘଟୁଛି ।

ବ୍ରହ୍ମଦେବବାବୁ ତାଙ୍କୁ କୋଳକୁ ଆଉଜାଇ କହିଲେ, ଥାଉ ସେ କଥା ! ଧନଞ୍ଜୟବାବୁ, ଆପଣଙ୍କ ଅଭିଜ୍ଞତା କୁହନ୍ତୁ ।

ମନ ଖୋଲି, କହିବାକୁ ମୋର ସବୁବେଳେ କୁଣ୍ଠା ବୋଧହୁଏ । ବନ୍ଧୁମାନେ ଏଥିପାଇଁ ମୋତେ କହନ୍ତି, ବ୍ୟବସାୟ କରି କରି ମୋର ମନ ବ୍ୟବସାୟୀ ହୋଇଯାଇଛି । ତଥାପି ବାଧ୍ୟ ହୋଇ କହିବି, ଦେଖନ୍ତୁ, ଧନୁର୍ଦ୍ଧରବାବୁ ଯାହା କହିଲେ, ତାହା ପ୍ରାୟ ଠିକ୍ । ମୋ ଜୀବନରେ ମୁଁ ମଧ୍ୟ ପ୍ରତାରିତ ହୋଇଛି; କିନ୍ତୁ ଉପାୟ କ'ଣ ? ବଞ୍ଚିବାକୁ ହେଲେ ପୁରୁଷକୁ ନାରୀ ଦରକାର । ସେମାନେ ପୁରୁଷ ଛଡ଼ା ଚଳିପାରନ୍ତି; କିନ୍ତୁ ପୁରୁଷର ନାରୀ ନ ହେଲେ ଚଳିବା ଅସମ୍ଭବ । କିଏ ଜଣେ କୁଆଡ଼େ କହିଛନ୍ତି, ବନାଶ୍ରୟେ ନ ତିଷ୍ଠନ୍ତେ କବିତା,

କରିବା ଲାଗି ଯେଉଁ ପ୍ରେରଣା, ଭୁଲ ଧାରଣା । ତେବେ ସେଥିରେ ଏତିକି ସତ୍ୟ ଅଛି ଯେ, ସେମାନଙ୍କର ପ୍ରେରଣା ଆମର ଶକ୍ତି; କାରଣ ସେମାନଙ୍କର ପାଳନ କରିବା ପ୍ରବୃତ୍ତି ବେଶି; କିନ୍ତୁ ଆମର ପ୍ରେରଣା ସେମାନଙ୍କର ପ୍ରେମ, ମନ, କାରଣ ଆମର ସୃଷ୍ଟି କରିବାର ପ୍ରବୃତ୍ତି ବେଶି । ତେଣୁ ଆମେ ବେଶି ଆକର୍ଷିତ ହେଉ । ନାରୀ ନହେଲେ ଆମର ଚଳେନା । ପାଳନ କରିବାର ପ୍ରବୃତ୍ତି ବେଶି ବୋଲି ସେମାନଙ୍କୁ ଅନେକ ସମୟରେ ନାନା କୂଟନୀତି ଅବଲମ୍ବନ କରିବାକୁ ପଡ଼ିଥାଏ । ସେଥିପାଇଁ ସେମାନେ ଅନେକ ସମୟରେ ନିର୍ଦ୍ଦୟ ମଧ୍ୟ ହୁଅନ୍ତି । ଅନେକ ସମୟରେ ନୀଚ ମଧ୍ୟ ହେବାକୁ ପଡ଼େ; କାରଣ ତାଙ୍କର ପରିସର ଅନେକ ଛୋଟ ହୋଇଯାଏ । ଏଣେ ପୁରୁଷ ବାଛିବାରେ ନାରୀ ପ୍ରତାରଣା କରିବାକୁ ଅନେକ ସମୟରେ ବାଧ୍ୟ ହୋଇପଡ଼େ । କିନ୍ତୁ ଏଥିରେ ଉତ୍କ୍ଷିପ୍ତ ହେଲେ ଚଳିବ ନାହିଁ । ଜୀବନ ଗୋଟାଏ ବ୍ୟବସାୟ । ଏ ବ୍ୟବସାୟରେ ଶତ ବ୍ୟର୍ଥତାରେ ମଧ୍ୟ ମନ ସ୍ଥିର ରଖିବାକୁ ହେବ । ମୁଁ ପ୍ରତାରିତ । ତଥାପି ମୁଁ ବିବାହିତ । ସ୍ତ୍ରୀକୁ ଯେ ମୁଁ ମନରୁ ଭଲ ପାଏ, ତା' ନୁହେଁ; କିନ୍ତୁ ସେମିତି ଭଲ ପାଇବାର ଅଭିନୟ କରେ । ନ କଲେ ବ୍ୟବସାୟ ଚଳିବ ନାହିଁ । କାରଣ ଏ ବ୍ୟବସାୟର ଲକ୍ଷ୍ୟ ନାରୀର ପ୍ରେମ ପାଇବା, ତାକୁ ପ୍ରେମ ଦବା ନୁହେଁ । ଏହାହିଁ ମୋର ଧାରଣା । ଅତଏବ ମୁଁ ଏ ପ୍ରତାରଣାରେ ଆଦୌ ବ୍ୟଥିତ ହୋଇ ପଡ଼ିନି । ବରଂ ନାରୀର ସଙ୍ଗସୁଖ ମୁଁ ହାସଲ କରିଛି । ଅବଶ୍ୟ ସେଥିପାଇଁ ଅନେକ ଖରଚ ପଡ଼ିଛି, ଅନେକ ବିପଦ ଆସିଛି; କିନ୍ତୁ ବ୍ୟବସାୟ କଲେ ସେସବୁ···

ଏତିକି କହି ମୁଁ ମୋର ଅଭିଜ୍ଞତା ଶେଷ କଲି । ସମସ୍ତେ ନୀରବ ରହିଲେ । କିଙ୍କରବାବୁଙ୍କ ବିସ୍ମୟ ଦୃଷ୍ଟିରୁ ତାଙ୍କୁ ତାଙ୍କର ଅଭିଜ୍ଞତା ବିଷୟରେ ପଚାରିବାକୁ କାହାରି ବୋଧହୁଏ ଇଚ୍ଛା ହେଉନଥାଏ । ସେ କିନ୍ତୁ ନିଜେ କହିଲେ "ଦେଖନ୍ତୁ, ବ୍ରହ୍ମବାବୁ ପ୍ରେମରୁ ପାଇଛନ୍ତି ଜୀବନର ଆନନ୍ଦ, ଗାଳି ଦେଇଦେବାର ଆନନ୍ଦ, ଧନୁର୍ଦ୍ଧରବାବୁ ପାଇଛନ୍ତି ଜଗତରେ ନିଜର ଶକ୍ତି ପ୍ରତିପତ୍ତିର ପ୍ରସାର, ଧନଞ୍ଜୟ-ବାବୁ ପାଇଛନ୍ତି ଜୀବନର ପ୍ରାପ୍ତ ପ୍ରେମର ପୁଞ୍ଜି ବୃଦ୍ଧି ମାନେ ପାଇବାର ସୁଖ, କିନ୍ତୁ ମୁଁ ପାଇଛି ନିଜର ଦାସତ୍ୱ ।"

ତଥାପି ସମସ୍ତେ ନୀରବ ଦେଖି ସେ କହିଲେ, ଆପଣମାନେ ମୋଠାରୁ ମୋ ଅଭିଜ୍ଞତା ବିଷୟରେ କିଛି ପଚାରୁ ନାହାନ୍ତି କାହିଁକି ? ବୋଧହୁଏ ମୋର ପାଗଳ

କଲେ ଦେଖିମୋନେ ଟୋକାଏ ବୁଢ଼ା କହୁଛନ୍ତି; କିନ୍ତୁ ମୋର ବୟସ ବର୍ତ୍ତମାନ କେତେ କୁହନ୍ତୁ ତ ?

ମୁଁ କହିଲି, ତ୍ରୀଂଶ ଟପ୍ପଣ ହେବ ।

କିଙ୍କରବାବୁ କହିଲେ; କିନ୍ତୁ ଆପଣମାନେ ବିଶ୍ୱାସ କରିବେ ନାହିଁ ଯେ ମୋର ବୟସ ମାତ୍ର ତିରିଶ ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଲୁ । ସେ କହିଲେ, ମୋର ଦାନ୍ତ ହଳିଯିବାର ଓ ବାଳ ପାଚିଯିବାର କାରଣ କ'ଣ ଜାଣନ୍ତି ?

କ'ଣ ? ସମସ୍ତେ ଉତ୍‌କଣ୍ଠାସହ ପଚାରିଲୁ ।

ସେ ନିର୍ବିକାର ଭାବରେ କହିଲେ, ଶୁଣି ଆଶ୍ଚର୍ଯ୍ୟ ହେବେ । ପ୍ରେମ ହେଉଛି କାରଣ ।

ବ୍ରହ୍ମାଦେବବାବୁ ହସି ପଚାରିଲେ, ନାଙ୍କର ପ୍ରେମ କ'ଣ ଆପଣଙ୍କ ଜୀବନରେ ଏତେ ଭଦ୍ରର କାରଣ ହୋଇଥିଲା ? ତା'ହେଲେ ତ ଏକ ସମ୍ପୂର୍ଣ୍ଣ ନୂଆ ତଥ୍ୟ ପାଇଛନ୍ତି ଆପଣ ଜୀବନରେ !

— ହଁ, ବରଦର ପିଠା ହୋଇଛି ଗଲେ ।

ଧନୁର୍ଦ୍ଧରବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ, ଆଏଁ !! ଏକ୍‌ଦମ୍ ପିମ୍ପା ଭଳିତ ପ୍ରେମ । ଧନଞ୍ଜୟବାବୁ, ଅପଣତ ପ୍ରେମର ବ୍ୟବସାୟୀ, ଆପଣ ବ ବୋଧହୁଏ ଏତେ ପ୍ରେମ ପୁଞ୍ଜି କରିନାହାନ୍ତି । କିଙ୍କର ବାବୁ କ'ଣ ପ୍ରେମର ଉତ୍ତାପ ବ୍ୟବସାୟ ଖୋଲିବେ କି ?

— ନା, ନା । ଏ ପ୍ରେମର ପିମ୍ପା ନୁହେଁ ଯେ ବ୍ୟବସାୟ କରିବି । ଏ ସବୁ ଦରଦର ପିମ୍ପା, ଦୁଃଖର ପିମ୍ପା । ଏ ମୋ ମୂଳ ଧନ, ମୋ ରକ୍ତର ସ୍ୱେଦ ।

ସମସ୍ତେ ହସି ଉଠିଲେ । କିଙ୍କର କହିଲେ, ତେବେ ଶ୍ରବଣ କରନ୍ତୁ । ମୁଁ ଥିଲି ଅତି ଗରିବ । ମୋର ପାଞ୍ଚବର୍ଷ ବୟସରେ ପିତା ପ୍ରାଣତ୍ୟାଗ କରିଥିଲେ । ମୋର ବିଧବା ମାତା ଗ୍ରାମରେ ଧାନ କୁଟି ମୋତେ ବାଲ୍ୟଶିକ୍ଷା ଦେଇଥିଲେ । ଗ୍ରାମରେ ବୃତ୍ତି ପାଇ ମୁଁ ଆସିଲି କଟକରେ ଉଚ୍ଚ ଶିକ୍ଷାଲାଭ କରିବାକୁ । କଟକରେ ଲକ୍ଷ ଭିକ୍ଷା ମାଗି ମୁଁ ପଢ଼ିବାକୁ ଲାଗିଲି । ଏହି ସମୟରେ କୋଟିଏ ଧମା

ପଢ଼ିବ ବୋଲି ମୋତେ ଅନୁମତି ମିଳିଲା । ସେଠାରେ ମୋର କର୍ତ୍ତବ୍ୟ ହେଲା ଧନୀଟିଙ୍କ ଏକମାତ୍ର କନ୍ୟା ସୁଶୀଳାକୁ ପାଠ ପଢ଼ାଇବା । ଆନନ୍ଦରେ ରହିଲି; କିନ୍ତୁ ହାୟ, ରହିବି କି ? କେତେଦିନ ପରେ ମୁଁ ପ୍ରେମରେ ପଡ଼ିଲି । ମୋର ବୟସ ସେତେବେଳକୁ ଷୋଳ ଏବଂ ସୁଶୀଳାର ବୟସ ଚଉଦ । ବର୍ତ୍ତମାନ ମୋତେ ଦେଖିବାକୁ ଏମିତି ଦିଶିନା, ସେତେବେଳେ ମୋର ସ୍ୱାସ୍ଥ୍ୟ ଓ ଶ୍ରୀ ଥିଲା । ପ୍ରେମରେ ପଡ଼ିଲି, ଯାହାକୁ କହନ୍ତି, ମୁଣ୍ଡ ନିଚ୍ଚେ ପଡ଼ିଲି । କଲେଜ ପଢ଼ା ପଢ଼ିବାକୁ ଆଉ ମନ ହେଉନଥିଁ । ସବୁବେଳେ ଖାଲି ସୁଶୀଳାର ଚିନ୍ତା । ବୟସ ଅଳ୍ପ ହେଲେ କ'ଣ ହେବ, ସୁଶୀଳା ମୋର ମନର ଭାବ ବୁଝି ପାରିଥିଲା । ଯାହା କହନ୍ତି, ନାରୀର ଗୋଟାଏ ଅନୁଭବର ବୁଦ୍ଧି ଅଛି, ଯାହା ପୁରୁଷର ନାହିଁ । ମୋର ମନକଥା ଜାଣିବାରେ ସୁଶୀ ମଧ୍ୟ ତା'ର ମନର ଭାବ ପ୍ରକାଶ କଲା । ଆନନ୍ଦରେ ମୁଁ, ମୋର ମନେହୁଏ, କେତେଦିନ ବେହୋସ ହୋଇ ରହିଲି । ସୁଶୀର ମା' ବସିଥାଆନ୍ତି ଠାକୁର ଦୁଆରରେ । ପିତା ବ୍ୟସ୍ତଥାଆନ୍ତି ବ୍ୟବସାୟରେ । ଧନୀର ଏକମାତ୍ର ସନ୍ତାନ ହିସାବରେ ସୁଶୀ ପାଇଥିଲା ଅବାଧ ସ୍ୱାଧୀନତା । କ୍ରମେ ଅବସ୍ଥା ଏପରି ଜଟିଳ ହେଲା ଯେ ଦୁହେଁ ଦୁହିଁଙ୍କୁ ନଦେଖିଲେ ରହିପାରିବୁ ନାହିଁ । ଆଇ. ଏ. ପରୀକ୍ଷା ନିକଟେଇ ଆସିବାରୁ ସୁଶୀ କହିଲା, ଏଥର ଥାଉ । ତୁମେ ଭଲକରି ପାସ୍ ନକଲେ ବଦନାମ ହୋଇ ଚଳିବନାହିଁ !

—ସେତେବେଳେ ମୋର ଚେତା ପଶିଲା । ଲାଗିପଡ଼ିଲି ପଢ଼ାରେ । ଉପାୟ ନାହିଁ । ବୃତ୍ତି ନେଇ ଆଇ. ଏ. ପାସ୍‌କଲି ମଧ୍ୟ । ଯେଉଁଦିନ ପରୀକ୍ଷାଫଳ ବାହାରିଲା, ସେଦିନ ସୁଶୀର ଆନନ୍ଦ କହିଲେ ନସରେ । ସେଦିନ ସେ ଗୋଟିଏ ବଡ଼ ଭୋଜି ଆୟୋଜନ କଲା । ସମସ୍ତେ ଖାଇସାରି ଯେତେବେଳେ ଚାଲିଗଲେ··· ବର୍ତ୍ତମାନ୍ ବି ସେକଥା ମନେପଡ଼ିଲେ···ଉଃ··· । ସେଦିନ ଥିଲା ପୂର୍ଣ୍ଣିମା । ଆକାଶରେ ସେଦିନ ରୁପେଲି କିରଣର ବନ୍ୟା । ସୁଶୀ ମୋତେ ଭିତରକୁ ଡାକି ନେଇ ହଠାତ୍ ମୋ ବେକରେ ଗୋଟିଏ ମଲ୍ଲୀଫୁଲର ହାର ପିନ୍ଧାଇଦେଲା । ମୁଁ ଧୀରେ ତାକୁ ମୋ ଛାତିକୁ ଆଉଜାଇ ନେଲି । ତାପରେ···

ଶଙ୍କରବାବୁ ହଠାତ୍ ନୀରବ ରହି ଶୂନ୍ୟକୁ ଅନାଇ ପୁଣି ଆରମ୍ଭକଲେ, ଏହାପରେ ସୁଖରେ ଗଲା ପୁଣି ଦୁଇବର୍ଷ । ଜୀବନରେ ସୁଖର ଦିନଗୁଡ଼ିକ ମନୁଷ୍ୟର ଶେଷ ଜୀବନର ପୁଞ୍ଜି ସିନା । ମନୁଷ୍ୟ ସେଇଠି ଭାରି କୃପଣ । ଟିକିଏ ସାମାନ୍ୟ

କଥା ମୋ ଭୁଲିବାକୁ ଦେଉନି । ବି. ଏ. ପରୀକ୍ଷା ପୁଣି ଆସିଲା । ଘର ଛାଡ଼ିକି ଲାଗିଲି । ଭାବିଲି କ'ଣ ହେବ ବି. ଏ. ପାସ୍ କରି । ଏଇଟା ମୋର ମୂର୍ଖ; କିନ୍ତୁ ସ୍ମୃତୀ କହିଲା, ବି. ଏ. ଭଲକରି ପାଶ କରନ୍ତୁ...

—ପୁଣି ଦିନ ବିତି ଲାଗିଥିଲା । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବି. ଏ. ପାଶ କଲି । ସତେବେ ସ୍ମୃତୀଅଡ଼କୁ ଚାହିଁଲି । ସେଦିନ ମଧ୍ୟ ସ୍ମୃତୀ ମୋ ବେକରେ ଫୁଲମାଳ ପିନ୍ଧାଇ ଦେଇଥିଲା । କିନ୍ତୁ......

କିନ୍ତୁ......

—କିନ୍ତୁ କ'ଣ ? ଅତି ସମସ୍ତେ ଏକାସାଙ୍ଗେ ପଚାରିଲେ ।

—କିନ୍ତୁ, ସ୍ମୃତୀ କହିଲା ମୁଁ ଧନୀ ନହେଲେ ବିବାହ ଅସମ୍ଭବ । ମୁଣ୍ଡରେ ମୋର ବଜ୍ରପାତ ହେଲା । ମୁଁ ବସିପଡ଼ିଲି । ଉପାୟ କ'ଣ । ଏଣ୍ଡ୍ରେ ବୃତ୍ତିରେ ଟଙ୍କା ପାଉଛି; କିନ୍ତୁ ସ୍ମୃତୀର ଧନ ତୁଳନାରେ ତା'ର ପରିମାଣ ବା କେତେ ! ସେଦିନ ରାତିରେ ମୋର ନିଦ ହେଲାନାହିଁ । କେବଳ ଚିନ୍ତା କ'ଣ କଲେ ଅଳ୍ପଦିନରେ ଧନୀ ହୋଇପାରିବି । ଦୁଇରାତି ଅନିଦ୍ରାରେ କଟାଇବା ପରେ ମୁଁ ଦୌଡ଼ିଲି ବ୍ୟବସାୟୀ ମହଲକୁ । ଅଧିକାଂଶ ମୋତେ ଉପଦେଶ ଦେଲେ କାଠ ବ୍ୟବସାୟ କରିବାକୁ । ପରଦିନ ସ୍ମୃତୀର ପିତାଙ୍କଠାରୁ କିଛି ଋଣ ନେଇ ଟଙ୍କା ଧରିଲି ବାନ୍ଧି ଦୌଡ଼ିଲି କେନ୍ଦୁଝର ଜଙ୍ଗଲକୁ । ଭାଗ୍ୟକୁ ଦୁଇଟିବର୍ଷ ଭିତରେ ମୁଁ ହେଲି ଲକ୍ଷପତି......ଅବଶ୍ୟ, ସ୍ୱୀକାର କରୁଛି, ବନ୍ଧୁ ଅସତ୍ ଉପାୟଦ୍ୱାରା କିନ୍ତୁ ଉପାୟ ନାହିଁ । ମୋତେ ଅଳ୍ପଦିନରେ ଧନୀ ହେବାକୁ ହେବ । ଦୁଇବର୍ଷ ପରେ ଫେରିଲି.. ସତେବେ ସ୍ମୃତୀର ମୁହଁକୁ ଚାହିଁଲି । କିନ୍ତୁ...

- ପୁଣି କିନ୍ତୁ, ସମସ୍ତେ ଅଧୀର ଭାବରେ ପଚାରିଲେ ।

ଶଙ୍କରବାବୁ ଅସହାୟ ଭାବରେ କହିଲେ, କିନ୍ତୁ...କିନ୍ତୁ...ଥରେ ସ୍ମୃତୀ ଚାହିଁଲା ମୋ ଗୋଡ଼ଅଡ଼କୁ ।

ଗୋଟାଏ ବଡ଼ ଝଟକା କଟିଗଲାଭଳି ମୁଁ ନିଃଶ୍ୱାସମାର କହିଲି, ଓଃ, ବୁଝିଲି ନମସ୍କାର କରିବାକୁ ନଷ୍ଟପ୍ର । ନାରୀର ମନ ଅପଣ ଚିକ୍ ଜାଣନ୍ତି ନାହିଁ । ସେମାନେ ମୁହଁ ଖୋଲି କିଛି କୁହନ୍ତି ନାହିଁ, ଇଙ୍ଗିତରେ ସବୁ କୁହନ୍ତି ।

ଶଙ୍କରବାବୁ କିନ୍ତୁ ହେଜ୍ଝପରି ଅସହାୟ ଭାବରେ କହିଲେ, ଅରେ-ନା, ନା, ସେସବୁ ବାଜେକଥା, ପୋଥି ବାଇଗଣ । ନାରୀ ଇଙ୍ଗିତରେ କୁହେ ସତ,

କିନ୍ତୁ ଯାହା କୁହେ ଇଙ୍ଗିତରେ, ତାହା ଗଣ୍ଡି କଥା । ନମସ୍କାର କରିବାକୁ ସୁଶ୍ରୀ ମୋ ଗୋଡ଼ଆଡ଼କୁ ଝୁଙ୍କିନଥିଲା । ଯେତେ ଲୁଚାଇଲେ ବି ମୋର ଗୋଦର ଗୋଡ଼ ତା ନଜରରେ ପଡ଼ିଥିଲା । କି ତୀକ୍ଷ୍ଣ ନାରୀର ଦୃଷ୍ଟି !! ଓଃ !! ଦୁଇ ବର୍ଷ ଜଙ୍ଗଲରେ ରହି ନାନା ଡାକ୍ତରଙ୍କ ଅତ୍ୟାଚାର ଓ ମଶା କାମୁଡ଼ାରେ ମୋର ହେଲା ବାତଜ୍ୱର ଓ ତାପରେ 'ପଦବୃଦ୍ଧି' । ଏଇ ଦେଖନ୍ତୁ । ଗୋଡ଼ରୁ ଲୁଗା ଟେକି ସେ ଦେଖାଇ ପୁଣି ଲୁଗା ଘୋଡ଼ାଇଦେଇ ସେ କହିଲେ କିନ୍ତୁ, ମୁଁ ତା'ର ମନୋଭାବ ବୁଝିପାରି କହିଲି, ସୁଶ୍ରୀ, ତୁମେ ଭାବନାହିଁ । ବର୍ଷକ ଭିତରେ ଏହାର ଚିହ୍ନ ବର୍ତ୍ତି ନଥିବ ଲଜ୍ଜା ଓ ବେଦନା ନେଇ ସେଦିନ ଫେରିଲି । କଟକରେ ଚିକିତ୍ସା ଆରମ୍ଭ କଲି । ଅନେକ ଅର୍ଥ ବ୍ୟୟପରେ ମୋର ଗୋଡ଼ଫୁଲା କେତେକ କମିଗଲା ପୁଣି ଫେରିଲି ସୁଶ୍ରୀ ପାଖକୁ । ଏଥର ବିବାହର ପ୍ରସ୍ତାବ କଲି । କିନ୍ତୁ······

—ଆଏଁ ପୁଣି କିନ୍ତୁ !!! ଏ 'କିନ୍ତୁ'ର କଣ ଶେଷ ନାହିଁ, ମୁଁ କହିଲି ।

—ନା ବୋଧହୁଏ । ପୁଣି ଆଉ ଗୋଟିଏ କିନ୍ତୁ ବାହାରିଲା । ସୁଶ୍ରୀ ଚାହିଁଲା ମୋର···

ସମସ୍ତେ ଉତ୍କଣ୍ଠାର ସହିତ ପଚାରିଲୁ, କେଉଁଠିକି ?

—ମୋର ମୁଣ୍ଡକୁ । ବାତଜ୍ୱର ପାଇଁ ଅନେକ ଆର୍ସେନିକ୍ ଇଞ୍ଜେକ୍ସନ ନେବା ପରେ ମୋ ମୁଣ୍ଡରେ ଆଉ ଗୋଟିଏ ବି ବାଳ ରହିଲାନାହିଁ । ନୀରବରେ ସେଦିନ ଫେରିଲି ପୁଣି ଗୋଟିଏ ନିର୍ଲଜ୍ଜ ଯନ୍ତ୍ରଣା ନେଇ; କିନ୍ତୁ ମନରେ ଗୋଟିଏ ଜିଦ୍ ଚାପିବସିଲା । ସୁଶ୍ରୀକୁ ପାଇବାକୁ ହିଁ ହେବ । ଯେତେ ଖର୍ଚ୍ଚ ପଡ଼ୁ । କେଶର ଚିକିତ୍ସା ଆରମ୍ଭ ହେଲା । ବହୁ ଅର୍ଥ ବ୍ୟୟ ପରେ କୁଣ୍ଡାର ସହିତ ଜଞ୍ଜି ବାଳ ଉଠିଲେ ସତ; କିନ୍ତୁ ରଙ୍ଗ ବଦଳାଇ ଉଠିଲେ । ହାୟରେ ପ୍ରକୃତିର ନିୟମ । ମୋ ପକ୍ଷରେ ତା ଟିକିଏ ବି କୋହଳ ହେଲାନି । ଯାହାହେଉ ଫେରିଲି ସୁଶ୍ରୀ ପାଖକୁ । କିନ୍ତୁ··· ।

ହାୟ, ହାୟ, ତଥାପି କିନ୍ତୁ ? ନାରୀ ଛଳନାମୟୀ ଜାଣିସୁଦ୍ଧା ମୁଁ ଧନୁର୍ଦ୍ଧର ଗର୍ଜିଉଠିଲି ନାଟକୀୟ ଭଙ୍ଗୀରେ ।

ହାଁ, ମୁଣ୍ଡ ମରୁଭୂମିର ବୃକ୍ଷ କହିଲେ ପାରିଲ ସତ; କିନ୍ତୁ ବେଦାନ୍ତ ପଢ଼ାଇପାରିଲ । ଗୋଟିଏ ବି ବାକ୍ୟ ବି ବୁଝିଲ ନାହିଁ । ମୁଁ ବର୍ତ୍ତମାନ ବେଦାନ୍ତ ସରସ୍ୱତୀ । ସରସ୍ୱତୀ କହୁଛି କାରଣ ବେଦାନ୍ତ ହେବା ପରେ ଚରମ ଜ୍ଞାନ ପାଇଛି ଯେ ଦ୍ରବ୍ୟ ଗୁଣର ଅନୁମାନରୁ ନିର୍ଦ୍ଧାରଣ ଚେଷ୍ଟା ବୃଥା । ଏତେ ଦିନର ଚେଷ୍ଟା କରିଛି ସ୍ତ୍ରୀ ମୋର ମୁଣ୍ଡକୁ ବୁଝିବାକୁ; କିନ୍ତୁ ସେ ବୁଝିଛି ଗୋଡ଼କୁ, ମୁଣ୍ଡକୁ ଏମନ୍ତ ଛାଡ଼ିଲେଣି । ଏଥର ସେ ମୋ ମୁଣ୍ଡକୁ ବୁଝିଲ ସତ; କିନ୍ତୁ ମୋର ମୁଣ୍ଡ ତା'ର ମନରେ ଯେଉଁ ଭାବ ଉପୁଜାଇଲା ତାହା ପ୍ରେମ ନୁହଁ, ଭୟ, ହାସ୍ୟ । ଫଳ କଷ୍ଟ ନେଇ ଫେରିଲି । ବାହାରେ ଆସି କନ୍ତୁଷଣ ଜୀବନରେ ଛାଡ଼ି ହୋଇ ଜୀବନର ପଦଚ୍ୟୁତିକୁ ଉଲ୍ଲଟାଇଦେଲି । ଦୁଃଖ ବା ବେଦନା ପରିବର୍ତ୍ତେ ମୋତେ ଘାରି ହସ ମାଡ଼ିଲା । ଜାଣେନା, ଏ ହସ ଅଶ୍ରୁ ବେଦନାକୁ ନା କ'ଣ । ହେଉ ଫେରି ସିଧା ଅଇଲି ମୋର ଜଙ୍ଗଲକୁ । ବ୍ୟବସାୟ ଛାଡ଼ିଲି, ସୁଖର ଆଶା ଛାଡ଼ିଲି, ମୋର ବର୍ତ୍ତମାନ ଏକମାତ୍ର ସାଥୀ··· ।

କଙ୍କରବାବୁ ମଦର ଶୂନ୍ୟ ପାତ୍ରଟିକୁ ଟେକି ଦେଖାଇଲେ ।

ଧନଞ୍ଜୟ ହସି ହସି କହିଲେ, ଗୋଟିଏ ଶର ଲକ୍ଷ୍ୟଭ୍ରଷ୍ଟ ହୋଇଛି ସିନା, ଧନୁରେ ଆଉ ଶର ଯୋଖନ୍ତୁ ।

କଙ୍କରବାବୁ ମଧ୍ୟ ହସି କହିଲେ, ଧନୁ ଅବସ୍ଥା ଦେଖୁଛନ୍ତି, ଆଉ ଶର ମାରିବା ଏଥିରେ ଚଳିବ ନାହିଁ । ଏ ବର୍ତ୍ତମାନ ଖାଲି ଚୂଲିକୁ ଯୋଗ୍ୟ ।

ବୁଦ୍ଧଦେବବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, ଓଁ ପୂର୍ଣ୍ଣମଦଃ, ପୂର୍ଣ୍ଣମିଦମ୍, ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ । ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ । ତାହା ମଧ୍ୟ ପୂର୍ଣ୍ଣ, ଏହା ମଧ୍ୟ ପୂର୍ଣ୍ଣ । ପୂର୍ଣ୍ଣରୁ ପୂର୍ଣ୍ଣ ଉଦ୍‌ଗତ ହୁଏ । ପୂର୍ଣ୍ଣରୁ ପୂର୍ଣ୍ଣକୁ ଗ୍ରହଣ କଲେ ପୂର୍ଣ୍ଣହିଁ ଅବଶିଷ୍ଟ ଥାଏ । ଓଁ ତ୍ରିବିଧ ବିଘ୍ନର ଶାନ୍ତି ହେଉ ।

ଗାର୍ଡ ସାହେବ ପାଟିକରି ଡାକିଲେ, ଆସନ୍ତୁ, ଆସନ୍ତୁ, ଗାଡ଼ି ଛାଡ଼ିବ ।

ଆମେ ସବୁ ଦଉଡ଼ିଲୁ । ଏହା ପରେ କାହାର ସହିତ କାହାର ଆଉ ଦେଖା ହୋଇନ ।

# ମହାତ୍ମା

ଜିତେନ୍ଦ୍ର ତାଙ୍କର ନୀତି ଅର୍ଜନ କରିଥିଲେ । ଯେଉଁ ପିତାମାତାର ଆଦର୍ଶରେ, ଯେଉଁ ପରିବାରରେ, ତାଙ୍କର ଜୀବନ ଗଢ଼ି ଉଠିଥିଲା, ତାହା ମଧ୍ୟ ଏହାର ସମ୍ପୂର୍ଣ୍ଣ ଉପଯୋଗୀ ।

ଜିତେନ୍ଦ୍ର 'ସିଦ୍ଧାନ୍ତ ସରସ୍ୱତୀ' ନାମରେ ପରିଚିତ । ଏ ଉପାଧି ସେ କୌଣସି ପରୀକ୍ଷା ଦେଇ ହାସଲ କରିନଥିଲେ । ଅର୍ଥଶାସ୍ତ୍ର, ଇତିହାସ, ଗଣିତ, ସାହିତ୍ୟ ଆଦି ସହିତ ସଂସ୍କୃତ ସାହିତ୍ୟରେ ଅବଶ୍ୟ ତାଙ୍କର ଅଗାଧ ପାଣ୍ଡିତ୍ୟ ଅଛି; କିନ୍ତୁ ସେ କଦାପି ଅନ୍ୟର ମତରେ ଚାଳିତ ହୁଅନ୍ତିନାହିଁ । ସେ କୌଣସି ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ପରେ ଏବଂ ସବୁଦିଗ ବିଚାରକରିବା ପରେ ଯେଉଁ ସିଦ୍ଧାନ୍ତ ସେ କରନ୍ତି, ତାହାହିଁ ସେ ବ୍ୟକ୍ତ କରନ୍ତି । ଗୋଟିଏ ବିଷୟ ସମସ୍ତେ ଲକ୍ଷ କରି ଆଶ୍ଚର୍ଯ୍ୟ ହୁଅନ୍ତି ଯେ ଏତେ ଅଗାଧ ପାଣ୍ଡିତ୍ୟ ଥାଇ ମଧ୍ୟ ଏବଂ ଏତେ ବୁଦ୍ଧି ଥାଇ ମଧ୍ୟ ନିଜର କୌଣସି ମତ ନିର୍ଭୁଲ ବୋଲି ସେ କେବେହେଁ ଗର୍ବ କରନ୍ତିନାହିଁ । ତାଙ୍କର ତର୍କ କରିବାର ପନ୍ଥା ଅତି ସୁନ୍ଦର । ସମସ୍ୟା ଯେତେ ଗୁରୁତର ହେଉ ନା କାହିଁକି, ବିଚାର୍ଯ୍ୟ ବିଷୟ ଯେତେ ଜଟିଳ ହେଉ ନା କାହିଁକି, ନିରୁଦ୍‌ବେଗ ଓ ଧୀର ସ୍ଥିର ଭାବରେ ସେ ସମସ୍ତଙ୍କର ମତ ଶୁଣି ନିଜର ଅନୁଭୂତି ଓ ଜ୍ଞାନ ଦ୍ୱାରା ସମସ୍ତ ଅଂଶର ଆଲୋଚନା କରି ସେ ସିଦ୍ଧାନ୍ତ ଆଡ଼କୁ ଧୀରେ ଧୀରେ ଯେତେବେଳେ ଅଗ୍ରସର ହୁଅନ୍ତି, ତାହା ସତେ ରୋମାଞ୍ଚ ଆଣେ । ସେଥିରେ ଏକୁହିଁ ବୋଧ ହୁଏ କୁହାହୋଇଛି, 'ସମତ୍ୱଂ ଯୋଗ ଉଚ୍ୟତେ' । ସେ ଯେତେବେଳେ ତାଙ୍କର ନିଜସ୍ୱ ମତ ବ୍ୟକ୍ତ କରନ୍ତି, ସେତେବେଳେ ମନେହୁଏ ସତେ ଯେପରି ଅଙ୍କ କଷି ସେ ଦେଖାଇଦେଲେ ଯେ କେବଳ ସେହି ମତହିଁ ଠିକ୍ । କିନ୍ତୁ ତଥାପି କେବେହେଁ ତାହାକୁ ଅନ୍ୟ ଉପରେ ଚାପିବାକୁ ସେ ଲେଶ

ମାଧ ଚେଷ୍ଟା କରନ୍ତିନାହିଁ । ତାଙ୍କର ଅନ୍ତରଙ୍ଗ ବନ୍ଧୁମାନେ ତାଙ୍କୁ ତେଣୁ 'ସିଦ୍ଧାନ୍ତ ସନ୍ତେଶ୍ୱର' ବୋଲି ଡାକୁଥିଲେ । ନରେନ୍ଦ୍ରଙ୍କର ଚରିତ୍ରର ନିରପେକ୍ଷତା ଯେତେ ବଢ଼ୁଥିଲା, ଏ ଉପାଧି ସେତେ ନନ୍ଦିତ ଓ ଦୃଢ଼ୀଭୂତ ହେଉଥିଲା ।

କେହି କେହି କହନ୍ତି ଏ ତାଙ୍କର ଆବାଲ୍ୟ ସାଧନାର ଫଳ । ବ୍ରହ୍ମଚର୍ଯ୍ୟର ଫଳ । କାମ, କ୍ରୋଧ, ଲୋଭ ଆଦି ଛଅଟି ରିପୁ ତାଙ୍କ ନିକଟରେ ସମ୍ପୂର୍ଣ୍ଣ ପରାଜିତ ହୋଇଥିଲେ ତାଙ୍କ । ଆମେ ମନର ଆବେଗ ଅନୁସାରେ ପ୍ରଥମରୁ ସିଦ୍ଧାନ୍ତ କରି ତାଙ୍କୁ ସମର୍ଥନ କରିବାକୁ ଯୁକ୍ତି ବାଢ଼ୁ, କିନ୍ତୁ ନରେନ୍ଦ୍ର କୌଣସି ମତଦ୍ୱାରା ପ୍ରଭାବିତ ନ ହୋଇ ଅନୁସନ୍ଧାନ ଓ ଯୁକ୍ତି ଦ୍ୱାରା ଗୃହୀତ ହୁଅନ୍ତି । ତାଙ୍କର ମନର ଦୁଆର ସବୁବେଳେ ଖୋଲା ଥିବାରୁ କୌଣସି ମତ ସେଠି ଆବଦ୍ଧ ରହି ଜଟିଳତା ସୃଷ୍ଟି କରିପାରେନାହିଁ । ଅନେକେ ପୁଣି କହନ୍ତି ସେ ବାହା ହୋଇ ନାହାନ୍ତି, ପିଲାଛିଆ ନାହିଁ, ସଂସାରର ଜଞ୍ଜାଳ ନାହିଁ, ତେଣୁ ସର୍ବଦା ସେ ମୁକ୍ତ । ଏ କଥା ହୁଏତ ଠିକ୍ । ନରେନ୍ଦ୍ର ନିଜକୁ ଗଢ଼ିଥିଲେ ଯେଉଁ ଆଦର୍ଶରେ, ସେଥିରେ ବିବାହକୁ ସେ ସ୍ଥାନ ଦେଇନାହାନ୍ତି । ଖାଲି ବିବାହ କାହିଁକି କୌଣସି ନାରୀ ପ୍ରତି ଆକୃଷ୍ଟ ହେବାକୁ ସେ ଚରମ ଅଭଦ୍ରତା ମନେ କରନ୍ତି । ଏ ଆକର୍ଷଣ ଯେ ସବୁ ମୋହର ମୂଳ, ତାହା ସେ ଅନୁଭବ କରିଛନ୍ତି ତାଙ୍କର ଚୌଦ ବର୍ଷ ବୟସରୁ । ବାଲ୍ୟକାଳରୁ ତାଙ୍କର ଏକମାତ୍ର ଲକ୍ଷ୍ୟ ସବୁର ମୂଳରେ ଯେଉଁ ସତ୍ୟ ଅଛି ତାହାର ଅନୁସନ୍ଧାନ କରିବା । ତାଙ୍କ ମତରେ ସେ ଆଦର୍ଶର ଏକମାତ୍ର ଅନ୍ତରାୟ ହେଉଛି ମନର ଆବେଗ । ମନର ଆବେଗରୁ ପ୍ରେମର ଉତ୍ପତ୍ତି ହୋଇପାରେ, ତ୍ୟାଗର ଉତ୍ପତ୍ତି ହୋଇପାରେ; କିନ୍ତୁ ସତ୍ୟର ସନ୍ଧାନ ମିଳେନାହିଁ । ସେ କହନ୍ତି ଯେ ବୁଦ୍ଧ ଚୈତନ୍ୟ ଆଦି ମହାତ୍ମାମାନେ ଯେଉଁ ଜ୍ଞାନ ଦେଇ ଯାଇଅଛନ୍ତି, ତାହା ସତ୍ୟ ଜ୍ଞାନ ନୁହେଁ, କାରଣ ସେ ଜ୍ଞାନର ଉତ୍ପତ୍ତି ସେମାନଙ୍କର ମନର ଆବେଗରୁ । ତେଣୁ ସେ ଜ୍ଞାନରେ ଏକଦର୍ଶୀତା ଦେଖିବାକୁ ମିଳେ । ସେମାନଙ୍କର ଜ୍ଞାନ ତେଣୁ ଆବେଗମୟ ।

ସମସ୍ତ ଆବେଗ ସେ ଦମନ କରି ସତ୍ୟର ଅନୁସନ୍ଧାନ କରି ବୁଲୁଛନ୍ତି । ଏହି ଅନୁସନ୍ଧାନ ପାଇଁ କେବଳ ସେ ବହୁ ଶାସ୍ତ୍ର ପଢ଼ିଛନ୍ତି, ନିଜର ଜ୍ଞାନ ପାଇଁ ନୁହେଁ ବା ସେ ଜ୍ଞାନରେ ଦେବ ଅନୁଭବ କରିବା ପାଇଁ ନୁହେଁ । ତାଙ୍କର ଏକମାତ୍ର ଆବେଗ, ଯଦି ଏହାକୁ ଆବେଗ କୁହାଯାଏ, ସତ୍ୟ ଆବିଷ୍କାର

କରିବା । ବୟସ ତାଙ୍କର ଚାଳିଶ ବର୍ଷରୁ ଊର୍ଦ୍ଧ୍ୱ ହେଲାଣି; କିନ୍ତୁ ଏ ଆଦର୍ଶକୁ ନେଇକରି ହେଲେ ଚଳି ନାହାନ୍ତି । ଏ ଆଦର୍ଶରେ ତାଙ୍କର ଇଚ୍ଛା ଆବେଗ କୁହନ୍ତି ଭଗବାନଙ୍କ ସ୍ଥାନ ମଧ୍ୟ ନାହିଁ । ସେ ଭଗବାନଙ୍କର ଅସ୍ତିତ୍ୱ ବିଷୟରେ ସିଦ୍ଧାନ୍ତରେ ନ ପହଞ୍ଚିବା ପର୍ଯ୍ୟନ୍ତ ନାସ୍ତିକ ।

ସେଦିନ ସେ ତାଙ୍କର ଅଧ୍ୟାସାମ୍ଭୂପତ୍ନୀ ସାନ୍ଧ୍ୟ ଭ୍ରମଣରେ ଯାଉଁ ଯାଉଁ ମନେ ମନେ ତର୍କ କରି ଗୁଲିଛନ୍ତି—ସତ୍ୟ ସହିତ ମାନବ ସମାଜର ସମ୍ବନ୍ଧ କ'ଣ ? ସତ୍ୟ ନିରୂପଣ କରିବା ସମସ୍ତଙ୍କର କାମ୍ୟ ହେବା ଉଚିତ କି ନା ? ହଁ, ମାନିଲି ଉଚିତ । ଅଚ୍ଛା ତେବେ ପନ୍ଥା କଣ ? ମାନି ନିଆଯାଉ ମୋର ପନ୍ଥା ହିଁ ଠିକ୍ । ତେବେ ମାନବ ସମାଜର କଅଣ ଦଶା ହେବ ଯଦି ସମସ୍ତେ ମୋର ଆଦର୍ଶକୁ ଅନୁସରଣ କରନ୍ତି ? ସତ୍ୟ ତା ହେଲେ କଅଣ ମନୁଷ୍ୟ ସୃଷ୍ଟିକୁ ପୃଥିବୀରୁ ଲୋପ କରିଦେବ ? ଯଦି ବା ସତ୍ୟର ରୂପ ନିରୂପଣ ନ କରିବା ପର୍ଯ୍ୟନ୍ତ ମନୁଷ୍ୟ ବଞ୍ଚି ରହିବା ପାଇଁ ବିବାହ କରେ, ତେବେ ଆବେଗହୀନ ଜୀବନର ସ୍ଥାନ କେଉଁଠି ଅଛି କି ? ନିଶ୍ଚୟ ନାହିଁ; କାରଣ ପୁରୁଷ ଓ ନାରୀର ମିଳନର ମୂଳରେ ତ ଅଛି ଆବେଗ । ଆବେଗରହିତ ସଂସର୍ଗ ତ ଛଳନା । ଅତଏବ ଏଥିରୁ ଏହାହିଁ ପ୍ରତିପାଦିତ ହୁଏ ଯେ ସୃଷ୍ଟିର ମୂଳରେ ଅଛି କେବଳ ଆବେଗ, ବେଦନା, ଯାତନା । ଏହି ଆବେଗ, ବେଦନା, ଯାତନାକୁ ଏଡ଼ାଇ ମନୁଷ୍ୟ ଯେଉଁ ଜ୍ଞାନ ଲାଭକରେ ତା ସହିତ ଆବେଗ, ବେଦନା ଓ ଯାତନାରୁ ଯେଉଁ ଜ୍ଞାନ ଜନ୍ମେ ତାର ସମ୍ବନ୍ଧ କଅଣ ? କେଉଁଟି କାମ୍ୟ ? ଧରି ନିଆଯାଉ ଯେ ସୃଷ୍ଟିର ଉଦ୍ଦେଶ୍ୟ ଯେତେବେଳେ ଆବେଗ, ବେଦନା, ଯାତନା ଦେବା, ସେତେବେଳେ ସେଥିରୁହିଁ ଯେଉଁ ଜ୍ଞାନ ଜନ୍ମେ ତାହାହିଁ ଏକମାତ୍ର ସତ୍ୟ; କିନ୍ତୁ ତେବେ ସେଥିରୁ ଏହାହିଁ ପ୍ରତିପାଦିତ ହୁଏ ନାହିଁକି ମନୁଷ୍ୟ ଏହି ଆବେଗ, ବେଦନା, ଯାତନା ଆଦିରୁ ଉପରକୁ ଚେଷ୍ଟାକରିବା ଅନୁଚିତ । ତା ଯଦି ହୁଏ, ତେବେ ଏକ ବିଷବୃକ୍ଷ ସୃଷ୍ଟିହେଲା !!

ତାଙ୍କର ଚିନ୍ତାଧାରା ବାଧା ପାଇଲା । ତାଙ୍କର ଜଣେ ବନ୍ଧୁଙ୍କର ପୁତ୍ର ତାଙ୍କର ସ୍ତ୍ରୀ ସହିତ ବୁଲି ବୁଲି ଜଗନ୍ନାଥଙ୍କୁ ଦେଖି ସଭକ୍ତି ପ୍ରଣାମକଲେ । ଅନ୍ୟମନସ୍କ ଭାବରେ ପ୍ରତି ନମସ୍କାର କରି ଜଗନ୍ନାଥ ଅପଲକ ଦୃଷ୍ଟିରେ ବନ୍ଧୁ ପୁତ୍ରଙ୍କ ସ୍ତ୍ରୀ ଆଡ଼େ ଅନାଇ ଭାବିଲେ, ଏହି ସୁନ୍ଦର, କୋମଳ, ଊର୍ମିମୟ ଶରୀର ଏ

କଅଣ ଜାଣ୍ୟ ନୁହିଁ ? ଉତ୍ତର ପାଇବା ପୂର୍ବରୁ ଅଜ୍ଞାତରେ ତାଙ୍କର ହାତ ଅଚେତନେ ଯାଇ ସ୍ପର୍ଶ କଲା ବନ୍ଧୁ ଯୁବକଙ୍କର ସ୍ତ୍ରୀଙ୍କର ଶରୀର । ହଠାତ୍ ସେ ସେଠାରେ ବିଦ୍ୟୁତର ଅନୁଭବ କରି ଚମକି ପଡ଼ିଲେ । ନିଜର ଅଜ୍ଞାନକୃତ କର୍ମକୁ ଦେଖି ହଠାତ୍ ତାଙ୍କର ମୁହଁ କଳାକାଠ ପଡ଼ିଗଲା । ସେଇ ସ୍ତ୍ରୀଲୋକଟିର ସ୍ପୃଷ୍ଟ ଅଙ୍ଗୁଳିକୁ ସେ ତାଙ୍କର ସମସ୍ତ ଶକ୍ତି ପ୍ରୟୋଗ କରି ଦବାଇ ଦେଲେ ଅନେକ କ୍ଷଣ । ଏମାନେ କିଛି ବୁଝି ନପାରି କେବଳ ଅବାକ୍ ହୋଇ ଚାହିଁ ରହିଲେ । ଟ୍ରେନ୍ କ୍ଷିପ୍ର ଗତିରେ ଆଗେଇ ଚାଲିଛନ୍ତି । ସେଇ ସ୍ତ୍ରୀଲୋକଟି କିନ୍ତୁ ତାଙ୍କର ଶରୀରରେ ଯେପରି ଲାଗି ରହିଲା । ସମସ୍ତ ଚେଷ୍ଟାସତ୍ତ୍ୱେ ସେଇଟିକୁ ସେ ଶରୀରରୁ ଛାଡ଼ିଦେଇ ପାରିଲେ ନାହିଁ ।

କିଛି ବାଟ ଯାଇ ସେ ଛିଡ଼ାହେଲେ । ଆଉ ଥରେ ସ୍ପର୍ଶ କରିବାକୁ ତାଙ୍କର ପ୍ରବଳ ଇଚ୍ଛା ସେ ଦମନ କରିପାରିଲେ ନାହିଁ । କିଏ ଯେପରି ଅଦୃଶ୍ୟ ଶକ୍ତିରେ ତାଙ୍କୁ ଧକ୍କା ମାରୁ ମାରୁ ଫେରାଇ ଆଣିଲା ।

ସେ ପାଟି କରି ଡାକିଲେ, ଧୀରେନ୍ ଶୁଣ, ଶୁଣ ! ଏପରି ବ୍ୟସ୍ତ ହୋଇ ପାଟି କରି ଡାକିବାର କାରଣ ବୁଝି ନ ପାରି ଧୀରେନ୍ ବାବୁ ଓ ତାଙ୍କ ସ୍ତ୍ରୀ ସ୍ତମ୍ଭିତ ହୋଇ ଛିଡ଼ାହେଲେ ।

ଜିତେନ୍ଦ୍ର ଫେରି କଅଣ କହିବେ ଭାବି ନ ପାରି ପଚାରିଲେ, ହଁ ଧୀରେନ୍, ତୁମେ ବିବାହ ହୋଇଛ ?

ଧୀରେନ୍ ବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ, ଆଜ୍ଞା, ଆପଣ ତ ମୋ ବାହାଘରକୁ ଯାଇଥିଲେ ! ଏ ତ ମୋ ସ୍ତ୍ରୀ !

—ଆରେ ହଁ, ହଁ, ଆଜିକାଲି ସବୁ ଭୁଲିଯାଉଛି । ବୁଢ଼ା ହେଲି, ଆଉ କଅଣ ? ଏ ତୁମ ସ୍ତ୍ରୀ ।

—ହଁ ସୁମିତ୍ରା, ନମସ୍କାର କରନା !

ସୁମିତ୍ରା ଦେବୀ ନମସ୍କାର କରି ନୀରବରେ ଛିଡ଼ା ହେଲେ ।

ଝଡ଼ ଅକ୍ତ ଉଠିଲା ! କିଛିକ୍ଷଣ ପରେ ସେ ଗାଇଲେ 'ମରମ, ମରମ, ସଖି ନିଷ୍ଠୁର ପରାଣ...' ସେମାନଙ୍କର ସମସ୍ତ ବେଦନା ସେ ସେଥିରେ ବୁଝିପାରିଲେ । ନିଜକୁ ସେ ସାମ୍ନାହିଁ ମନେକଲେ ! ହରିନାମ ଶବ୍ଦରେ ସ୍ଥା ।

ସେଦିନ ସମସ୍ତ ଜୀବନ ପରେ ଏ ସ୍ମୃତି ଉଦ୍ଭାସିତ ହେଲା । ଜଗନ୍ନାଥ କାନ୍ଦିଲେ । ମନ ତାଙ୍କର ଅନୁତାପ ଓ ଘୃଣାରେ ଭରି ଉଠିଲା; କିନ୍ତୁ ତାହା ମୁହୂର୍ତ୍ତକ ପାଇଁ । ପର ମୁହୂର୍ତ୍ତରେ ସେଇ କ୍ରୋଧ, ସେଇ ଆବେଗ ତାଙ୍କ ହୃଦୟରେ ଭକ୍ତି ଉଠିଥିଲା । ଆଖିରୁ ସେହିପରି ଅଶ୍ରୁ ଅବିରଳ ଝରିବାକୁ ଲାଗିଲା । କିଛିକ୍ଷଣ ପରେ ସେ ପୁଣି ବେହୋସ ହୋଇଗଲେ । ଏଥିରେ ସେ ଅଦ୍ଭୁତ ବେଦନା ମିଶ୍ରିତ ଆନନ୍ଦ ପାଇବାକୁ ଲାଗିଲେ । ତାଙ୍କର ମନ ସବୁବେଳେ ସେଇ ମାଦକତା ଅନୁଭବ କରିବାକୁ ଚାହିଁଲା । କ୍ରମେ କ୍ରମେ ଜଗନ୍ନାଥଙ୍କ ହରିପ୍ରେମ ବୃଦ୍ଧିପାଇ ଅପ୍ରକୃତିସ୍ଥ ହେଲା ।

ଜଗନ୍ନାଥ ସବୁ ଛାଡ଼ି ଦେଇ ମଠରେ ରହିଲେ ମଠାଧୀଶରୂପେ । ତାଙ୍କର ନାମ ପରିବର୍ତ୍ତନ କରି ସେ ରଖିଲେ ନିତ୍ୟାନନ୍ଦ ସ୍ୱାମୀ । ତାଙ୍କର ଅଦ୍ଭୁତ ହରିପ୍ରେମ ଦେଖି ବହୁ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କର ଶିଷ୍ୟ ହେଲେ । ମାଦକତା ଟିକିଏ କଟିଗଲେ ତାଙ୍କର ମନ ଫେରି ଆସୁଥିଲା ତାଙ୍କର ପୂର୍ବାବସ୍ଥାକୁ । ସେତେବେଳେ ସେ ଖାଲି ଅନୁତାପରେ ଦଗ୍ଧ ହେଉଥିଲେ । ଏହି ଅବସ୍ଥାକୁ ଏଡ଼ାଇବା ପାଇଁ ସେ ନିଜକୁ ସବୁବେଳେ କୀର୍ତ୍ତନ ଓ ହରିଗୁଣ କୀର୍ତ୍ତନରେ ବୁଡ଼ାଇ ରଖିଲେ ।

ଲୋକେ ଦଳ ଦଳ ହୋଇ ଦେଖିବାକୁ ଧାଇଁଲେ । ହରିନାମ କୀର୍ତ୍ତନ କରୁ କରୁ ନିତ୍ୟାନନ୍ଦ କିପରି ବାରମ୍ବାର ମୂର୍ଚ୍ଛା ହେଉଛନ୍ତି ଏ ଦୃଶ୍ୟ ଦେଖି ଲୋକେ ମଧ୍ୟ କାନ୍ଦ ପକାଉଥିଲେ । ସମସ୍ତେ ସେପରି ଏ ବେଦନାର ମାଦକତା ପାନ କରିବାକୁ ଉତ୍ସୁକ ।

ଆଜିକାଲି ନିତ୍ୟାନନ୍ଦ ପ୍ରାୟ ହରି ପ୍ରେମରେ ବେହୋସ ହୋଇ ପଡ଼ିଥାଆନ୍ତି । ତାଙ୍କର ଶିଷ୍ୟ ଓ ଶିଷ୍ୟା ଅନେକ । ସେମାନେ ଆଜିକାଲି ତାଙ୍କୁ ଜୀବନ୍ତ ଦେବତା ରୂପେ ପୂଜା ଆରମ୍ଭ କରନ୍ତି ।

ବହୁଦିନ ପରେ ଧ୍ୟାନ ସେ ସିଦ୍ଧ ଆସନରେ ବସିଛନ୍ତି । ଶିଷ୍ୟ ଶିଷ୍ୟା-ମାନେ କେତେ ଗୁଞ୍ଜର କରୁଛନ୍ତି । କେହି ମର୍ଦ୍ଦନ କରୁଛନ୍ତି । କେହି ତାଙ୍କୁ ଫୁଲ ଓ ଚନ୍ଦନରେ ସଜାଇ ଦେଉଛନ୍ତି । ଶରୀର ଅତି ଉତ୍ତେଜିତ ଶାନ୍ତ । ସେ ଭାବୁଛନ୍ତି, ଏ ମୋର ମୃତ୍ୟୁ ଉତ୍ସବ ! ମୁଁ ଯେଉଁ ଧର୍ମ ଖୋଜୁଥିଲି, ତାହା କେଉଁଠି ଅଛି ?

ପୂଜା ସମୟ ହେଲା । ହୁଳହୁଳି, ଶଙ୍ଖନାଦ ବାଜି ଉଠିଲା । ପ୍ରଧାନ ଶିଷ୍ୟ ଡାକିଲେ, ମୁଁ ଆରତି କରେ ନିତ୍ୟ ନବୀନ ସ୍ୱାମୀ···ଜୟନାଦ । ସାଧୁ ରାଜନ ସିଂହାସନରୁ ଉଠି ନାଚିବାକୁ ଲାଗିଲେ ଓ ପ୍ରେମରେ ମତୁଆଲା ହୋଇ ଉଦ୍‌ଭ୍ରାନ୍ତ ଭଳି ନାଚିବାକୁ ଲାଗିଲେ । କିଛି ସମୟ ପରେ ସେ ଯାଇ ଯାଇ ଜଣଙ୍କୁ ପେଟେରି ଦୃଢ଼ଭାବରେ ଆଲିଙ୍ଗନ କରି ଉନ୍ମତ୍ତ ଚୁମ୍ବନ ଦେବାକୁ ଲାଗିଲେ । ତା ପରେ ସେ ମୂର୍ଚ୍ଛା ଗଲେ ।

ଶିଷ୍ୟମାନେ ଚିତ୍କାର କରି ଉଠିଲେ, ହରିବୋଲ, ହରି···ହରି··· ବୋଲି, ହରି···ଇ···ଇ···ଇ ବୋଲ ।



# ମାନବ ଓ ଦାନବ

ଗଭୀର ରାତିର ନିସ୍ତବ୍ଧତା ଅନ୍ଧକାର ବିଦୀର୍ଣ୍ଣ କରି ଶୁଭିଲା ଭୟଙ୍କର ଦାନବୀୟ ଅଟ୍ଟହାସ୍ୟ ହିଃ—ହିଃ—ହାଃ—ହାଃ—ହେଃ—ହେଃ—ହୋଃ, ଲହରିକି ଲହରିକି ଭୂଧରକୁ ଛୁଇଁ ସେ ହାସ ପର୍ବତ ବନାନୀର ପ୍ରାନ୍ତ ମରିଚୀକୁ ପ୍ରକମ୍ପିତ କରିବାକୁ ଲାଗିଲା।

ମୁଁ ଓ ଭ୍ରମର ମହାନ୍ତି ଉଭୟ ବନ୍ଧୁକ ଧରି ଟର୍ଚ୍ଚ ଅଲୁଅ ଜାଳି ଜାଳି ଧୀରେ ଧୀରେ ଅଗ୍ରସର ହେଉଥିଲୁ ନରଖାଦକ ବାଘର ଅନୁସନ୍ଧାନରେ। ସେ ଅଟ୍ଟହାସ୍ୟ ଆମକୁ ଧକ୍କା ମାରି ଅଟକାଇ ଦେଲା। ଭୟରେ ଆମେ ଦୁହେଁ ପାଟକୁ ଟାଣ ଲାଗି ଛିଡ଼ା ହୋଇ ରହିଲୁ। ଅଲୁଅ ଜଳାଇ ରଖିବାର ସାହସ ହେଲା ନାହିଁ।

ଅଟ୍ଟହାସ୍ୟ ପର୍ବତମାଳାର କନ୍ଦରେ କନ୍ଦରେ ପ୍ରତିଧ୍ୱନିତ ହୋଇ ମିଳାଇଗଲା। ସମସ୍ତ କୋଳାହଳର ଆଦି ଓ ଅନ୍ତ ସେଇ ମହାମରିଚୀରେ। ପରିଅନ୍ତ ପୁଣି ନିସ୍ତବ୍ଧ, ସ୍ଥିର। ଭୟାବହ ସେ ନିସ୍ତବ୍ଧତା।

ହଠାତ୍ ପୁଣି ଗୋଟାଏ କରୁଣ ଆର୍ତ୍ତନାଦ, ହୃଦୟବିଦାରକ କରୁଣ ଆର୍ତ୍ତନାଦ। ଆମେ ଦୁହେଁ ଭାରତବିଖ୍ୟାତ ଶିକାରୀ। ବର୍ଷକରୁ ଆଠମାସ ଆମେ ଥାଉଁ ଜଙ୍ଗଲରେ। ଭାରତର ପ୍ରତ୍ୟେକ ଜଙ୍ଗଲ ସହିତ, ପ୍ରତ୍ୟେକ ପଶୁଜାତି ସହିତ ଆମେ ଘନିଷ୍ଠ ଭାବରେ ପରିଚିତ; କିନ୍ତୁ ଏପରି ଅଦ୍ଭୁତ ଆର୍ତ୍ତନାଦ ଆମେ ଶୁଣି ନ ଥିଲୁ। ପୁତ୍ର-ବିୟୋଗବିଧୁର ମାତାର କ୍ରନ୍ଦନ ସହିତ ଆଗ୍ନେୟଗିରିର ଗର୍ଜନ ମିଶାଇଲେ ସେ ଆର୍ତ୍ତନାଦର ତୁଳନା ହୋଇପାରେ।

ଆର୍ତ୍ତନାଦ କରି ପୁଣି କେନ୍ଦ୍ର ବଡ଼ୁଆ ବଦ ମାରଦେଲା । ଏହାପରେ ଟିକେ ନୀରବ ଆମ ଦୁହିଙ୍କ ଅତି ନିକଟ ଦେଇ ଦୌଡ଼ି ପଳାଇଗଲେ । ତାପରେ ଟିକେ ପରେ ହାତୀ ଓ ତା' ପଛରେ ପ୍ରାୟ ନ'ଟ ବାଘ ମଧ୍ୟ ନେଉଁ ଛୋଟିଲେ । ଆମେ ନିକଟସ୍ଥ ଗୋଟାଏ ଗଛ ଉପରକୁ ଉଠିଗଲୁ । ଅଜ୍ଞାତ ଭୟରେ ଆମର ଦେହ ଥରୁଥାଏ । ମୁଁ ଆଲୁଅ ଜଳାଇବାକୁ ଯାଉଥିଲି, ପ୍ରବୀର ବାଧା ଦେଇ କହିଲା ଚୁପ୍ କରି ବସି ରହିବାକୁ, ପ୍ରଚଣ୍ଡ ଶୀତରେ ମଧ୍ୟ ଆମ ଦେହରୁ ଝାଳ ବୋହୁଥାଏ ।

କେତେକ୍ଷଣ ଏପରି ବସିଥିଲୁ ଜାଣି ନାହିଁ । ହଠାତ୍ ଟିକେ ଦେଖିଲୁ ଅଦୂରରେ ଗୋଟାଏ ବୁଦା ଭିତରେ ଦୁଇଟି ନିଆଁ ହୁଲା । ପ୍ରତ୍ୟେକ ହୁଲା ଗୋଟିଏ ସାନ ଫୁଟବଲ ଆକାରର । ପରେ ଦୁଇଥର ନିଆଁ ପିଣ୍ଡୁଳା ଦୁଇଟି ଏପାଖ ସେପାଖ ହୋଇ ଆମ ଆଡ଼କୁ ମୁହାଁଇ ସ୍ଥିର ହୋଇ ରହିଲା ।

ସେ ନିଆଁ ପିଣ୍ଡୁଳା ଦେଖି ଆମ ଦୁହିଙ୍କର ଦେହରୁ ପାଣି ବୋହିବାକୁ ଲାଗିଲା । ଆମେ ଦୁହେଁ ଥରିବାକୁ ଲାଗିଲୁ । ଯେଉଁ ଡାଳରେ ଆମେ ଦୁହେଁ ବସିଥିଲୁ ତାହା ଭୂମିଠାରୁ ଅବଶ୍ୟ ୫.୦ ହାତ ଉଚ୍ଚରେ ହେବ; କିନ୍ତୁ ବେଶି ମୋଟ ନ ଥିବାରୁ ତାହା ଉପରେ ଆମର ସ୍ଥିତି ଦୃଢ଼ ନ ଥିଲା । ଆମେ ଅନ୍ୟ ଗୋଟିଏ ଗୋଟିଏ ଡାଳ ଦୃଢ଼ଭାବରେ ଧରି ବସିଥିଲୁ; କିନ୍ତୁ ସେ ଅଦ୍ଭୁତ ନିଆଁ ପିଣ୍ଡୁଳା ଦେଖି ଆମେ ଏତେ ଥରିବାକୁ ଲାଗିଲୁ । ସେ ପ୍ରତ୍ୟେକ ମୁହୂର୍ତ୍ତରେ ପଡ଼ିଯିବାର ଭୟ ହେଉଥାଏ, ଅନ୍ୟ ଡାଳ ଉପରେ ଆମର ବାହୁବେଷ୍ଟନୀ ଶିଥିଳ ହୋଇ ଆସୁଥାଏ । ପ୍ରବଳ ଭୟହେତୁ ଆମର ଚିନ୍ତାଶକ୍ତି ହରାଇ ବସିଥାଉଁ ।

ଏହି ସମୟରେ ନିଆଁ ପିଣ୍ଡୁଳା ଦୁଇଟି ଥରେ ଅଳ୍ପ ସମୟ ପାଇଁ ଲିଭିଯାଇ ପୁଣି ଜଳି ଉଠିଲା ଏଥର ପୂର୍ବଠାରୁ ଅଧିକ ଉଜ୍ଜ୍ୱଳ ଭାବରେ । ଏଥର ଆମେ ପାଗଳ ହୋଇଗଲୁ । ପ୍ରବୀର ଆଉ ସମ୍ଭାଳି ନ ପାରି ଅନ୍ଧାଧୁନ୍ଧିଆ ଗୁଳି ଫୁଟାଇ ଦେଲା । ନିଆଁ ପିଣ୍ଡୁଳା ଦୁଇଟି ପୁଣି ଲିଭିଗଲା । ଯେଉଁ ବୁଦାଟି ଭିତରୁ ସେ ନିଆଁ ଦିଶୁଥିଲା ସେ ବୁଦାଟି ଖସ ଖସ ଶବ୍ଦରେ ଥରି ଉଠିଲା ଏବଂ ତା'ପରେ କିଏ ଯେପରି ଅତି ଦ୍ରୁତ ପଦକ୍ଷେପରେ ଚାଲିଗଲା ।

ନିଦ୍ରୁ ଉଠି ପରେ ଆମେ ଟିକିଏ ଦୃଷ୍ଟତା ଅନୁଭବ କଲୁ । ପକେଟରୁ ଫ୍ଲାନେଲ ବାହାର କରି ମୁହଁ ହାତ ପୋଛି ସାରୁ ଆମେ ବଜାରରେ ବୁଲି ଫେରିଲୁ । ପ୍ରଥମେ ମୋ କାନରେ ବାଜିଲା, ରମା; ଏତିକିବେଳେ ହୃଦ୍ ଢାଳିଲା ନୀ ତ ଏଠୁ ମଇଳିଏ ହିଉରେ···

ପ୍ରାଚୀରର କଥା ଶେଷ ହୋଇ ନାହିଁ, ଚୁଲି ଦେଇ ଉଠାଇ, ହୋଃ—ହୋଃ—ହୋଃ—ହୋଃ । ଏଥର ଅତି ନିକଟରେ, ମନେ ହେଲା ଯେମିତି ବ୍ରହ୍ମା-ଣ୍ଡଟାରୁ କ ଫିଙ୍ଗି ପ୍ରତିଷ୍ଠି ଯେ ଶବ୍ଦ । ମନେ ହେଲା ଯେମିତି କାନଦେହଟା ଫାଟିଗଲା । ସେ ଶବ୍ଦର ପ୍ରତ୍ୟେକ ତରଙ୍ଗ ଆମକୁ ଧକ୍କା ଦେଉଥିବା ପରି ମନେ ହେଉଥାଏ । ଛାତିକୁ ଦୁଇହାତରେ ଜାପୋଟି ଧରି ବସୁ ବସୁ ଆମ ପୁରୁଷଙ୍କର ବଣ୍ଟା ତଳେ ଚଢ଼ିଲା ।

ଓଃ ସେ କି ଭ୍ରାନ୍ତି !! ଆମର ସେତେବେଳେ ଟିକିଏ ହେଲେ ବି ମାନସିକ ବା ଶାରୀରିକ ଶକ୍ତି ନ ଥାଏ । ଯାହା କରୁଥାଉ ବା ଶୁଣୁଥାଉ ବା ଦେଖୁଥାଉ ତାହା କେବଳ ପ୍ରବୃତ୍ତି ହେତୁରୁ । ଏକଦମ୍ ପାଗଳ ହୋଇ ନ ଥାଉ, ଯାହା ଦେଖୁଥାଉ ବା ଶୁଣୁଥାଉ ତାକୁ ବିଚାର କରିବାର କ୍ଷୀଣ ଶକ୍ତି ଥାଏ । ଆଉ ସେଇ ବିଚାରଶକ୍ତି ହୋଇଥାଏ ଅତି ପୀଡ଼ାଦାୟକ । ଏକଦମ ପାଗଳ ହୋଇ ଯାଇଥିଲେ ବରଞ୍ଚ ଢେର ଭଲ ହୋଇଥାଆନ୍ତା ସେତେବେଳେ !! ଏପରି ଦୁର୍ବିସହ ଭାବରେ ଭୟାବହ ସେ ପରିସ୍ଥିତି ।

ଭଗବାନ୍ ବୋଲି ଯଦି କେହି ସତରେ ଥାଆନ୍ତି ( ଯେଉଁମାନେ ଅଛନ୍ତି ବୋଲି କହୁଚନ୍ତି ସେମାନଙ୍କ କଥା ଯଦି ସତ ହୁଏ, ) ଏବଂ ଘାସପତରଟିଏ ହଲିବାଠାରୁ ଯାବତୀୟ ଘଟଣାର ନିୟନ୍ତା ଯଦି ସେ ହୁଅନ୍ତି, ତେବେ ତାଙ୍କ ବିଷୟରେ ମୋର କିଛି ଖେଦୋକ୍ତି ଏଠି କହି ରଖେ । ଆପଣ ଯଦି କେବଳ ନିଛକ ଘଟଣାଟି ଶୁଣିବାକୁ ବ୍ୟଗ୍ର ହେଉଥାଆନ୍ତି, ତେବେ ଏତକ ବାଦ୍ ଦେଇ ପାରନ୍ତି; କିନ୍ତୁ ଘଟଣାବଳୀରୁ ଯଦି କିଛି ତତ୍ତ୍ୱ ନିରୂପଣ କରିବାକୁ ବ୍ୟଗ୍ରତା ଥାଏ, ତେବେ ମୋ କଥା ବିଚାର କରି ପରେ ଦେଖିବେ । ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଚୈତନ୍ୟ, ପରମହଂସ, ବିବେକାନନ୍ଦ, ରବୀନ୍ଦ୍ରନାଥ, ଗାନ୍ଧିଜୀ ଆଦି ମହାବିପ୍ଳବୀ-ମାନେ ( ସେମାନେ ହିଁ କେବଳ ବିପ୍ଳବୀ —ରାଜନୈତିକ, ଯୁଦ୍ଧବିଶାରଦ ବା ଶିଳ୍ପପତି ନୁହନ୍ତି—କାରଣ ସେମାନେ ମଣିଷ ମନକୁ ଏକ ନୂଆ ବାଟରେ ପକାଇ

ପାରିଛନ୍ତି ) କହନ୍ତି ଭଗବାନଙ୍କ ଉପଲବ୍ଧି ଜୀବନର ଚରମ ଉଦ୍ଦେଶ୍ୟ: କାରଣ କେବଳ ସେଇଥିରେ ସବୁଠାରୁ ଉତ୍କୃଷ୍ଟ, କିନ୍ତୁ ମୁଁ କହେ: [illegible] ଏହା ସତ୍ୟ ବୋଲି ମନେ ହୁଏ । ଭଗବାନଙ୍କର [illegible] ନାହିଁ । ଅଥଚ; କୁରୁକ୍ଷେତ୍ର ଭଳି ମହାଯୁଦ୍ଧବେଳେ କଠିନ [illegible] ସେ ବକ୍ତୃତା ଯିଏ ଦେଇଥିଲେ, ତାଙ୍କ ପକ୍ଷରେ ଏହା ସମ୍ଭବ ନୁହେଁ ।

ଆମେ ଯେତେବେଳେ ଏପରି ଭୟାନକ ପରିସ୍ଥିତିର ସମ୍ମୁଖୀନ ହେଉ, ସେତେବେଳେ ଆଉ ଏକ ବିପଦ ଭଗବାନଙ୍କ [illegible] । ଆମେ ଯେଉଁ ଓଳକୁ ଆଶ୍ରୟ କରି ବସିଥାଉ [illegible], [illegible] ଆସିଲେ, ଦୁଇଟି କୁକୁଡ଼ାଛୁଆ ପୋକଭଳି କଅଣ ଅଚେତ [illegible] ! ଦୁହିଁଙ୍କ ସଂଘର୍ଷରେ, ମୁଁ ଆଗରୁ କହିଛି କ୍ଷୀଣ ସ୍ୱରରେ [illegible] ଚିନ୍ତାଶକ୍ତି, ତଥାପି ଥାଏ । ମନେ ମନେ ବିଚାର କରି ଦେଖିଲୁ ସେ [illegible] ଦୁଇଟି କୁକୁଡ଼ାଛୁଆ ପୋକ କଦାପି ହୋଇ ନ ପାରେ; କାରଣ [illegible] ଦୁଇଙ୍କ ଏକା ସମାନ ରହିଛି । ତେବେ ନିଶ୍ଚୟ କେଉଁଟି [illegible] ! ସେତେବେଳକାର ପରିସ୍ଥିତିରେ ସାମାନ୍ୟ ଗୋଟିଏ ପିମ୍ପୁଡ଼ି ଚଢ଼ିଗଲେ ମହାବିପଦ ବୋଲି ମନେ ହେଉଥାଏ । ସେଥିରେ ପୁଣି ଏ ଏକ ଜୀବ ଯାହାର କ୍ଷୁଦ୍ର ଆଖି ଯୋଡ଼ିକ ଜାଜ୍ୱଲ୍ୟମାନ !!

ପ୍ରଭାତ ଭୟରେ ଚିତ୍କାର କରି କହିଲା; ମୁଁ ଜାଣେ, ଏ ଟାରାଣ୍ଟୁଲା, ଟାରାଣ୍ଟୁଲା ! ହେ ଭଗବାନ୍ !! ପ୍ରଭାତ ପ୍ରାଣୀବିଜ୍ଞାନରେ ଉଚ୍ଚର ଉପାଧିଧାରୀ । ତାହାର ଜ୍ଞାନୋଦୟରେ ସେ ନିଜେ କେବଳ ଭୟ ପାଇଲା ନାହିଁ, ମୋତେ ବି ଭୟାତୁର କରିଦେଲା । ଟାରାଣ୍ଟୁଲା କଅଣ ମୁଁ ଜାଣିଥିଲେ ବି ପଚାରିଲି, ସେ କି ଜୀବ, କଅଣ ମାରାତ୍ମକ ସେ ? ଜ୍ଞାନ ଆହରଣ କରିବା ପାଇଁ ମୋର ଏ ପ୍ରଶ୍ନ ନ ଥିଲା; ଏ କଥା ପ୍ରଭାତର ବୁଝିବା ଉଚିତ ଥିଲା । ଅଥବା, ମଣିଷ ଯେତେ ବିପଦରେ ପଡ଼ିଲେ ମଧ୍ୟ ଅନ୍ୟଠାରୁ ସେ ଧନ-ମାନ-ଜ୍ଞାନରେ ବଡ଼, ଏହା ପ୍ରମାଣ କରିବାର ସୁଯୋଗ ପାଇଲେ ତାହାର ପୂର୍ଣ୍ଣ ସଦୁପଯୋଗ କରେ ।

ପ୍ରଭାତ ମୋତେ ବୁଝାଇବାକୁ ଲାଗିଲା; ଟାରାଣ୍ଟୁଲା ଏକ ପ୍ରକାଣ୍ଡ ବଡ଼ ବିଷାକ୍ତ ବୁଢ଼ିଆଣୀ । ସେ କାମୁଡ଼ିଲେ ବିଷର ପ୍ରକୋପରେ ମଣିଷ ନାଚି ନାଚି ମରେ ।

ବନ୍ଧୁକ ତ ହାତରୁ ଛିଡ଼ି ଯାଇଛି, ହାତରେ ଆଉ କୌଣସି ଅସ୍ତ୍ର ନ ଥାଏ। କେବଳ କାନ୍ଧରୁ ଝୁଲୁଥାଏ ଲମ୍ବା ଟର୍ଚ୍ଚବତି। ଟାଇଗ୍ରେସ୍‌ଟି ଧୀରେ ଧୀରେ ଆଗେଇ ଆସୁଥାଏ, ତା'ର ଜ୍ୱଳନ୍ତ ଦୃଷ୍ଟି ଆମ ଉପରେ ସ୍ଥିର ରହିଛି। ତେବେ କ'ଣ ଏପରି ପରିସ୍ଥିତିରେ ଆମକୁ ମରିବାକୁ ହେବ। ଭଗବାନଙ୍କର ଏ କ'ଣ ନିଷ୍ଠୁର ପରିହାସ ନୁହେଁ? ତେବେ ମୁଁ ତାଙ୍କୁ ମଙ୍ଗଳମୟ, ଆର୍ତ୍ତତ୍ରାଣ କହିବି କାହିଁକି?

'ଆତଙ୍କନାଶନ ତୋ ନାମ,
ବାରେ ତୁ ଦୃଷ୍ଟି ଦେଉଦେନ୍ତା',

ଗଜ କୁମ୍ଭୀର ଦାଉରେ, ପଡ଼ିଥିଲାବେଳେ—ଏହା ବୋଲି ସେତେବେଳେ ସ୍ତୁତି କଲା, ସେତେବେଳେ ଭଗବାନ୍ କୁଆଡ଼େ ସୁଦର୍ଶନ ଚକ୍ର ପେଶି ତାକୁ ଆଦେଶ ଦେଲେ—"ଚକ୍ର ତୁ ଅତି ବେଗେ ଯିବୁ,
କୁମ୍ଭୀର ଗଣ୍ଡିରେ ପଡ଼ିବୁ;
ଛିଣ୍ଡିବ ଖଣ୍ଡ ଖଣ୍ଡ ହୋଇ,
ମୋ ଗଜ ଦେବୁ ମୁକୁଳାଇ।"

ଆଜି ତାହା ମଧ୍ୟ କୁଆଡ଼େ ଘଟିଥିଲା ବୋଲି ଅତିବଡ଼ ଜଗନ୍ନାଥ ଦାସ ଲେଖିଛନ୍ତି; କିନ୍ତୁ ଏ ଆତଙ୍କ-ନାଶନ, ନା ଆତଙ୍କବର୍ଦ୍ଧନ ନାମ? ହଁ, ଆପଣ କହି ପାରନ୍ତି, ଆମେ ଯାଇଥିଲୁ କ୍ରୀଡ଼ାସ୍ଥଳରେ ନିରୀହ ଜନ୍ତୁବଧ କରି ସେମାନଙ୍କର ମୃତ୍ୟୁଯନ୍ତ୍ରଣାରେ ଉଲ୍ଲସିତ ହେବାକୁ, ତେଣୁ ଆମର ଏହା ପ୍ରାପ୍ୟ। ସେ ଶିକ୍ଷା ଅନ୍ୟ ପରିସ୍ଥିତିରେ ଏବଂ ଏମିତି ବୁଝେଇ ନ ଦେଇ ସିଧାସଳଖଭାବରେ ଦେଇଥିଲେ ଅଧିକ ବୁଦ୍ଧିମତ୍ତାର ପରିଚୟ ମିଳନ୍ତା ଓ ଶିକ୍ଷା ନିଶ୍ଚିତ ଫଳପ୍ରଦ ହୁଅନ୍ତା। ଅନେକ କହନ୍ତି ପୂର୍ବଜନ୍ମର ପାପରୁ ଏ ଜନ୍ମରେ ଅନେକ କୁଷ୍ଠାଦି ନାନା ରୋଗରେ ଯନ୍ତ୍ରଣା ପାଆନ୍ତି। ସେତେ କହିଲେ ବା ମନ ମାନେ କି?

ଟାଇଗ୍ରେସ୍‌ଟି ଧୀରେ ଧୀରେ ଆଗେଇ ଆସୁଥାଏ। ଚରମ ବିଷାଦରେ କୁଆଡ଼େ ମଣିଷ ଅନନ୍ୟୋପାୟଭାବରେ ହସେ। ପ୍ରକୃତରେ ବୋଧହୁଏ ସେଇ ହସ ହସିଲି। ଆଉ ମଣିଷ ବି ବୋଧହୁଏ ସେତେବେଳେ ଦାର୍ଶନିକ ହୋଇଯାଏ; କାରଣ ମୁଁ ଭାବୁଥାଏ, ଏତେ ଶାଭସ୍ତ୍ର, ନିରାକାର, ବିଷାକ୍ତ ଜୀବର ସୃଷ୍ଟିର କି ଉଦ୍ଦେଶ୍ୟ ଥାଇ ପାରେ। ଭଗବାନ, କ'ଣ ପାଇଁ ଏସବୁ ସୃଷ୍ଟି କରୁଛନ୍ତି।

ନିଜେ ଏପରି ସ୍ୱଚ୍ଛସଜୀବ କଳ୍ପନା କରି ପାରନ୍ତି ସେ କିନ୍ତୁ ସେପରି ନ ହୋଇଥିବେ କାହିଁକି ? କିନ୍ତୁ କିଏ ଯେପରି ମୋର ମନରେ ଥାଇ ଉତ୍ତର ଦେଉଛି, ତା ପଛ କଥା, କେତେବ ମଣିଷ କଅଣ ଜଣା ନାହିଁ, କଦାକାର, ବିଶ୍ରୀ କି ? ସେଇ ମଣିଷ ଅର୍ଥ, ପଦ, ମାନ, ପ୍ରତିପତ୍ତିପାଇଁ, ଏବଂ କଣ୍ଠ ନ ପାଇଁ ମଣି, କେତେ ଷଡ଼ ହତ୍ୟା ନ କରୁଛି, କେତେ ବିଷାକ୍ତ ଯନ୍ତ୍ର ଉଦ୍ଭାବନ ନ କରୁଛି, କେତେ ଫନ୍ଦି ଉଦ୍ଭାବନ ନ କରୁଛି, ଅନ୍ୟକୁ କେତେ ନଚେଇ ନଚେଇ ନ ମାରୁଛି ? କହ ?! ଏହାର ଉତ୍ତର ଦିଅ !! କିଛି ଉତ୍ତର ଦେଇ ପାରିଲି ନାହିଁ, ଯଦ୍ୟପି ଆଜିକାଲିକାର ପରିସ୍ଥିତି ଏ ଅଭିଯୋଗ ପ୍ରମାଣ କରୁଛି । ତୁଚ୍ଛ ବଡ଼ କଥା କହି ସବୁ ସୁଖ ମାରି ନେଇ ଅନ୍ୟକୁ ପର ସ୍ୱାର୍ଥତ୍ୟାଗୀ ହେବାକୁ ଉପଦେଶ, ନ ହେଲେ ମାଡ଼ ! ! ଭାବୁ ଭାବୁ କିଏ ଅନ୍ୟମନସ୍କ ହୋଇ ପଡ଼ିଥିଲି । ହଠାତ୍ ଆଖି ପଡ଼ିଗଲା ଶାବଣ୍ଟୁଲ ଉପରେ । ଦେଖିଲି ଆମର ଅତି ନିକଟରେ ସେ ।

ଦଶମୀର ଶୁଭ ପ୍ରଭାତବେଳକୁ ଉଇଁ ସାରିଥାଏ । ପ୍ରତ୍ୟେକ ଗଛର ପତ୍ର ପରେ ଅଜସ୍ର ମୁକ୍ତାବିନ୍ଦୁ ଝୁଲୁଥାଏ । ଗୋଟାଏ କୋଇଲି ହଠାତ୍ କିଦରୁ ଛୁଟି ଏ ଦୃଶ୍ୟ ଦେଖି ଆନନ୍ଦରେ ଅଧୀର ହୋଇ ଗାଇବାକୁ ଲାଗିଲା କୁହୁ କୁହୁ କୁ-ଉ-ଉ-ହୁ । ଆଉ ଗୋଟାଏ ପକ୍ଷୀ 'ପେପୁ କାହାଁ ହେ,, ପିପୁ କାହାଁ ହେ' କହୁ କହୁ ଉଡ଼ିଗଲା, ସେଇ ଅଦେଖା ଅପରିଚିତର ଚିର ଅନ୍ୱେଷଣରେ ବୋଧହୁଏ । ଦୂରରୁ ଅତି କ୍ଷୀଣକଣ୍ଠରେ ଅଥଚ ସ୍ପଷ୍ଟ ଭାବରେ ଭାସି ଆସିଲା ଉଦାତ୍ତ ସ୍ୱରରେ ଗୀତ—

କୋଟି ସୂର୍ଯ୍ୟ କାଶ୍ୱନମ୍, ଲଲାଟେ
କସ୍ତୁରୀ ତିଲକମ, ପଦ୍ମନାଭମ୍ ସୁନ୍ଦରମ୍···

ଗୋଟାଏ ଭୁଁ ଭାଁ ପକ୍ଷୀ ଆମର ମୁଣ୍ଡ ଉପରେ ଡାଳରୁ କହି ଉଠିଲା, ହୁମ୍, ହୁଁ ଉଁ ଉଁ ଉଁ ଉଁ ହୁଁଃ···

ଶାବଣ୍ଟୁଲର ଧୀର, ସ୍ଥିତପ୍ରଜ୍ଞ ଭାବରେ ଧୀର, ଚକ୍ଷୁ ଅମଳ ଗଲା । ତା'ର ସୌମ୍ୟ ଉଜ୍ଜ୍ୱଳ ଦୃଷ୍ଟି କିନ୍ତୁ ଆମ ଉପରେ ସ୍ଥିର ରହିଲା । ଆମେ ମଧ୍ୟ ମନ୍ତ୍ରମୁଗ୍ଧଭାବରେ ଅନାଇ ରହିଲୁ ତା ଆଡ଼େ ଅପଲକ ଦୃଷ୍ଟିରେ, କଷ୍ଟରେ ଆଖିରୁ ପାଣି ଝରୁଥିଲେ ମଧ୍ୟ ।

ଚମକ ପଡ଼ିଲା ପ୍ରଶାନ୍ତର ଧୀର ଅଙ୍ଗୁଳି ସ୍ପର୍ଶରେ । ପ୍ରଶାନ୍ତ ହାତଠାର ଦେଖାଇଦେଲା ସେଇ ବୁଦାଆଡ଼େ । ପୁଣି ସେଇ ଅଗ୍ନିପିଣ୍ଡ ଯୋଡ଼ାକ !! ଏଥର ସେ ଯୋଡ଼ାକ ଧୀରେ ଧୀରେ ଉଠିବାକୁ ଲାଗିଲା, ଏବଂ ଉଠୁ ଉଠୁ ଆମ ଆଡ଼କୁ ଧୀରେ ଧୀରେ ଆଗେଇବାକୁ ଲାଗିଲା ।

ନିଆଁ ପେଣ୍ଡୁ ଯୋଡ଼ାକ ଯେତେବେଳେ ଭୂମି ଠାରୁ ହାତେଅଠ ଉଚ୍ଚ ଉଠିଲା, ସେତେବେଳେ ଆମେ ବୁଝିପାରିଲୁ ଯେ ସେ ଦୁଇଟି ଏକ ଅଦ୍ଭୁତ ଜୀବର ଦୁଇଟି ଆଖି । ଅସ୍ପଷ୍ଟ ଜହ୍ନ ଆଲୁଅରେ ସେ ଜୀବର ଅଣ୍ଟାଠୁ ଉପରକୁ ଦିଶୁଥାଏ । ଆଉ କିଛି ଦେଖି ନ ପାରିଲେ ମଧ୍ୟ ତା'ର ଦେହଯାକ ଯେ ବଡ଼ ବଡ଼ ବାଳରେ ପୂର୍ଣ୍ଣ ତା' ସ୍ପଷ୍ଟ ଅନୁମାନ କରିପାରୁଥିଲୁ ।

ଆଉ ଦୁଇତିନି ହାତ ଆଗେଇ ଆସିବା ପରେ ସେ ଏଥର ବୋଧହୁଏ ଦଣ୍ଡାୟମାନ ହେଲା । ସେତେବେଳେ ସେ ଥାଏ ଆମଠୁ ପ୍ରାୟ ଚାରି ପାଞ୍ଚ ହାତ ଦୂରରେ । ତା'ର ସେଇ ପ୍ରକାଣ୍ଡ ଅକ୍ଷିଯୋଡ଼ାକ ପ୍ରାୟ ଆମ ସାମନାରେ, ଅତି ନିକଟରେ । ହାତଯୋଡ଼ାକ ତା'ର ଦୁଇଟି ପ୍ରକାଣ୍ଡ ତାଳଗଛ ପରି କାନ୍ଧରୁ ଝୁଲୁଥାଏ । ଯେ କୌଣସି ମୁହୂର୍ତ୍ତରେ ସେ ଆମକୁ ଧରି ପିମ୍ପୁଡ଼ି ଭଳି ଦଳି ଦେଇପାରେ ।

ଠାଗଣ୍ଡୁଲ ସେତେବେଳେ ତା'ର ଉଜ୍ଜ୍ୱଳ ଜଳନ୍ତା ଆଖି ଯୋଡ଼ାକ ଆମ ଉପରେ ନିବଦ୍ଧ ରଖି ଆଉ ଟିକିଏ ଘୁଞ୍ଚି ଆସିଲା । ଉପରକୁ ତଳକୁ ଓ ବାମକୁ ଡାହାଣକୁ ତା'ର ଗୋଲ ଗୋଲ ଅକ୍ଷିଯୋଡ଼ାକ ଦି ଚାରିଥର ବୁଲାଇ ଆମ ଉପରେ ପୁଣି ସ୍ଥିର କଲା । ହୁଁ-ହାଁ । ପକ୍ଷୀଟା ପୁଣି ଗର୍ଜିଲା ହୁଁ, ହୁଁ, ହୁଁ, ହୁଁ । ଆମର ଠିକ୍ ମନେ ହେଲା ବଦମାସ୍ ବିଶ୍ୱାସଘାତକ ପେଚା ଯେମିତି ଏଇ ଦୁଇ ଅଦ୍ଭୁତ ଜୀବକୁ ଉତ୍ସାହ ଦେଉଥାଏ ଆମକୁ ମାରି ଦେବାକୁ । ମନେ ମନେ ପ୍ରତିଜ୍ଞା କଲି, ଏଥିରୁ ଯଦି ନିସ୍ତାର ପାଏ ତେବେ ମୋର ଜୀବନର ଏକମାତ୍ର ବ୍ରତ ହେବ ପେଚାବଂଶ ଧ୍ୱଂସ କରିବା । ମନର ଗତି ମନ ହିଁ ଜାଣେ ।

ଅଗ୍ନିକନ୍ଦୁକାକ୍ଷ ଜୀବ ପାଦ ପକାଇ ଆଗେଇ ଆସିଲା । ତା'ର ପ୍ରତି ପଦକ୍ଷେପରେ ଆମ ଛାତି ଥରି ଉଠିଲା । ତା'ର ଆଖି ଆମ ଆଖିଠାରୁ କେବଳ କେତେ ଇଞ୍ଚ ଛଡ଼ା ମାତ୍ର । ତା'ର ନିଃଶ୍ୱାସ ଆମ ମୁଣ୍ଡ ଉପରେ ପଡ଼ୁଥିବାରୁ

ଆମ ଚୋଟି ଉଡ଼ିଯିବ ମୁଣ୍ଡବାଳ ଉଡ଼ିବାକୁ ଲାଗିଲା । ଝାଙ୍କୁଳା ପୋଷାକଗୁଡ଼ିକ ଆମଠାରୁ ଦୁଇତିନି ଫୁଟ ଛଡ଼ାଇନେଲା ମାତ୍ର । ଆମେ ସ୍ପଷ୍ଟ ଦେଖିଲୁ ସେ ତା'ର ସାମନା ଦାନ୍ତ ନୁଲିଚିକୁ ସାମନା ଗୋଡ଼ ଦୁଇଟିରେ ଘଷୁଥାଏ । ଆମକୁ କାମୁଡ଼ିବା ଆଗରୁ ଦାନ୍ତ ଟେକିଥାଏ ବୋଧହୁଏ । ସେ ଥାଏ ଅଦ୍ଭୁତ ଚତୁର ଚତୁର ଦେଖାଯାଉଥାଏ ।

ଏହି ସମୟରେ ନିକଟରେ ମହିଷାସୁରର ଆହ୍ୱାନ ଶୁଣାଗଲା, ସୁକଣ୍ଠକ ! ଛିଃ, ଆସ ସଖା, ଏ କିଏ ଶୁଣ ! !

ଉଃ ! କି ଅଦ୍ଭୁତ ସେ ଚେହେରା । ଖାଲି ସାଙ୍ଗକୁ ମିଳିଲା ଏକ ଆଶ୍ଚର୍ଯ୍ୟ ସ୍ୱର : କିଏ ଏ ! : ଦେବ ନା ମାନବ ! ! ! ଦେବତା ଯଦି ହୁଏ, ତେବେ ଆମର ବନ୍ଦନ କରିବା ଉଚିତ, କିପରି ଭାବରେ ଅଭିବାଦନ କରିବା ଉଚିତ । ମନ୍ତ୍ରୀ ବା ପ୍ରେସିଡେଣ୍ଟ ବା କଲେକ୍ଟରଙ୍କ ସାମନାରେ କିପରି ଗୋଡ଼ ଧରି, ହାତଯୋଡ଼ି ( ମାନସିକ ଓ କାୟିକ ) ଛିଡ଼ାହେବାକୁ ହୁଏ ଏବଂ ନ ହେଲେ କି ଘଟିଥିବ ତାହା ଆମେ ଉତ୍ତମରୂପେ ଶିକ୍ଷା ପାଇଛୁ ଏବଂ ସେଥିରେ ଆମେ ଅଭ୍ୟସ୍ତ; କିନ୍ତୁ ଦେବତାଙ୍କ ପାଖରେ କିଅଣ ସେହିପରି ବ୍ୟବହାର କରିବାକୁ ହେବ ?

ଏଥର ଅତି ନିକଟରେ ଡାକ ଆସିଲା, ଆସ ବନ୍ଧୁ ସୁକଣ୍ଠକ, ଆସ ମୋ ସହିତ ଖେଳିବ । ଏମାନେ ତୁମର କଥା ବୁଝିପାରିବେ ନାହିଁ ! !

ପୁଣି ଗଗନ ପବନ କମ୍ପନ କରି ସେଇ ଅଟ୍ଟହାସ୍ୟ । ହୋଃ—ହୋଃ—ହାଃ—ହାଃ—ହାଃ—ହାଃ—ହାଃ—ହାଃ—ଫଡ଼ ଫଡ଼ କରି ଉଡ଼ିଆସି ଝାଙ୍କୁଳ ଗଛକୁ ଝାମ୍ପି ନେଇଗଲା ଗୋଟାଏ ଡେଣା । ଛାଃ, ତୁଚ୍ଛ କୁତଙ୍ଗଟାରେ ମନ ଭରିଗଲା ।

ସେ ଅଟ୍ଟହାସର ଧକ୍‌କାରେ ଆମେ ତଳେ ପଡ଼ିଗଲୁ । ପଡ଼ିଗଲା ପୂର୍ବରୁ ଆମର ଯେତିକି ଜ୍ଞାନ ଥିଲା, ସେଥିରେ ଦେଖିଲୁ ଜଣେ ମନୁଷ୍ୟ ସୁକଣ୍ଠକନାମକ ସେଇ ବିଭତ୍ସ ଜୀବର ହାତ ଧରି ଗାଇ ଗାଇ ଯାଉଛି—

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତଃ,

× × ×

ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ତା'ପରେ କଅଣ ଘଟିଲା ଆମେ ଜାଣୁନା ।

× × ×

ପରଦିନ ସକାଳେ ଆମେ ଯେତେବେଳେ ଉଠିଲୁ, ଦେଖିଲୁ ଆମେ ଏକ କୁଡ଼ିଆ ଭିତରେ ଶୋଇଛୁ । ଆଖି ମଳି ଉଠି ଆମେ ପୂର୍ବକଥା ସ୍ମରଣ କରିବାକୁ ଚେଷ୍ଟା କଲୁ । କିନ୍ତୁ କିଛି ମନେପଡ଼ିଲା ନାହିଁ । କେବଳ ଦୂରରୁ ଭାସି ଆସିଲାପରି କାନରେ ଶୁଭିଲା, ଯଦା ଯଦା ହି...... । ପ୍ରବର ହାତ ଯୋଡ଼ି ନମସ୍କାର କଲା । ତାହାର ପ୍ରାଣିତତ୍ତ୍ୱରୁ ସେ କି ନୂତନତତ୍ତ୍ୱ ପାଇଲା କେଜାଣି, ନିରୀଶ୍ୱର ଓ ବସ୍ତୁବାଦୀ ବୈଜ୍ଞାନିକ ପ୍ରବରକୁ ମୁଁ ଅଜ୍ଞାତର ଉଦ୍ଦେଶ୍ୟରେ ନମସ୍କାର କରିବାର ଦେଖି ବଲ ବଲ୍ କରି ଚାହିଁଲି ।

ବାହାରକୁ ଆସି ଆମେ ଦେଖିଲୁ ଆମେ ଯେଉଁଠି ଅଛୁ ତା'ର ଚାରିପଟେ ନିବିଡ଼ ଜଙ୍ଗଲ । ସେ ଜଙ୍ଗଲ ଭିତରକୁ ଦଳ ଦଳ ହୋଇ ଯୁବକମାନେ ଯାଉଥାଆନ୍ତି ଟେଣ୍ଟା, ବଲ୍ଲମ, ଖଣ୍ଡା, କଟୁରି ଆଦି ଅସ୍ତ୍ର ଧରି ଓ ଢୋଲ ମହୁରି ବଜାଇ, ମଝିରେ ମଝିରେ ଗୋଟାଏ ହିଂସ୍ର କିଲିକିଲା ଦେ କରି ସେମାନେ ଡେଉଁ ଥାଆନ୍ତି ।

ଏଇ ସମୟରେ ଦୂରରୁ ଶୁଭିଲା, ଭାଇମାନେ ମୋର ଫେରି ଆସ ! ଫେରିଆସ !

ଅନାଇ ଦେଖିଲୁ ଏକ କମନୀୟକାନ୍ତି ଯୁବକ । ମୁହଁରେ ତାଙ୍କର ସ୍ନିଗ୍ଧ ହାସ୍ୟ, ହସ୍ତରେ କମଣ୍ଡଳୁ, ଅଙ୍ଗରେ କୌପୀନ ବ୍ୟତିରେକେ ଆଉ କିଛି ନାହିଁ ।

ଯୁବକମାନେ ଥମକି ଛିଡ଼ାହେଲେ । ମନରେ ସେମାନଙ୍କର ଦ୍ୱିଧା । କ୍ରମେ କ୍ରମେ ଗୋଟି ଗୋଟି ହୋଇ ସେମାନେ ଫେରିଲେ ଯୁବକଆଡ଼େ । ନବାଗତ ଯୁବକକୁ ଘେରି ସେମାନେ ପଚାରିଲେ, କାହିଁକି ଡାକିଲ ତୁମେ ? ତୁମେ କିଏ ?

କୁଆଡ଼େ ଯାଉଛ ଭାଇମାନେ ? ଯୁବକ ପଚାରିଲେ ।

ଆମେ ଯାଉଛୁ ଗୋଟାଏ ଦାନବକୁ ମାରିବାକୁ

ମନର ଦାନବକୁ ଆଗେ ମାର, ତା' ପରେ ବାହାରର ଦାନବ ମାରିବ, ଯୁବକ ସ୍ନିଗ୍ଧ ଅଥଚ ଦୃଢ଼କଣ୍ଠରେ କହିଲେ

ଆମେ ସେ ସବୁ ବୁଝୁନା, ସେ ସବୁ ବାଜେ କଥା, ଆମେ ତାକୁ ଆଜି ମାରିବୁ···ମାରିବୁ···ତା'ର ମାଂସ ଆମେ ଖଣ୍ଡ ଖଣ୍ଡ କରି ଖାଇବୁ, ତା'ର ରକ୍ତରେ ଗାଧୋଇବୁ । ବଡ଼ ଶିକାର ମିଳିବ ଆଜି ଯୁବକମାନେ ଅସ୍ତ୍ର ସବୁ ନଚାଇ କଳକଳା ନାଦ କରି ନାଚିବାକୁ ଲାଗିଲେ ।

ସେ ତ କା'ର କ୍ଷତି କରିନାହିଁ···ଯୁବକ କହିଲେ ।

ତୁମେ ତାକୁ ଦେଖିଛ ? କେଉଁଠି ସେ ?

ବାଃ ପ୍ରତି ବର୍ଷରେ ଦେଖୁଛି ତାକୁ । ଚାଲ, ତାକୁ ନ ମାରି ଏଇ ଗାଁର ଆଉ ଗୋଟିଏ ପୂଜା କରିନେବା, ଯୁବକ ସ୍ନିଗ୍ଧ ହାସ୍ୟ କରି କହିଲେ ।

ସେଇ ହିଂସ୍ର ଅସୁରକୁ ???! ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ ସମସ୍ୱରରେ ।

ନିଶ୍ଚୟ, ଦୃଢ଼ତା-ବ୍ୟଞ୍ଜକ ସ୍ୱରରେ ଯୁବକ କହିଲେ ।

ଆମେ ଦୁହେଁ ସେତେବେଳକୁ ଅନ୍ୟମାନଙ୍କ ସହିତ ଯୋଗ ଦେଇଥାଉ । ମୁଁ ପଚାରିଲି, ସେ ହିଂସ୍ର ପଶୁ, ଆପଣଙ୍କ ଗୀତାରେ ତ ଭଗବାନ୍ କହିଛନ୍ତି ସେଥିକୁ ଜୟ କରିବାକୁ ।

ଯୁବକଙ୍କ ଆଖି ଛଳଛଳ ହୋଇଗଲା । ସେ କହିଲେ, ବନ୍ଧୁ, ଏ ଭ୍ରାନ୍ତ ଧାରଣା ।—ଅର୍ଜୁନଙ୍କ ହିଂସା, ଦ୍ୱେଷ, ମୋହ, ଦମ୍ଭ, ଅହମିକା ଦୂର କରାଇ ସମ୍ୟକ୍‌ରୂପେ ଜ୍ଞାନୋଦୟ କରାଇ ଭଗବାନ୍ ଶ୍ରୀକୃଷ୍ଣ, ତାଙ୍କ ପାଦତଳେ ମୋର କୋଟି କୋଟି ନମସ୍କାର, କହିଲେ, ସଖା ଏଥର ତୁମେ ଯୁଦ୍ଧ କର ବା ନକର ତୁମ ଇଚ୍ଛା । ଆପଣ ଆଗେ ମନର ଦାନବମାନଙ୍କୁ ଜୟ କରନ୍ତୁ, ପରେ ବାହାରର ଦାନବ କଥା ଭାବିବେ । ଆଉ ଅସୁର ବା କିଏ ଭାଇମାନେ; "ଈଶ୍ୱରସ୍ୟ ପ୍ରସ୍ତାରମ୍ ଅନେକରୂପମ୍ ।" ନାନା ରୂପରେ ସେ ଭିତରେ ଓ ବାହାରେ ଅଛନ୍ତି ।

ତାଙ୍କରି ସବୁ ରୂପକୁ ମୋର କୋଟି କୋଟି ନମସ୍କାର । ସ୍କୁଲ ଛାତ୍ରମାନେ, ଆମେ ତାଙ୍କୁ ଏ ଗାଁର ପୁଅ କରିନେବା, ଆମରି ଜଣେ ହେବେ ।

ମୁଁ ମନେ ମନେ କହିଲି, ଏହିକୁ ତ ଚାହୁଁଥିଲି ।

ଜନତାଙ୍କ ଭିତରୁ କେହି ଜଣେ ଉତ୍ସାହୀ ହୋଇ ପଚାରିଲା, ତା କ'ଣ ସମ୍ଭବ ହୋଇପାରେ ?

ଯୁବକଙ୍କ ଆଖି ଯୁଟି ଛଳଛଳ ହୋଇଉଠିଲା, ସେ କହିଲେ, ଭଗବାନ୍ ଶ୍ରୀକୃଷ୍ଣ ମଦନଦହନ ନୁହନ୍ତି, ମଦନମୋହନ । ଅନ୍ତ ମୋହନରୂପ ଗାନ୍ଧି ମଧ୍ୟ ଏକଥା ପ୍ରମାଣ କରିଯାଇଛନ୍ତି । ଭିତରେ କୃଷ୍ଣପ୍ରୀତି ନଥିଲେ ଛଳନା କଲେ ତା' ଅସମ୍ଭବ । ହେ ଅମୃତର ପୁତ୍ରମାନେ, ଧନ, ମାନ, କ୍ଷମତା, ପ୍ରତିପତ୍ତି ତୁମର ମାନବତ୍ୱର ବିକାଶ କରିବ ନାହିଁ, ଦାନବତ୍ୱ ବୃଦ୍ଧିପାଇବ । ହେ ଅମୃତର ପୁତ୍ରମାନେ, ତୁମେ କହ ଆମେ ଅମୃତର ପୁତ୍ର ।

କଏ ଯେମିତି ଆମର କଣ୍ଠରେ ଥାଇ ଆମକୁ କୁହାଇଲେ; ଆମେ ଅମୃତର ପୁତ୍ର, ଆମେ ଅମୃତର ପୁତ୍ର । କଣ୍ଠରୁ ସେ କଥା ବାହାରିବା ପରେ ଦେହର ପ୍ରତି ଲୋମକୂପରେ ଏକ ଅପୂର୍ବ ଶିହରଣ, ଅଦ୍ଭୁତ ଆନନ୍ଦମୟ ସାହସର ସଞ୍ଚାର ହେଲା । ଆମେ ବାରମ୍ବାର ସେ କଥା କହି ଆନନ୍ଦରେ ଡଳବାକୁ ଲାଗିଲୁ ।

ଯୁବକ ହେଇପରି ଧ୍ୟାନମଗ୍ନ । ଅଧରରେ ତାଙ୍କର ସ୍ମିତହାସ୍ୟ ସ୍ଥିରପ୍ରଜ୍ଞ ଭଳି ଦିଶୁଥାଏ ।



# ଜଳସ୍ତମ୍ଭ

ତର୍କ ଚାଲିଥିଲା ଭଗବାନଙ୍କ ଅସ୍ତିତ୍ୱ ବିଷୟରେ । ଅମର ସାନ୍ଧ୍ୟ ଆସରରେ ବଣମଣିଷଠାରୁ ଆରମ୍ଭକରି ମଙ୍ଗଳ ଗ୍ରହର ଲୋକ ଏବଂ ଭୂତଠାରୁ ଆରମ୍ଭ କରି ଭଗବାନ ପର୍ଯ୍ୟନ୍ତ ସମସ୍ତଙ୍କ ବିଷୟରେ ଟିକିନିଖି ଆଲୋଚନା ହୁଏ । ଏମାନଙ୍କ ବିଷୟରେ କାହାର ପ୍ରତ୍ୟକ୍ଷ ଅଭିଜ୍ଞତା ନାହିଁ କିନ୍ତୁ ତାପାଇଁ ଟିକିନିଖି ଆଲୋଚନାରେ କିଛି ବାଧା ପଡ଼ୁନାହିଁ । ଏ ସଭାରେ ଯେଉଁମାନେ ଯୋଗଦିଅନ୍ତି ସେମାନଙ୍କ ଭିତରେ ଉଦ୍ଧତ ନାସ୍ତିକ ଓ ଉନ୍ମାଦ ଭକ୍ତ ମଧ୍ୟ ଅଛନ୍ତି । ମୋ କଥା ଛାଡ଼ନ୍ତୁ । ମୋ ମତରେ ମୃତ୍ୟୁପରେ ଅମରତା ପାଗଳ ମନୁଷ୍ୟର କାଳ୍ପନିକ ସୃଷ୍ଟି ହେଉଛି ଭୂତ ଓ ଭଗବାନ; କିନ୍ତୁ ମୁଁ ଟିକିଏ ଦୁର୍ବଳ । ଭକ୍ତମାନଙ୍କର ମାଡ଼ ଭୟରେ ମୋର ମତ ମୁଁ ପ୍ରକାଶ କରିପାରେନା ।

ବିଜୟବାବୁ ଖବରକାଗଜ ଗୋଟିଏ କୋଣକୁ ଫିଙ୍ଗିଦେଇ କହିଲେ, ହେଁ ମଣିଷ ଗର୍ବ କରୁଛି ଯେ ସେ ଜ୍ଞାନର ଚରମ ସୀମାକୁ ଯାଇଛି । ସବୁ ଜ୍ଞାନ ତ ମାରଣାସ୍ତ୍ର ତିଆରି କରିବା ପର୍ଯ୍ୟନ୍ତ, ସେଥିରେ ଗର୍ବ କେଉଁଠି ! ତୈତ୍ତିରୀୟ ଉପନିଷଦରେ ଅଛି, ଅନ୍ନମୟ ଆତ୍ମା । ତା ଭିତରେ ପ୍ରାଣମୟ ଆତ୍ମା । ତା ଭିତରେ ମନୋମୟ ଆତ୍ମା । ତା ଭିତରେ ବିଜ୍ଞାନମୟ ଆତ୍ମା । ତା ଭିତରେ ଯାହା ହେଲା ଆନନ୍ଦମୟ ଆତ୍ମା । ଆରେ ବାପ, ସେ ଆନନ୍ଦର ନାହିଁ, ତେଣିକଟା ଜ୍ଞାନର ଏତେ ଗର୍ବ କାହିଁକି କର ? ସେ ଆନନ୍ଦ କେବଳ ପରବ୍ରହ୍ମ ଚିହ୍ନିଲେ ପାଇବ ।

ମୁଁ ପ୍ରତିବାଦ କରିବାକୁ ଯାଉଥିଲି; କିନ୍ତୁ ଭୟରେ ତଣ୍ଟିରୁ କେବଳ ଘଡ଼ଘଡ଼ ଶବ୍ଦ ବାହାରିଲା । ସୁକାନ୍ତବାବୁ କହିଲେ, ବିଷ ତୁମ ଭଗବାନ

ପରମ ବ୍ରହ୍ମ । ମଣିଷ ବଞ୍ଚିବାକୁ ଚାହେଁ, ଏ ହେଲା ଚରମ ସତ୍ୟ । ବଞ୍ଚିବାକୁ ହେଲେ···ଆରେ ! ଏ କଏ ?

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ସନ୍ନ୍ୟାସୀ ବେଶଧାରୀ ଦୁଆର ମୁହଁରେ ଛିଡ଼ା ହୋଇଛନ୍ତି । ଆମେ ଅଧିକ ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ଆଖି ତା'ର ଜଳ ଜଳ, ଅଧର ସ୍ପନ୍ଦିତ କମ୍ପିତ । ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ସେ କହିଲେ, ଭାଇମାନେ, ଭଗବାନ ଅଛନ୍ତି, ଅଛନ୍ତି ।

ଏଥର ଆମେ ଆଶ୍ଚର୍ଯ୍ୟର ଚରମସୀମାକୁ ଗଲୁ । କହୁଛନ୍ତି କଣ ସେ ! ଯିଏ ଘୋର ନାସ୍ତିକ, 'ବୃଷଳୀ ଅଭ ସୁବଚନ' ପାଠରେ ଯିଏ ଆକଣ୍ଠ ବୁଡ଼ି ରହିଥିଲେ ସେ କହୁଛି, ଭଗବାନ ଅଛନ୍ତି ।

ମୁଁ କହିଲି, ଭଗବାନ୍ ଥାଆନ୍ତୁ, ଆମର ଆପତ୍ତି ନାହିଁ; କିନ୍ତୁ ତୁ କେଉଁଠି ଥିଲୁ ଏତେଦିନ ? ଆମେ ତ ଶୁଣିଥିଲୁ ତୁ ଯୁଦ୍ଧରେ ଯୋଗଦେଇଥିଲୁ ଏବଂ ତୋର କୋର୍ଟ ମାର୍ଶାଲ ହୋଇଥିଲା, ସାତଦିନ ଛୁଟି ନେଇ ଖବର ନଦେଇ ଗାଁରେ ମାସେ ରହିଯାଇଥିଲୁ ବୋଲି ।

—ହଁ, କୋର୍ଟ ମାର୍ଶାଲ ହୋଇଥିଲା । ବର୍ଷାଦିନରେ ସାତଦିନ ଛୁଟି ନେଇ ଆସି ଅନେକ ଦିନ ରହିଯାଇଥିଲି । ଦିନେ ହଠାତ୍ ଓ୍ୱାରେଣ୍ଟ ଆସି ପହଞ୍ଚିଲା । ଧରାହୋଇ ଗଲି ପୁନା । ଯାଇ ଶୁଣିଲି ମୋର ବିଚାର କରିବେ ବ୍ରିଗେଡ଼ିଅର ସ୍ୟାଣ୍ଡେଜ୍ । ତାଙ୍କ ନା ଶୁଣି ତ ମୋର ପିଳେହି ପାଣି । ତାଙ୍କର ନା'ଟି ଯେମିତି ଗୁଣଟି ଠିକ୍ ସେମିତି । ଭୀଷଣ ରାଗୀ, ଭାରି ନିଷ୍ଠୁର । ଥରେ ଧାଡ଼ିଏ ହଳଦିଆ ଫୁଲଗଛ ଲଗାଇବାକୁ ସେ ଆଦେଶ ଦେଲେ । ମଞ୍ଜି ପୋତା ହେଲା, ଗଛ ଉଠି ଫୁଲ ଫୁଟିଲା; କିନ୍ତୁ ଧାଡ଼ିଟିରେ ଫୁଟିଲା ଗୋଟିଏ ନେଳିଫୁଲ । ବାସ୍, ମଞ୍ଜି ଲଗେଇବା ସିପାଇକୁ ହେଲା କୋର୍ଟ ମାର୍ଶାଲ । ସର୍ଦ୍ଦାରଜୀ ମଣିଷ । ଆଖି ଦିଓଟି ବଡ଼ ବଡ଼, ସଦାବେଳେ ରକ୍ତବର୍ଣ୍ଣ । ପ୍ରକାଣ୍ଡ ହାତେ ନିଶ ମୁହଁଆ ହୋଇ ଦୁଇଟି ଝଣ୍ଡା ଭଳି କାନ ପର୍ଯ୍ୟନ୍ତ ଲମ୍ବିତ । ଛୁଟିରୁ ଫେରିବାମାତ୍ରେ, ଦେଖାକଲି ।

ସ୍ୟାଣ୍ଡେଜ୍ ଗର୍ଜିଉଠିଲେ, ସାତଦିନ ଛୁଟି ନେଇ ଏତେଦିନ କୁଆଡ଼େ ଥିଲ ?

ହୃଦୟରେ ବୋଧହୁଏ ପତନ ହୋଇ ଯାଇଥିଲା । ମୁହଁରୁ ବାହାରିଲା କାଳିଦାସଙ୍କ ଶ୍ଳୋକ, କଣ୍ଠାଶ୍ଳେଷ ପ୍ରଣୟିନୀ···

ବନ୍ଦ୍ରିକନାଦ ଶୁଣିଲ, ହ୍ୱାଟ୍‌ସ୍ ଦାଟ୍ । ଉସ୍‌କା ମାନେ କ୍ୟା ହୈ ।

ଚେଷ୍ଟ କରି ମାନେ ବୁଝାଇ କହିଲି, ବର୍ଷାଦିନ, ମୋର ନବବିବାହିତା ସ୍ତ୍ରୀ ମୋତେ ଛାଡ଼ିଲନାହିଁ ।

ସ୍ୟାଣ୍ଡେର୍‌ସନ୍‌ଙ୍କ ମୁହଁ ହଠାତ୍ ମ୍ଲାନ ହୋଇଗଲା । ସେ ପଚାରିଲେ, ଛଢ଼କା ବହ୍ ମାନ୍‌ତା ହୈ ? ( ସ୍ତ୍ରୀର କଥା ତୁମେ ମାନ ? )

ଜି. ହୁଜୁର୍ ।

ଏକ୍‌ସ୍‌ଲ୍ୟାଣ୍ଟ, ଯାଓ କାମ୍‌ମେ ଜୟେନ୍ କରୋ ।

କେ ହାଏ ନିଷ୍ଠୁର ଆବରଣ ତଳେ କି କୋମଳ ହୃଦୟ ଯେ ତାଙ୍କର ଥିଲା ! ଠିକ୍ ବୈଷ୍ଣବ ପରି ଅନ୍ତରରେ ହରିପ୍ରେମ, ବାହାରେ ନିଷ୍ଠୁରତା ।

ମୁଁ ପଚାରିଲି, ଥିଲା ? ମାନେ ସେ କଅଣ ମୃତ ? ଦୀର୍ଘ ନିଃଶ୍ୱାସ ପକାଇ ଦେବବ୍ରତ କହିଲା, ହଁ ମୃତ; କିନ୍ତୁ ସେ ମୃତ୍ୟୁ କି ଆଶ୍ଚର୍ଯ୍ୟ, କି ନୈସର୍ଗିକ ! ମୃତ୍ୟୁ ତ ନୁହେଁ, ନିର୍ବାଣ ସେ । ତୁମେମାନେ ଜଳସ୍ତମ୍ଭ ଦେଖିଛ ? ଦେଖିନ । ମୁଁ ନିଜ ଆଖିରେ ଦେଖିଛି । ସେତେବେଳେ ଥିଲା ଢାକା ସହରଠାରୁ କିଛି ଦୂରରେ । ଦିନେ ଉପରଓଳି ହଠାତ୍ ଗୋଟାଏ ଗୁମ୍ ଗୁମ୍ ଶବ୍ଦ ଶୁଣି ଆମେ ସମସ୍ତେ ଆତଙ୍କିତ ଭାବରେ ହତିଆର ଧରି ତମ୍ବୁ ଭିତରୁ ବାହାରି ପଡ଼ିଲୁ । ଜାପାନୀମାନେ ଆସିଗଲେ ନିଶ୍ଚୟ । ଶବ୍ଦଟା ଶୁଭୁଥିଲା କେତେବେଳେ ନିକଟରେ ସ୍ପଷ୍ଟ, କେତେବେଳେ ଦୂରରେ ଅସ୍ପଷ୍ଟ । ଆକାଶ ପରିଷ୍କାର । କେବଳ ଦୂରରେ ଖଣ୍ଡେ କଳାମେଘ ଓହ୍ଲାଇ ଆସୁଛି, ଠିକ୍ ଯେମିତି ଭଗବାନ୍ ଶ୍ରୀକୃଷ୍ଣ ଗରୁଡ଼ ପିଠିରେ ପୃଥିବୀକୁ ଆସୁଛନ୍ତି । କିଛିକ୍ଷଣ ନିରୀକ୍ଷଣ କରିବା ପରେ ଦେଖିଲି ଦୂରରେ ଯେଉଁଠି ନଦୀ ବୋହି ଯାଉଛି ସେ ନଦୀ ଭିତରୁ ଚକ୍ ଚକ୍ ହୋଇ ଗୋଟାଏ ଗୋଲାକାର ସ୍ତମ୍ଭ ଭଳି କଅଣ ବଙ୍କେଇ ବଙ୍କେଇ ଉପରକୁ ଉଠୁଛି ସେ କଳାମେଘ ଆଡ଼େ । କିଛିକ୍ଷଣ ପରେ ସେଇ କଳାମେଘ ସହିତ ମିଶିଗଲା ସେ ଧବଳ ଜଳସ୍ତମ୍ଭ । କି ଅପୂର୍ବ ସେ ଦୃଶ୍ୟ । ଠିକ୍ ରାଧାକୃଷ୍ଣଙ୍କ ମିଳନ । ସ୍ୟାଣ୍ଡେର୍‌ସନ୍‌ଙ୍କ ମନ ଥିଲା ଏହି ଜଳସ୍ତମ୍ଭ ପରି ।

ସେଇ ଘଟଣା ପରେ କେଜାଣେ କାହିଁକି ସେ ମୋତେ ଖୁବ ସ୍ନେହ କରିବାକୁ ଲାଗିଲେ । ରାତି ଭୋଜନ ପରେ ଆମେ ଦୁହେଁ ପଡ଼ିଆରେ ଦୁଇଟି ଅରାମ ଚୌକିରେ ବସି ଅନେକ କ୍ଷଣ ଗଳ୍ପ କରୁ ।

ଦିନେ ଆଲୋଚନା କରୁ କରୁ ସେ କହିଲେ, ଦେବବ୍ରତ୍, ମନୁଷ୍ୟ ଗର୍ବ କରୁଛି ସେ ପ୍ରକୃତିକୁ ଜୟ କରିପାରିଛି ଆଜି ବୋଲି । ଆରେ, ପ୍ରକୃତି କ'ଣ ବାହାରେ ଅଛି, ଅଛି ନିଜ ଭିତରେ । ଯେ ପର୍ଯ୍ୟନ୍ତ ନିଜର ହିଂସା, ଲୋଭ, କ୍ଷମତାଲାଳସା ଜୟ କରି ନ ପାରିବ ସେ ପର୍ଯ୍ୟନ୍ତ ପ୍ରକୃତି ତୁମକୁ ନାକରେ ଦଉଡ଼ି ଦେଇ ବୁଲାଉଥିବ ।

ସ୍ୟାଭେଜଙ୍କ ମୁହଁରୁ ଏକଥା ଶୁଣି ସେ ଦିନ ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ମୁଁ ଜାଣିଥିଲି ସେ ଘୋର ନାସ୍ତିକ । କୌତୁକ କରିବାପାଇଁ ମୁଁ କହିଲି, ସାର୍, ଭଗବାନଙ୍କ କୃପା ନ ହେଲେ ମନୁଷ୍ୟ ପ୍ରକୃତି ଜୟ କରି ପାରିବ ନାହିଁ । ମନୁଷ୍ୟ ଆଜି ଭଗବାନଙ୍କୁ ଭୁଲି ନିଜ କ୍ଷୁଦ୍ର କ୍ଷମତାରେ ଉନ୍ମତ୍ତ ।

ସ୍ୟାଭେଜ୍ ହଠାତ୍ ଗମ୍ଭୀର ହୋଇଗଲେ । ମୁହୂର୍ତ୍ତକ ପାଇଁ ଆଖି ତାଙ୍କର ଉଜ୍ଜ୍ୱଳ ହୋଇ ଉଠିଲା । ସେ ଆଉ କିଛି ନ କହି ଧୀରେ ଧୀରେ ଘରକୁ ଉଠିଗଲେ । ମୁଁ ହତବାକ୍ ହୋଇ ଚାହିଁ ରହିଲି ।

ପରଦିନ ସକାଳ ନ ହେଉଣୁ ଚପରାସି କହିଲା, ସାର୍ ମେମ୍‌ସାହେବ ସଲାମ୍ ଦେଇଛନ୍ତି ।

ଆଶ୍ଚର୍ଯ୍ୟ ହୋଇ ଦୌଡ଼ିଲି । ଶ୍ରୀମତୀ ସ୍ୟାଭେଜ୍ କହିଲେ, ଦେବବ୍ରତ୍ ଆଜି ମୋର ଖୁବ ଆନନ୍ଦର ଦିନ । ଆଜି ମୁଁ ଭୋଜି ଦେଉଛି । ସମସ୍ତଙ୍କୁ ତୁମେ ସମ୍ବାଦ ଦିଅ ।

ସମସ୍ତଙ୍କୁ ସମ୍ବାଦ ଦେଲି, କିନ୍ତୁ ଏତେ ଆନନ୍ଦର କାରଣ କ'ଣ ବୁଝି ପାରିଲିନାହିଁ । ପ୍ରାୟ ଦିନ ଗୋଟାକବେଳେ ସମସ୍ତେ ସମବେତ ହେଲୁ । ସକାଳୁ ସ୍ୟାଭେଜ୍ ବାହାରି ଯାଇଥିଲେ ଡିଉଟିକୁ । ଫେରି ଭୋଜିର ଆୟୋଜନ ଦେଖି ଆଶ୍ଚର୍ଯ୍ୟ ହୋଇ ସେ ଏହାର କାରଣ ପଚାରିଲେ ।

ଶ୍ରୀମତୀ ଆନନ୍ଦରେ କାନ୍ଦି ପକାଇ କହିଲେ, ଆଜି ମୋର ଚରମ ଆନନ୍ଦର ଦିନ । ଏହି ଶୁଭ ମୁହୂର୍ତ୍ତପାଇଁ ମୁଁ ଅପେକ୍ଷା କରୁଥିଲି ।

ସ୍ୟାଣ୍ଡ୍ରିକ୍ ବେଶି କଥା କହି ପାରୁନ୍ତି ନାହିଁ । ଉତ୍ତେଜିତ ହୋଇ ସେ କହିଲେ, ଐନ୍ଦ୍ରିଲା, ମୋର ବେଳ ନାହିଁ ତୁମର ସାହିତ୍ୟ ଶୁଣିବାକୁ ।

ଶ୍ରୀମତୀ ଲିଣ୍ଡ ପୋଛି କହିଲେ, କାଲି ରାତିରେ ତୁମେ ନିଶା ଅବସ୍ଥାରେ କହିଚ, ହେ ଈଶ୍ୱର !

ସ୍ୟାଣ୍ଡ୍ରିକଙ୍କ ମୁହଁରେ ହଠାତ୍ ବିଷାଦର ଛାୟା ଖେଳିଗଲା । ଅଜାଣତରେ ତାଙ୍କ ଗୋଡ଼ ଥରି ଉଠିଲା । ମୋତେ ଏମିତି ପାଉଛି ଯେ କହିଲେ, ଜେନ୍ତ୍ରୀ, ଏ ମୋର ଚରମ ଅଧଃପତନତା । ଯାହାକୁ ମୁଁ ଏତେଦିନ ଲୁଚାଇ ରଖିଥିଲି ସେ·· ସେ···ଦଗାବାଜ ବାହାରି ଆସି ଗଲା । ମୁଁ···ମୁଁ···

ସେ ଆଉ କହି ପାରିଲେ ନାହିଁ । ବର୍ଣ୍ଣନ କରିବାକୁ ଯାଇ ତାଙ୍କର ଓଠ ଥରି ଉଠିଲା । ଉତ୍ତେଜିତ ହୋଇ ସେ ଚାଲି ଗଲେ । ସ୍ୟାଣ୍ଡ୍ରିକ୍ ପ୍ରେମରେ ଉଚ୍ଛନ୍ନ ।

ସୈନ୍ୟ ଛାଉଣୀରୁ ସମ୍ବାଦ ଆସିଲା, ମିତ୍ର ପକ୍ଷର ଚରମ ବିଜୟ । ହିରୋସିମା ନଗରୀ ଏ୍ୟାଟମ୍ ବୋମାରେ ଧୂଳିସାତ୍ ।



# ପିତା ଓ ପୁତ୍ର

ପ୍ରତିଦିନ ସନ୍ଧ୍ୟା ପରେ ବଟକୃଷ୍ଣ ସ୍ନାନ ଘାଟ ପଉଟିରେ ସାନ୍ଧ୍ୟଆଡ୍ଡା ବସେ । ଏଥିରେ ଯୋଗ ଦିଅନ୍ତି ଅବସର ପ୍ରାପ୍ତ ଡେପୁଟି ହରିମାଧବ, ଅବସର ପ୍ରାପ୍ତ ମନସ୍ତତ୍ତ୍ୱର ଅଧ୍ୟାପକ ପ୍ରସନ୍ନ, ବୃଦ୍ଧ କାଠ ବ୍ୟବସାୟୀ ରାଧାମୋହନ ଘଡ଼େଇ ଓରଫେ ମଦନ, ବୃଦ୍ଧ ମୋକ୍ତାର ରାମ ଏବଂ ବଟକୃଷ୍ଣ ନିଜେ । ବଟବାବୁ ଅବସର ପ୍ରାପ୍ତ କରଣୀ । ମୃତ୍ୟୁ ଜୀବନ ଏବଂ ଈଶ୍ୱର ମଧ୍ୟରେ ହାସ୍ୟ ରସାତ୍ମକ । ଜନ୍ମବେଳୁ ଯା ମୂର୍ଦ୍ଧରେ ରୂପା ଜମୁଚି, ମୃତ୍ୟୁବେଳକୁ ତାକୁ ହୁଏତ ଡାକ୍ତର ଛୁଆଏ ଗୁହ୍ୟଦ୍ୱାର ବାଟେ, ତା ଶୁଣି ହସି ଖୁନ୍ଦନ୍ତି । ମୃତ୍ୟୁର ସମସ୍ୟା କିନ୍ତୁ ବୃଦ୍ଧମାନଙ୍କ ମଧ୍ୟରେ ଆତଙ୍କ ତୋଳି ଯାଇଥାଏ । କାଠ ବ୍ୟବସାୟୀ ନିମୁଣ୍ଡିଆ ମଦନ ହେଉଛି ଡେପୁଟି ହରି ବାବୁଙ୍କ ସମୁଦି, କରଣୀ ବଟବାବୁ ଅଧ୍ୟାପକ ପ୍ରସନ୍ନବାବୁଙ୍କ ଦାଦା ଏବଂ ମୋକ୍ତାର ରାମବାବୁ ସମସ୍ତଙ୍କର ସ୍ତ୍ରୀଙ୍କର ଭାଇ ହେଉ କାହାର କାହାର ସହିତ ଜନ୍ମର ବା ଲୌକିକ ସମ୍ପର୍କ ନାହିଁ । ଏ ସାନ୍ଧ୍ୟ ଅଡ୍ଡାରେ ପୃଥିବୀର ଏପରି କୌଣସି ସମସ୍ୟା ବା ବିଷୟ ନାହିଁ ଯାହା ଆଲୋଚିତ ନ ହୁଏ । ଆଲୋଚନାରେ ସମସ୍ତେ ନିଜ ନିଜର ମତ ପ୍ରକାଶ କରନ୍ତି । ପ୍ରସନ୍ନବାବୁ ଛାତ୍ରମାନଙ୍କୁ ବୁଝାଇବା ଢଙ୍ଗରେ ମଝିରେ ମଝିରେ ମନସ୍ତତ୍ତ୍ୱର ଥିଓରି ବ୍ୟାଖ୍ୟାନ କରନ୍ତି । ସବୁ ଆଲୋଚନା ଶେଷ ହୁଏ ନିଜ ନିଜର ବିଗତ ଜୀବନର ସ୍ମୃତି ହୃଷ ରବେ । ସେ ସ୍ମୃତି ଯେପରି କେଉଁ ଦୂର ଜନ୍ମର ସୁଖ ସ୍ମୃତି ।

ମଦନର ଏମାନେ ସମସ୍ତେ ଗ୍ରାହକ ଆଜକୁ ଅନେକ ବର୍ଷ ଧରି । ମଦନ ପ୍ରତ୍ୟହ ସନ୍ଧ୍ୟା ସମୟରେ ନିଜ ପାଉଣା ଆଦାୟ କରିବାକୁ ଆସେ । ହରିବାବୁ କହନ୍ତି, ସମୁଦି, ଆଃ ହା, ଆଜି ମାଗିଲ ? ଆଜି ପରା ଗୁରୁବାରଟା, ଲକ୍ଷ୍ମୀବାରଟା, ଟଙ୍କାଟା ଘରୁ ବାହାରିବ ନାହିଁ । ମଦନ ପାଉଣା ମାଗିଲେ ଏମାନଙ୍କର ପ୍ରତ୍ୟହ ଗୁରୁବାର ହୁଏ ଏବଂ ପ୍ରତ୍ୟହ ଅନ୍ୟ ସମସ୍ତେ ତାହା ଦୃଢ଼ ଭାବରେ ସମର୍ଥନ କରନ୍ତି । ବଟବାବୁ ଘରୁ କ୍ୟାଲେଣ୍ଡର ଆଣି ଦେଖାଇ କହନ୍ତି, ଆମେ ସମସ୍ତେ

ପଢ଼ ମିଛ କହିଲୁ, ତେବେ ତୁମେ ନିଜ ଆଖିରେ ଦେଖ । ଡେପୁଟିଙ୍କ ବୁଦ୍ଧିରେ କଲ୍ୟାଣୀ ହରବାବୁ ମଦନ ପାଇଁ ଗୋଟିଏ କାଲେଣ୍ଡର ପ୍ରସ୍ତୁତ କରିଛନ୍ତି । ସେଥିରେ ତାରିଖ ବଦଳୁଥିଲେ ମଧ୍ୟ ବାରଟି ପ୍ରତ୍ୟେକ ଦିନ ଗୁନ୍ଥିବାର । ମଦନ ବିରକ୍ତ ହେବାର ଅଭିନୟ କରି କୁହେ, ନାହିଁ ବାବୁ, ଆଜି ନ ହେଲେ ମୁଁ ଏଠୁ ଉଠିବି ନାହିଁ । ପ୍ରସନ୍ନ ବାବୁ ମଦନର ଟେହ୍ନା ଛଡ଼ାଠି ଛଡ଼ାଇନେଇ କହନ୍ତି, ହଉ ତେବେ ବସ, ଉଠି ଯାଇ ପାରିବ ନାହିଁ କହୁ । ମଦନର ସ୍ୱରରୁ ମନେ ହୁଏ ସେ ଯେପରି ନିରୁପାୟ ଭାବରେ ସଭାରେ ଯୋଗ ଦିଏ । ଶୀତ ଦିନରେ ମଦନ ହଜାଏ ଛିଣ୍ଡା କାଠ ସାଙ୍ଗରେ ଆଣିଥାଏ । ସେ କହେ କାଠ ବିନା ସାରା ଯାହା ବଳିବ ଫେରିଲ ଘରକୁ ନେଇଯିବି । ପ୍ରସନ୍ନ ବାବୁ ଛତା ଓ କାଠ ଛଡ଼ାଇ ନେଇ ବସନ୍ତି । ହରି ବାବୁ କାଠରେ ନିଆଁ ଲଗାଇ ଚୁଲି ପ୍ରସ୍ତୁତ କରିବାରେ ଲାଗି ପଡ଼ନ୍ତି ।

ସେ ଦିନ ଥିଲା ଏହିପରି ଗୋଟିଏ ଶୀତର ସନ୍ଧ୍ୟା । ମଦନର ସଭା ଯୋଗଦାନ ପର୍ବ ଶେଷ ହୋଇଯାଇଛି । ହରିବାବୁ ଧୂନି ଜାଳିବାରେ ଲାଗିଛନ୍ତି ଓ ଓଦା କାଠପାଇଁ ଆଖି ପାଣି ପୋଛୁ ପୋଛୁ ମଦନ ଉପରେ ଗାଳିବର୍ଷଣ କରୁଛନ୍ତି । ପ୍ରସନ୍ନ ବାବୁ ମଧ୍ୟ ମଦନ ଉପରେ ଗାଳିବର୍ଷଣ କରୁଛନ୍ତି; କାରଣ ଏମାନେ ସମସ୍ତେ ମିଳି ଯେଉଁ ଦାମିକା ଛତାଟି କିଛି ଦିନ ତଳେ ଉପହାର ଦେଇଥିଲେ ମଦନ ତାହା ନିଜ ପୁଅକୁ ଦେଇଦେଇଛି ଏବଂ ଗୁଣବନ୍ତ ପୁଅ ମଧ୍ୟ ତାହା ହଜାଇ ଦେଇଛି । ଦାମ ବାବୁ କୁଆଡ଼େ ଯୌବନରେ ବଡ଼ ଗାୟକ ଥିଲେ । ତାର ପ୍ରମାଣ ଦେବା ପାଇଁ ସେ ଚେଷ୍ଟା କରୁଛନ୍ତି । ତାଙ୍କର କଣ୍ଠରୁ ସାତଟିଯାକ ସୁର ଏକାସାଙ୍ଗରେ ଠେଲାପେଲା ହୋଇ ବାହାରିବାର ଚେଷ୍ଟା କରୁଛନ୍ତି । ଦାମ ବାବୁ ବାରମ୍ବାର ଗଳା ଖଙ୍କାରି ପୁଣି ଚେଷ୍ଟା କରୁଛନ୍ତି ।

ମଦନ ଆଉ ସମ୍ଭାଳି ନ ପାରି ଖେଁ ଖେଁ କରି ହସି ପକାଇ କହିଲା, ଅଜ୍ଞା ଏଟା କି ସୁର କି ?

ହରିବାବୁ ନିଆଁକୁ ଫୁଙ୍କୁଥିଲେ । ସେ ମଧ୍ୟ କହିଲେ, ବନ୍ଦ କର ଷ୍ଟୁ, ତୁମ ଗୀତଟା ଟିକିଏ ବନ୍ଦ କର, ନିଆଁଟା ଲଗିଯାଉ ଆଗେ ।

ଦାମ ବାବୁ କହିଲେ, ଏଇ ତୁଷିତା ଠାପର କରୁଛ ପିନା, ଯେତେବେଳେ ବୟସ ଥିଲା ସେତେବେଳେ ଏ ଗଳା ପାଇଁ କେତେ ପ୍ରେମରେ ପଡ଼ିଥିଲେ । ଲକ୍ଷ୍ମୀଣ ପଟ୍ଟନାୟକ । ସେ ତ ଆମ ଗାଁ ଝିଅ ଚନ୍ଦ୍ରରେଖା ।

ମଦନ କହିଲା, ଆଜ୍ଞା, ସେ ଗଲା କାମ ନୁହଁ, ଭୁବନେଶ୍ୱରରେ କହିଲି ପରା…

ରାମ ବାବୁ ଓ ଅନ୍ୟମାନେ ଜିଜ୍ଞାସୁ ଭାବରେ ପଚାରିଲେ, ଭୁବନେଶ୍ୱର କଥା କଅଣ ?

ମଦନ କହିଲା, ଗଲାବର୍ଷ ଅଶୋକାଷ୍ଟମୀକୁ ଭୁବନେଶ୍ୱର ଯାଇଥିଲି । ଯେଉଁ ସ୍ତ୍ରୀର ପିଲାଝିଲା ନ ଥାଏ, ସେଠି କୁଣ୍ଡରୁ ପାଣି ନେଇ ଗାଧୋଇଲେ ପିଲାଝିଲା ହୁଏ । ଗୋଟିଏ ପ୍ରାୟ ସତୁରି ବର୍ଷର ବୁଢ଼ା ତାର ପ୍ରାୟ କୋଡ଼ିଏ ବର୍ଷୀ ଭାରିଯା ନେଇ ସେଇ କୁଣ୍ଡକୁ ପାଣି ଆଣିବାକୁ ଯାଇଥିଲା । ସେଠି ତ ଅନେକ ଛତରା ଟୋକା ଘୁରିଆଡ଼େ ଘେରି ଥାଆନ୍ତି । ଜଣେ ଭିତରୁ ପାଟି କରି କହିଲା, ସେ ପାଣି କାମ ନୁହଁ । ଅ.ହା, ସେ ଝିଅଟି ନାଜରେ ସଢ଼ିଗଲା । ସେଇ ଯେ ମୁହଁ ତଳକୁ ପୋତିଲା, ଆଉ ଉଠାଇ ନାହିଁ ସେ, ଦେଖି ଭାରି କଷ୍ଟ ଲାଗିଲା ମୋତେ । ସେଇମିତି ପ୍ରେମ କଅଣ ଗୀତରେ ହୁଏ, ନର୍ଦ୍ଦୋମା ଚେହେରା ଥିଲେ…

ପ୍ରସନ୍ନ ବାବୁ କହିଲେ, ଠିକ୍ କହୁଚ ସମୁଦ । ବଟ ବାବୁଙ୍କ ଭଳି ତାଳପତ୍ର ସିପେଇକୁ ଭଲ କିଏ ପ୍ରେମ କରିଥିବ କହିଲ ?

ବଟ ବାବୁ କହିଲେ, ଆରେ ଏଇ ତାଳପତ୍ର ଦେହର ବଡ଼େ ଫୁଲ ଉଠିଥିଲା ପ୍ରେମରେ ।

ପ୍ରସନ୍ନବାବୁ କହିଲେ, ଠିକ୍ କହୁଚ ଦାଦା । ହେଲେ ତାର କାରଣ କଅଣ ଜାଣ ? ତାର କାରଣ ଅବାଧ ମିଳାମିଶା । ଏକ ଦିଗରେ ଅବାଧ ମିଳାମିଶା ଏବଂ ଅନ୍ୟଦିଗରେ ଅବାଧଯୌନ କ୍ରିୟା ପ୍ରତି ନୈତିକଘୃଣା । ଆଜିକାଲି ନାରୀମାନେ ନାନା କୃତ୍ରିମ ଉପାୟରେ ଦେହର ଯୌନ ଆକର୍ଷଣ ଶକ୍ତି ଗୁଣ ବଢ଼ାଇ ପୁରୁଷର ଦେହକୁ ଦେହ ଘଷି ଛୁଇଁ ଦେଲେ । ଦୁହିଁଙ୍କର କାମନା ଜାଗ୍ରତ ହେଉଚି; କିନ୍ତୁ ସମାଜ, ଆଇନ, ଯୁଗ ଯୁଗର ସଂସ୍କାର ଖଣ୍ଡା ଧରି ଛିଡ଼ା ହୋଇଚି ଆଉ ଆଗେଇବାକୁ ମନାକରି । ଫଳରେ ପୁରୁଷ ଓ ନାରୀମାନେ ଉଦ୍‌ଭ୍ରାନ୍ତ ହୋଇ ସମାଜରେ ବିଚରଣ କରୁଚନ୍ତି । ସଜ୍ଞାନରେ ହେଉ ବା ଅଜ୍ଞାନରେ ହେଉ, ଏହା ଫଳରେ ନାରୀ ପ୍ରତି ପ୍ରେମ ପରିବର୍ତ୍ତେ ବ୍ୟର୍ଥତାରୁ

ଘୃଣା ଜନ୍ମୁଚି ଏବଂ ଗୋଟିଏ ମିଥ୍ୟା ତପସ୍ୱୀ ଆଦର୍ଶ ଜାତ ହେଉଚି । ଯୌନ ବିକୃତି ବଢ଼ୁଚି । ନାନା ଅଶାନ୍ତି, ବିପ୍ଳବ, ବିବାଦ ଏହି ବିକୃତିରୁ ଜାତ । ଜାଣ, ପାଶ୍ଚାତ୍ୟ, ଦେଶରେ ଏବେ ଯୁବତୀଙ୍କ ସମଲିଙ୍ଗିକ ମୈଥୁନ ବୈଧାନିକ କରିବା ପାଇଁ ଗୁପ୍ତ ଆନ୍ଦୋଳନ ଚାଲିଚି । ନାରୀମାନେ ଆନ୍ଦୋଳନ କରୁଚନ୍ତି, ସ୍ୱାମୀମାନେ ଯୌବନ ତଳେ ଅଙ୍ଗ କିଛି ଚିହ୍ନ ଦେବେ ନାହିଁ । ସେଠି ପ୍ରତ୍ୟେକ ଦୁଇ ମିନିଟରେ ଗୋଟିଏ ନାରୀଧର୍ଷଣ । ପ୍ରତ୍ୟେକ ଦଶ ସେକେଣ୍ଡରେ ଗୋଟିଏ ଡକାୟତି ବା ଚୋରି ଏବଂ ପ୍ରତ୍ୟେକ ମିନିଟରେ ଗୋଟିଏ ହତ୍ୟା । ନାରୀଠାରୁ ଯେତିକି ଦୂରରେ ଥିଲେ କାମ ପ୍ରେମରେ ପରିଣତ ହୁଏ, ତାଠାରୁ ଅଧିକ ଦୂରରେ ଏବଂ ଅଧିକ ନିକଟରେ ରହିଲେ କାମ ବିକୃତ ରୂପ ଧାରଣ କରେ ।

ବଟୁ ବାବୁ କହିଲେ, ଆମ ବୟସବେଳେ କିନ୍ତୁ ଏପରି ଅବସ୍ଥା ନ ଥିଲା । ମୁଁ ତ······

ସମରେନ୍ଦ୍ର ଅର୍ଥପୂର୍ଣ୍ଣ ସ୍ୱରରେ ପଚାରିଲେ, ପ୍ରେମ କରି ?

ବଟୁ ବାବୁ ଲଜ୍ଜିତ ସ୍ୱରରେ କହିଲେ, ହଁ ।

ପ୍ରସନ୍ନ ବାବୁ ଆନନ୍ଦିତ ସ୍ୱରରେ କହିଲେ, ବାହାରେ ଖୁଣ୍ଟି । କୁହ କୁହ; ତମ ପ୍ରେମ କଥା ଆଜି କୁହ ।

ବଟୁ ବାବୁ ଘର ଛାତକୁ ଟିକିଏ ଅନାଇ ଗଳାଖଙ୍କାର ଆରମ୍ଭ କଲେ······

···ମୋ ବାପା ଥିଲେ ହାକିମ ଦଶରଥ; କିନ୍ତୁ ତାଙ୍କର ଇଚ୍ଛା ଥିଲା ମୁଁ ଅନେକ ପାଠ ପଢ଼ି ବଡ଼ଲୋକ ହେବି । ସେ ଅମୁକଙ୍କ ପିତାରୂପେ ଅମର ହେବେ । ହେଲେ ତାଙ୍କ ଇଚ୍ଛାକୁ ମୋର ଲକ୍ଷ୍ୟ ନ ଥିଲା ! ବାପାଙ୍କର ମୁଁ ଏକ-ମାତ୍ର ସନ୍ତାନ । ସେ ତାଙ୍କ - ଇଚ୍ଛା ପୂରଣ କରିବାକୁ ମୋତେ ଜାବୁଡ଼ି ଧରି ଥାଆନ୍ତି । ବାପାଙ୍କ ମନରେ ଆଘାତ ଦେବାକୁ ମୋ ମନ ବଳୁ ନ ଥାଏ । ରାତି ଦିନ ଲାଗି ପାଠ ପଢ଼ୁଥାଏ; କିନ୍ତୁ ମୋର ଶକ୍ତି ବା କେତେ ! ଶୀଘ୍ର ଶୀଘ୍ର ପାଶ କରିଯିବି ବୋଲି ବାପା ବି ମୋତେ ଖୁବ୍ ଅଳ୍ପ ବୟସରେ ଉଚ୍ଚ ଶ୍ରେଣୀରେ ନା’ ଲେଖାଇ ଦେଇଥାଆନ୍ତି । ତେର ବର୍ଷ ବେଳକୁ ମାଟ୍ରିକ ଫାଷ୍ଟ କ୍ଲାସ । ରାତି ଦିନ ପଢ଼ି ପଢ଼ି ପରୀକ୍ଷା ଠିକ୍ ଦୁଇଟି ଦିନ ଥାଏ, ହେଲି ଜର । ସେ ବର୍ଷ

ଆଉ ପରୀକ୍ଷା ଦେଇ ପାରିଲି ନାହିଁ । ଏମିତି ତିନୋଟି ବର୍ଷ ପରୀକ୍ଷା ଦେଇପାରିଲି ନାହିଁ । ଚତୁର୍ଥ ବର୍ଷ କୌଣସି ମତେ ଜ୍ୱରରେ ପରୀକ୍ଷା ଦେଇ ପାସ୍ କରିଗଲି । ପାସ ଖବର ଶୁଣି ବାପାଙ୍କ ଦୁଇ ଆଖିରୁ ଖାଲି ଖୁସି ଝରିଲା । ପରିଶ୍ରମ ପରେ ମୋ ଦେହ ଏକଦମ୍ ଶୁଖି ଯାଇଥିଲା । ସେ ଜକୁ କହିଲି, ମୁଁ ଆଉ ପଢ଼ିପାରିବି ନାହିଁ; କିନ୍ତୁ ବାପା କିଛି ଶୁଣିଲେ ନାହିଁ, କଲେଜରେ ନାଁ ଲେଖାଇ ଦେଲେ । ବାଧ୍ୟ ହୋଇ ପଢ଼ିଲି; କିନ୍ତୁ ଆଉ ଏ ପରୀକ୍ଷା ଦେଲିନି ଦୁଇଟି ସେମିତି ଜର । ବାପା ମଧ୍ୟ କିଛି କହିପାରନ୍ତି ନାହିଁ । କାରଣ ଦେଖନ୍ତି ତ ମୁଁ ପରିଶ୍ରମ କରୁଛି; କିନ୍ତୁ ତାଙ୍କ ମନ ଯାହା ହୁଏ ମୁଁ ବୁଝି ପାରୁଥାଏ…

ପ୍ରସନ୍ନ ବାବୁ ପଚାରିଲେ, ଆଚ୍ଛା ବଡ଼ ବାବୁ ପଢ଼ା ଛାଡ଼ିବା ପରେ ଆଉ କେବେ ଏମିତି ଜର ହୋଇଥିଲା ଆପଣଙ୍କୁ ?

— ନା, ଆଶ୍ଚର୍ଯ୍ୟ ।

ଏ କଅଣ ବୁଝିଲେ ? ବାପାଙ୍କ ଆଦର୍ଶ ତୁମ କ୍ଷମତା ବାହାରେ ହୋଇ ତୁମେ ନିଜେ ସେ ଆଦର୍ଶ ହାସଲ ପଥରେ ବାଧା ସୃଷ୍ଟି କରୁଥିଲ, ତୁମ ଅଜ୍ଞାତରେ ଅବଶ୍ୟ । ଏପରି ବାଧା ସୃଷ୍ଟି କରୁଥିଲ ଯେଉଁଥିରେ ତୁମ ଦୋଷ ନ ରୁହେ ।

— ତୁମ ଶାସ୍ତ୍ର ଅନେକ ଉଦ୍ଭଟ କଥା କୁହେ । ଛାଡ଼ ସେ କଥା । ତା ପରେ କଅଣ ହେଲା ଶୁଣ । ଯେଉଁ ବର୍ଷ ମୁଁ ଶେଷ ପରୀକ୍ଷା ଦେବି ସେ ବର୍ଷ ବୟସ ପ୍ରାୟ ମୋର କୋଡ଼ିଏ । ପରୀକ୍ଷା ଚିନ୍ତାରେ ଦେହ ମୋର ଶୁଖି କଳାକାଠ ପଡ଼ି ଯାଇଥାଏ । ପରୀକ୍ଷା ଥାଏ ଆଉ ଅଳ୍ପ ଦିନ; କିନ୍ତୁ ବହିରେ ଆଦୌ ମନ ଲାଗୁ ନ ଥାଏ । ବହି ଖୋଲିବା ମାତ୍ରେ ମନଟା କେମିତି ଉଦାସ ହୋଇ ଯାଉଥାଏ । ସବୁ ବୃଥା ମନେ ହେଉଥାଏ । ଛାତି ଭିତରଟା ଫାଙ୍କା ଫାଙ୍କା ଲାଗୁଥାଏ । ବିନା କାରଣରେ ଖାଲି କାନ୍ଦ ମାଡ଼ୁଥାଏ । ଠିକ୍ ଏଇ ସମୟରେ ~~ଆମ ଘରକୁ~~ ଲାଗି ଗୋଟିଏ ଭଡ଼ା ଘରରେ ରହିଲେ ବାପାଙ୍କର ବାଲ୍ୟବନ୍ଧୁ ଯୁଗଳ ବାବୁ, ତାଙ୍କ ବାପା ।

ଘର ଆଡ଼କୁ ପୁଣି ଟିକିଏ ଚାହିଁ ଯଥାସମ୍ଭବ ଆସ୍ତେ ବଡ଼ ବାବୁ କହିଲେ, ତାଙ୍କ ବୟସ ସେତେବେଳେ ଥିଲା ଚଉଦ । ଦେଖିବାକୁ ସୁନ୍ଦରୀ ନ ଥିଲେ; କିନ୍ତୁ ସେତେବେଳେ ଆଖି କାନ ଆଦିକୁ ତ ଅଚ୍ଛନ୍ନ କରି ରଖିଥାଏ ଗୋଟିଏ ମାତ୍ର

କାମନା । ପ୍ରେମ ପାଇଁ ତ ମନ ବ୍ୟାକୁଳ । ସେଇ ରୂପ ଯେତେବେଳେ ଅପସରି ଭଳି ମନେ ହେଲା । ଆଉ ପଢ଼ିବି କଅଣ । ବହି ଖୋଲିଲି ବେଳକୁ ତ ସେଇ ରୂପ, ସେଇ ହସ, ସେଇ ବୁଲି ଆଖି ସାମନାରେ ଖେଳିଗଲା । କେତେ ଯେ କବିତା ଲେଖିଛି, ମନେ ଲେଖିବାକୁ ଚେଷ୍ଟା କରିଛି । ଆରେ ଭାଇ, ଦିନେ ସେ କବିତା ଖାତାଟି ବାପାଙ୍କ ହାବୁଡ଼ରେ ପଡ଼ିଗଲା । ପ୍ରକାଣ୍ଡ ମୋଟା ଖାତା, କବିତାରେ ପୂର୍ଣ୍ଣ । ବାପା ତାକୁ ଅନେଇ ତ ବସିଚନ୍ତି, ଆଖିରୁ ପାଣି ଗଡ଼ି ଯାଉଛି । ମୁଁ ଘରଭିତରକୁ ଯେମିତି ପଶିଗଲି, ଖାତା ରଖିଦେଇ କହିଲେ, ତୁ ଏସବୁ ତ ଲେଖି ଖାତା ଭରତି କରି ଦେଇଚୁ, ତା ବେଳକୁ ତ ଜର ଅଛୁନାହିଁ ! ମୁଁ ତ ଦନ୍ତ ଚିଲଟାଏ ମାରି ଦଉଡ଼ିଲି । ତିନି ଦିନ ବାପାଙ୍କୁ ଦେଖା ଦେଇନାହିଁ ତା ପରେ । ସେ ଯାହା ହେଉ, ପଢାରେ ଆଉ ମନ ଲାଗିଲା ନାହିଁ । ମନ ଭାରି ଅଥୟ ହେବାକୁ ଲାଗିଲା । ମନ ହେଉଥାଏ ମନ ଖୋଲି ତାଙ୍କୁ ସବୁ କହି ଦେବାକୁ; କିନ୍ତୁ ସାହସ ବାନ୍ଧୁ ନ ଥାଏ । ସେ କଅଣ ମୋ ପରି ଅସୁନ୍ଦରକୁ ଭଲ ପାଇବେ ? ମୋର କି ଗୁଣ ଅଛି ଯେ ମୋତେ ବିବାହ କରିବାକୁ ରାଜି ହେବେ ? ଏମିତି ନାନା ଚିନ୍ତା ଭିତରେ ମନ ପଡ଼ି ଦେହ ଆହୁରି ଦିନକୁ ଦିନ ଖରାପ ହେବାକୁ ଲାଗିଲା । ରୋଜ ଲୁଚି ଦର୍ପଣ ସାମନାରେ ଘଣ୍ଟା ଘଣ୍ଟା ଧରି ଛିଡ଼ା ହୁଏ; କିନ୍ତୁ ନିଜ ଚେହେରା ଦେଖି ନିଜ ଉପରେ ଭାରି ଘୃଣା ହୁଏ, ବାପା ବୋଉଙ୍କ ଉପରେ ଭାରି ରାଗ ହୁଏ । ସେମାନେହିଁ ଏହା ପାଇଁ ଦାୟୀ । ଆଖି କୋଠରଗତ ହେଲା, ଗାଲ ପଶିଗଲା । ଘରୁ ବାହାରିବାକୁ ଲାଜ ମାଡ଼ିଲା । ତାଙ୍କୁ ଖାଲି ଦୂରୁଁ ଦେଖୁଥାଏ । ଟିକିଏ ଭଲ ଖାଇ ଯେ ଚେହେରାଟା ଭଲ କରିବି ତା ପାଇଁ ପଇସା ନାହିଁ, କି ବାପାଙ୍କ ସେ ଆଡ଼କୁ ଦୃଷ୍ଟି ନାହିଁ ।

ଚେହେରା ଏମିତି ଦିନକୁ ଦିନ ଶୁଖି ଯିବାରୁ ବାପା ବୋଉଙ୍କ ଚିନ୍ତେଣି ହେଲା । ଦିନେ ରାତିରେ ଶୁଣିଲି ବୋଉ ବାପାଙ୍କୁ କହୁଚି, ଶୁଣୁଚ, ବଟକୁ ଦେଖିଲଣି ଆଜିକାଲି ? ପୁଅଟା ଖଟି ଖଟି କଳାକାଠ ପଡ଼ିଗଲାଣି ?

ବାପା କହିଲେ, ନା ହୋ ନା, ସେ କିଛି ନୁହେଁ । ବୟସ ଦୋଷ, ଟୋକାଛୁଆ ବଢୁଚି । ଏ ବୟସରେ ସେମିତି ହୁଏ । ପଢ଼ି ପାସ୍ କରୁ, ବଡ଼ ଚାକିରି କରୁ, ଦେଖିବ ।

ବୋଉ କହିଲା, ନା, ଏ ବୟସ ନୁହେଁ । ପୁଅଟା ତ ମୋଟେ ଖାଇବାକୁ ପାଉନି । ଟିକିଏ ଦୁଧ ଖାଆନ୍ତା । ସେ କ୍ଷମତା ତ ନାହିଁ । ଅଣ୍ଟାରେ ତ ନାହିଁ ଧନ । ଯେତିକି ହେଲା ସେତିକି ଥାଉ ।

କ୍ଷମତା କଥାରେ ବାପାଙ୍କ ପୌରୁଷକୁ ବାଧିଲା । ସେ ଶଢ଼ ଉଠି କହିଲେ, ବୁଝିଲୁ ବଡ ବୋଉ, ମୋ ବାପା ଥିଲେ ଭାରି ଦରିଦ୍ର; କିନ୍ତୁ ତାଙ୍କର ଇଚ୍ଛା ଥିଲା ମୁଁ ଡାକ୍ତର ହେବି । ମୁଁ କିନ୍ତୁ ତାଙ୍କ ଇଚ୍ଛା ପୂରଣ କରି ପାରିଲି ନାହିଁ; କିନ୍ତୁ ଧନ ପାଇଁ ବାପା କେବେହେଁ ପଛେଇ ନାହାନ୍ତି । ମନ ଥିଲେ ଧନ ଆସିବ । ମୁଁ ମୋର ସବୁ ଚେଷ୍ଟା କରି ପୁଅକୁ ବଡ଼ କରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଭାଗ୍ୟକୁ କିଏ ଜାଣିଛି ? ନ ହେଲେ ତୁମ ହାତ ଧରି ଥାଆନ୍ତି···

ସେଦିନ କଥାଟା ସେତିକିରେ ରହିଲା । ବାପା ବୋଉ କିନ୍ତୁ ଘୋର ଚିନ୍ତାରେ ପଡ଼ିଲେ ମୋ ସ୍ୱାସ୍ଥ୍ୟ ପାଇଁ । ମୁଁ ମଧ୍ୟ ମୋ ଚେହେରା ପାଇଁ ବଡ଼ ଭାଳେଣିରେ ପଡ଼ିଲି । ପୁଅ ଚେହେରା ଯେତେ ଖରାପ ହେଉ ବାପା ମାଙ୍କୁ ସୁନ୍ଦର । ତାଙ୍କୁ ଯେତେବେଳେ ଆଖିକୁ ଖରାପ ଦିଶିଲାଣି ନ ଜାଣି କେତେ ଖରାପ ହୋଇଛି । ଚେହେରା ଟିକିଏ ଭଲ ହେଲେ ସିନା ଯା ହୁଅନ୍ତା । ଚେହେରା ତ ବିକାଶ ଲଭିବା ପଛେ ଥାଉ ପଛେଇ ପଛେଇ ମାଙ୍କଡ଼ ଅଡ଼କୁ ଗତି କରିବାରେ ଲାଗିଲା ।

ପରୀକ୍ଷା ଆସିଗଲା । ମାତ୍ର ଛଅଟି ଦିନ ଯେତେବେଳେ ଅଛି ସେତେବେଳେ ହେଲା ଜର, ଭାରି ଜର । ବାପା ତ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ । ଯାହା ସଞ୍ଚିଥିଲେ ସାମାନ୍ୟ ବଡ଼ ବଡ଼ ଡାକ୍ତର ଡାକି ସାରିଲେ । ବ୍ୟାକୁଳ ଭାବରେ ଭଗବାନଙ୍କୁ ଡାକୁ ଥାଆନ୍ତି ପରୀକ୍ଷା ଦୁଇ ଦିନ ଆଗରୁ ଜର ଛାଡ଼ିଯିବା ପାଇଁ । ମୋ ଦେହ କଥା ଭାବି ଭାବି ବୋଉକୁ ମଧ୍ୟ ଜର ହେଲା । ଏତିକିବେଳେ ଆମ ଦୁହିଙ୍କ ସେବା କରିବାକୁ ଲାଗିଲେ ସେ । ପରୀକ୍ଷା ସରିଲା ବେଳକୁ ଜର ଛାଡ଼ିଲା । ସେତେବେଳେ ମୁଁ ଶଯ୍ୟାଶାୟୀ । ବୋଉ କହିଲା, ନା, ପୁଅ ଆଉ ପଢ଼ିବ ନାହିଁ । ବାପା ହତାଶ ଭାବରେ କହିଲେ, ଥାଉ, ଯାହା କପାଳରେ ନାହିଁ ମିଛରେ ବାଡ଼େଇ କଷ୍ଟ ହେଲେ କଅଣ ହେବ ।

ସତ କହୁଛି ବାପାଙ୍କ କଥା ଶୁଣିବା ମାତ୍ରେ ଦେହରେ ଅନେକ ବଳ ପାଇଲି । ବାପାଙ୍କର ଏମିତି କ୍ଷମତା ନ ଥିଲା ଯେ ପଥ୍ୟ ପାଇଁ କିଛି

ଫଳ ଆଣିବେ । ଏଥିପାଇଁ ବାପା ବୋଉ ଯେ କାନ୍ଦନ୍ତି କେତେ କଷଣ କହିବ ।

କହୁ କହୁ ବଡ଼ ବାବୁଙ୍କ ଆଖି ଟିକିଏ ଛଳଗଲା । ଆଖି ପୋଛୁ କହିଲେ, ବାପା ବୋଉ ଆଜି କେହି ନାହାନ୍ତି ବର୍ତ୍ତମାନ; କିନ୍ତୁ ତାଙ୍କ କଥା ମନେ ପଡ଼ିଲେ ମନଟା ଭାରି ଉଦାସ ଅଳସ ହୋଇ ଉଠେ । ମନରେ ଭାରି ଅସନ୍ତୋଷ ହୁଏ କାହିଁକି ବାପାଙ୍କ ଇଚ୍ଛାଟା ପୂରଣ କରି ପାରିଲି ନାହିଁ । ତୁମ ଶାସ୍ତ୍ର ଯାହା କହୁ ପ୍ରସନ୍ନ ବାବୁ, ପିତା ମାତାଙ୍କ ପ୍ରେମ ଏ ଜଗତରେ ସବୁ ପ୍ରେମଠାରୁ ଅନାବିଳ । ବିଶେଷତଃ ବୋଉର ।

ରାମ ବାବୁ ପଚାରିଲେ, ତା ପରେ ?

—ତା ପରେ, ପଢ଼ା ତ ଛୁଟିଲା ପ୍ରତ୍ୟେକ ଦିନ ଖବର କାଗଜ ଦେଖି ଚାକିରି ଖୋଜେ ଓ ଦରଖାସ୍ତ ଲେଖେ । କଟକକୁ ନେଇଯାଇ ବାପା ଦରଖାସ୍ତ ବୁଝିକି ପଠାନ୍ତି । ବାପା ତାଙ୍କର ସାମାନ୍ୟ ଅଣ୍ଟୁରୁ ପ୍ରତ୍ୟେକ ମାସରେ ୭ଟି ଟଙ୍କା ଖବର କାଗଜ ପାଇଁ ବ୍ୟୟ କରନ୍ତି । ସେତିକି ନୁହଁ, ଯୁଦ୍ଧ ପାଇଁ ପ୍ରତ୍ୟେକ ମାସରେ କେତେଟି ଟଙ୍କା ଚାନ୍ଦା ଦେବେ ବୋଲି ମଧ୍ୟ ଗଭର୍ଣ୍ଣରଙ୍କୁ ଦରଖାସ୍ତ କଲେ । ଉଦ୍ଦେଶ୍ୟ, ବଡ଼ ବଡ଼ ଇଂରାଜୀ ସାହେବଙ୍କ ଅନୁଗ୍ରହ ପାଇଲେ ପୁଅର ବଡ଼ ଚାକିରି ହେବ । ଦେଶ ତା ପରେ ସ୍ୱାଧୀନ ହେଲା । ସେ ଚାନ୍ଦାର ମୂଲ୍ୟ କିଛି ରହିଲା ନାହିଁ; କିନ୍ତୁ ସେ ତ୍ୟାଗର ମୂଲ୍ୟ ? ବଡ଼ ବାବୁ ପୁଣି ଆଖି ପୋଛିଲେ ।

ବାପା ନିଇତି କଚେରୀ ଫେରି ବୋଉକୁ ମୋ ଦେହ କଥା ପଚାରନ୍ତି ଓ ଚିନ୍ତାରେ ଦୁହେଁ ବସନ୍ତି । ଏହାପରେ କିଛିଦିନ ଅଳ୍ପପରେ ମୋର ସ୍ୱାସ୍ଥ୍ୟ ବାପା ବୋଉଙ୍କର ନୂତନ ଉଦ୍‌ବେଗ ସୃଷ୍ଟି କଲା । ଏଥର ମୋର ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଭୋଗ, ଉନ୍ନତି ପାଇଁ । ଦୁଇଟି ମାସ ଭିତରେ ମୋର ସ୍ୱାସ୍ଥ୍ୟର ଉନ୍ନତି ମୁଁ ନିଜେ ଦେଖି ଆଶ୍ଚର୍ଯ୍ୟ ହୋଇଗଲି ।

ବୋଉ ଆଶ୍ଚର୍ଯ୍ୟ ହୋଇ ଦିନେ ରାତିରେ ବାପାଙ୍କୁ କହିଲା, ବଡ଼କୁ ଦେଖିଲଣି ?

ବାପା ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ମୁଁ ଯାହା ସନ୍ଦେହ କରୁଥିଲି ସତ ହେଲା ।

କୋଉ କଣ ? ବୋଉ ଅସ୍ପଷ୍ଟ ସ୍ୱରରେ ପଚାରିଲା ।

ବାପା ଚଡ଼୍ ଚଡ଼୍ କହିଲେ, ସବୁ ଏ ସ୍ୱପ୍ନର କାଣ୍ଡ । ପୁଅକୁ ଖୁଆଇ ପିଆଇ ହାତ କରିବାକୁ ଖୋଜି ତୁମେ ତ କେତେବାର କହିଛ ବଡ଼ ଚାଙ୍କ ଘରେ ଜଳଖିଆ ଖାଇ ଆସିଛି । ଏବେ ଫଳ ପାଅ ।

ବୋଉ କହିଲା, ତୁମେ ତ ଖାଇବାକୁ ଦେଇ ପାରୁ ନା, ଯାହା ହେଉ ପୁଅ ମୋର ଖାଇ ବଞ୍ଚିଛି ତ ଆଜି ।

ବାପା ହଠାତ୍ ଉତ୍ତେଜିତ ହୋଇ ବୋଉକୁ ମାରିବାକୁ ଉଠିଲେ ।

ବୋଉ ପାଟିକରି ଉଠିଲା, କଅଣ ମାରିବ କି ମୋତେ ?

ମୁଁ ସବୁ ଶୁଣୁଥିଲି, ଡେଇଁ ଯାଇ ବାପାଙ୍କ ହାତରୁ ବାଡ଼ିଟା ଛଡ଼ାଇ ନେଇ କହିଲି, ଆଜେ···ଆଜେ···ମାଡ଼ । କହୁଁଦେଇ ରୁନ୍ଧି ଆସିଲା ଗଳାରେ । କଅଣ କରିବ ପ୍ରସନ୍ନ ବାବୁ ! କୁନି ମନସ୍ତତ୍ତ୍ୱ କଅଣ କହୁଛି ବୁଝ ତ । ଭାବିଥିଲି ବୋଉ ଭାରି ଖୁସି ହେବ ମୋ କଥାରେ, ଅଉ ବାପା ଭାରି ରାଗିବେ; କିନ୍ତୁ ଘଟି ଗଲେ ପଡ଼ଲକୁ ନେଇ ଲୁଣ୍ଠିଦିବାପରେ ଶୁଣିଲି ବୋଉ କହୁଛି, ଦେଖିଲ ପୁଅ କଥାକୁ ! ଯାହା ତୁମେ କହୁଥିଲ ସତ । ଏ ପୁଅ କଅଣ ଆମକୁ ପୋଷିବ ? ଆଜି ନୁହଁ ଆଉ ନୁହଁ, ବଡ଼ ଚାକିରି କରୁ, ଚାଲ ଆମର ଗାଁରେ ବସିବା, ତୁମ ପିନ୍ଧିବାକୁ ବେଳ ତ ହେଲାଣି । ବାପାଙ୍କୁ ହାତ ଉଠାଏ ଯିଏ ସେ କି ମଣିଷ ହବ । ଏମିତି ବାପ ପୁଣି ! ବୋଉ ଭଇଁ ଭଇଁ ହୋଇ କାନ୍ଦ ପକାଇଲା ।

ବାପା ହସି କହିଲେ, ନା ହୋ ନା, ପୁଅ କଥା ଦେଖି ମୋ ମନ ଭାରି ଖୁସି । ପୁଅତ ମୋତେ ହାତ ଉଠାଇ ନାହିଁ, ମୋ ହାତରୁ ବାଡ଼ିଟା କାଢ଼ି ନେଇଛି । ଜୀବନରେ ମୁଁ ତୁମକୁ ସୁଖ ଦେଇ ପାରିଲି ନାହିଁ । ଆଉ କେତେ ଦିନ ବଞ୍ଚିବି ବା; କିନ୍ତୁ ମୋ ଅନ୍ତେ ପୁଅ ତୁମକୁ ଫିଙ୍ଗିଦେବ ନାହିଁ । ଯିଏ ବୋଉ ପାଇଁ ବାପାକୁ ଏତିକି କଥା କହିପାରେ ସେ କେବେହେଁ ବାହା ହୋଇ ବୋଉକୁ ଠେଲିଦେଇ ପାରିବ ନାହିଁ । ମୁଁ ଜାଣେ ଆଜି ନିଶ୍ଚିନ୍ତ ହେଲି । ପୁଅ ମୋର ବଞ୍ଚିଥାଉ ।

ଅନେକକ୍ଷଣ ଦୁହେଁ ନୀରବ ରହିବା ପରେ ବାପା କହିଲେ, କିନ୍ତୁ ପୁଅ ଏମିତି କାହିଁକି ବାହାହେବ ? ମୁଁ ଦୂତଙ୍କୁ ଖାଲି ସଫା ସଫା କହିବି କାଲି ।

ବୋଉ କହିଲା, ପୁଅ ତ ମାସେହେବ ଘରେ ଦିନାବେଳା ହାତ ଖାଉ ନାହିଁ, କି କମିଆ ଜାଣେ ତୁମ ସାଙ୍ଗ କେଜାଣି !

ପରଦିନ ଦୁର୍ଭାଗ୍ୟକୁ ହେଉ ବା ସୌଭାଗ୍ୟ ହେଉ ଯୁଗଳ ବାବୁ ଆମ ଘରକୁ ସକାଳୁ ଆସିଲେ । ବାପା ତ ତାଙ୍କୁ ଦେଖି ଅଗ୍ନିଶର୍ମା । କହିଲେ, ଯୁଗଳ ତୁ ଏତେ ନୀଚ ମୁଁ ଜାଣି ନ ଥିଲି । ଘରେ ବଢ଼ିଲା ଝିଅ ରଖି···କଲଟିଆ ଖୋଇ···'

ଯୁଗଳ ବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ କଅଣ କହୁଚୁ ତୁ ! ମୁଁ ତ ଦିନେ ହେଲେ ତାଙ୍କୁ ଖାଇବାକୁ କହି ନାହିଁ । ବରଂ ଅବେଳ ନିଇତି ଆମ ଘରକୁ ଯାଏ; କିନ୍ତୁ ତା ଫଳ ଏଇ ଦେଏଖ୍ । ଯୁଗଳ ବାବୁ ବାପାଙ୍କ ହାତକୁ ଖଣ୍ଡେ କାଗଜ ବଢ଼ାଇ ଦେଲେ । ବାପା ସେ ଖଣ୍ଡ ପଢ଼ି କିଛି ବୁଝିପାରିଲେ ନାହିଁ ।

ଯୁଗଳ ବାବୁ କହିଲେ, ତୁମ ପୁଅରତ୍ନ ଲେଖିଛନ୍ତି, ଆଚାର୍ଯ୍ୟ ତୁମେ, ମୁଁ ଯେ ବାମନ । ମୋ କନ୍ୟାରତ୍ନ ତା ତଳେ ଲେଖିଚନ୍ତି, ଆଶା ଫଳିବ ହେ, ନୁହ ଉଚ୍ଛନ୍ନ । ଆହା କି ହୃଦୟର ପାଦ ଯୋଡ଼ା ହୋଇଛି !

—କଥା କଅଣ କି, ମୁଁ କବିତା ଲେଖିବାକୁ ଯାଇ ବହୁ କଷ୍ଟରେ ପ୍ରଥମ ଧାଡ଼ିଟି ଲେଖି ରଖିଥିଲି । ଫେରି ଦେଖିଲି ସେ କାଗଜ ଖଣ୍ଡିକ ନାହିଁ । ବର୍ତ୍ତମାନ ତାର ଉତ୍ତର ପାଇ ମୋ ମନ ତ କୁଣ୍ଢେମୋଟ ହୋଇଗଲା । ମୁଁ ତ ଆନନ୍ଦରେ ଆରପାଖ ଘରେ ନାଚିବାକୁ ଲାଗିଲି ।

ଯୁଗଳ ବାବୁ କହିଲେ, ଆହୁରି କାଣ୍ଡ ଶୁଣ । ମୋ ପୁଅ ଆଉ ତୋ ପୁଅ ଆଜିକି ମାସେ ହବ ପ୍ରେତର ଆହାର ଖାଉଛନ୍ତି । ଆମ ଘରକୁ ଲାଗି ଯେଉଁ କୋଠା ଅଛି ସେଠି ଜଣେ ବଙ୍ଗାଳି ଜମିଦାରର ପୁଅ ଥାଏ । ତାର ବାପାର ମାସେ ହବ କାଳ ହୋଇଯାଇଛି । ସେ ରୋଜ ଗାଧୋଇସାରି ପ୍ରେତ ଅହାର ରଖିଦେଇ ଆସେ । ଅତି ସୁନ୍ଦର ଅରୁଆ ବାସ୍ନାଳ ଭାତ, ନେଆଁଏ ଖଣ୍ଡି ଗୁଅଡିଅ, ଦହି, ନାନା ଫଳ, ସନ୍ଦେଶ ଇତ୍ୟାଦି । ଏମାନେ ନିଇତି ତାକୁ ଖାଇ ଆସନ୍ତି ।

ବାପା ହାଁ କରି ଶୁଣି ରହିଲେ । ବୋଉ ଘର ଭିତରେ କାନ୍ଦି ଛଟିଲା ।

ବାପା କହିଲେ, ମୁଁ କହୁଚି ବଡ ଦେହ ଏତେ ସୁନ୍ଦର ହେଲା କେମିତି ?

ବୋଉ ଘର ଭିତରୁ କାନ୍ଦି କହିଲା, ତୁମେ ବୁଢ଼ା ହୋଇ ଶୁଣୁଚ ନଅଣ, ଜଲଦି ଘଣ୍ଟିଚ ଡାକ, ପୂଜା କରୁ ।

ସାତଦିନ ପୂଜା ଚାଲିଲା । ସେଥିରେ ଗୁଡ଼ାଏ ଅର୍ଥ ନଷ୍ଟ ହେଲା । ପୂଜା ପରେ ବୋଉକୁ ମୋ ମନକଥା କହିଲି । ବୋଉ ଯାଇ ତାଙ୍କ ଘରେ ପ୍ରସ୍ତାବ କଲେ । ମୋ ଦେହର ଦିନ ପନ୍ଦରଟାରେ ଫୁଲିଗଲା ।

ପ୍ରସନ୍ନବାବୁ କହିଲେ, ବୁଝିଲି ତମେ ଠିକ କାରଣରୁ ତୁମର ସ୍ୱାସ୍ଥ୍ୟ ଭଲ ହେଲା । ଅସମ୍ଭବ ଆଦର୍ଶରୁ ମୁକ୍ତି, ଖାଦ୍ୟ ଓ ପ୍ରେମ···

ହରିବାବୁ କହିଲେ, ବର୍ତ୍ତମାନ କାହିଁକି ପୁଣି ତାଳପତ୍ର ହେଲ ? ପ୍ରେମ କଅଣ କମିଗଲାଣି କି ?

ବଡବାବୁ କହିଲେ, ନାନା ଦୁଶ୍ଚିନ୍ତା ମୋ ପୁଅଟା ପାଇଁ । ଆଜି ପାଠ ପଢ଼ିଲା ନାହିଁ । ମାଟ୍ରିକ ପାଶ କରିବା ପରେ ମୋରପର ଗୋଟିଏ ମାଛିମରା କିରାଣୀ । ପ୍ରେମରେ ପଡ଼ି ତାକୁ ରେଜଷ୍ଟ୍ରି କରି ବାହା ହୋଇସାରିଛି । କଅଣ କରିବି; ବାଧ୍ୟ ହୋଇ ତାକୁ ଘରକୁ ଆଣିଲି; କିନ୍ତୁ ଶାନ୍ତି ନାହିଁ । ଖାଲି ଅଦ୍ଭୁତ ହେଲା ପୁଅଟା । କେତେ ଆଶା କରିଥିଲି, ଗୋଟିଏ ବୋଲି ପୁଅ । ଯାଉ, ସବୁ ତାଙ୍କର ଇଚ୍ଛା !



# କଚେରୀ ପୁରୁଷ

ବଜାରରୁ ଦୁଇପଇସାର ଶାଗ କିଣିବାଠାରୁ ଆରମ୍ଭ କରି ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ସବୁଠି ସଂଗ୍ରାମ । ପ୍ରତ୍ୟେକ ଜୀବନ ପାଇଁ ସଂଗ୍ରାମ କରୁଛନ୍ତି; କିନ୍ତୁ ଗୋଟାଏ ଗୋଟାଏ ଲୋକ ଥାଆନ୍ତି, ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟାଏ ପରିହାସ ସଂଗ୍ରାମକୁ ଯେଉଁମାନେ ଏଡ଼ାଇ ଯାଆନ୍ତି । ମାରିବାକୁ ଆସିଲେ କୁହନ୍ତି, ମାରନା ମୁଁ ମଲିଣି । ଆମ କାହ୍ନୁବାବୁ ଏଇ ଧରଣର ଲୋକ । ଆମ କଚେରୀରେ କାହ୍ନୁବାବୁ ଆବାଳବୃଦ୍ଧ ସମସ୍ତଙ୍କର ଥଟ୍ଟା । ଯିଏ ଆଜି ବି ଚାକିରିରେ ଯୋଗ ଦେଇଛି ଅଳ୍ପ ସମୟ ଭିତରେ ସେ କାହ୍ନୁବାବୁଙ୍କର ନାତି ହୋଇଯାଏ, ଥଟ୍ଟା ପରିହାସ କରେ । କାହ୍ନୁବାବୁ ଚୌକି ଛାଡ଼ି ଉଠିଗଲେ ତାଙ୍କର କଚ୍ଛା ଧରି ଟାଣି ଦିଏ କିମ୍ବା ତାଙ୍କ ପିଠିରେ 'ଗଧ' ଲେଖି ଦିଏ । କାହ୍ନୁବାବୁ ସେଥିରେ କ୍ଷୁଣ୍ଣ ନ ହୋଇ ଆମୋଦ ପାଆନ୍ତି । ତାଙ୍କପ୍ରତି କାହାରି ଆକ୍ଷେପ ନ ଥାଏ । କାରଣ ସେ ନିଜର ଦକ୍ଷତା ଦେଖାଇ କାହାରି ପଦୋନ୍ନତି ପଥରେ କଣ୍ଟକ ନୁହନ୍ତି । ଚାକିରି ତାଙ୍କର ପ୍ରାୟ ତିରିଶ ବର୍ଷର ହେଲାଣି; କିନ୍ତୁ ସେ ଯେଉଁଠି ପ୍ରଥମେ ଆରମ୍ଭ କରିଥିଲେ ଆଜି ବି ସେଇଠି । ତାଙ୍କର କର୍ତ୍ତବ୍ୟ ପ୍ରତି ଅବହେଳା ଓ ଅପାରଗତା ଯୋଗୁଁ କେତେଥର ବାର୍ଷିକ ଦରମା ବୃଦ୍ଧି ବନ୍ଦ ରଖା ହୋଇଛି, କେତେଥର ସେ ସସ୍ପେଣ୍ଡ ହୋଇଛନ୍ତି, କେତେ କେତେ ଗାଳି ଖାଆନ୍ତି, ତଥାପି ସେ ସେଇ ଦରପୋଡ଼ା କାଠ । ନିଜର ଆର୍ଥିକ ଅବସ୍ଥା ଉନ୍ନତି କରିବାରେ କୌଣସି ଚେଷ୍ଟା ନାହିଁ । କୌଣସି ମତେ ସେ ଅଶିଟି ଟଙ୍କାରେ ଚଳାଇ ନିଅନ୍ତି । ସଂସାର ଭିତରେ ସ୍ତ୍ରୀ ଓ ଗୋଟିଏ ପୁଅ । ସ୍ତ୍ରୀକୁ ପାଖରେ ରଖିବାର କ୍ଷମତା ତାଙ୍କର କଦାପି ହୋଇନାହିଁ । ପୁଅଟି ଗାଁରେ ରହି ପାଠ ପଢ଼େ ଏ ବର୍ଷ ମାଟ୍ରିକ ପାସ୍ କରିଛି । ତାକୁ ନିଜ କାମରେ ମୁତୟନ କରି ପାରିଲେ ସେ ଚାକିରିରୁ ଅବସର ନେବେ, ଏହା ତାଙ୍କର ଆଶା ।

ଗୃହିଣୀ କଲ୍ପନାରୁ ସେ ତାଲାବନ୍ଦ କୋଠି ଓ ତାହା ଉପରେ ଖଣ୍ଡ ଝୁମ୍ପୁଡ଼ିଲା ଛପରର ଚିତ୍ର ଝୁଲି ଝୁଲି ଆସନ୍ତି । ଘରୁ ବାହାରି ଜୁହାର ହେଇ ହେଇ ଚାଲିବା ଗଳିଟାଏ ଅଧଘଣ୍ଟାଏ । ତା'ପରେ ରାସ୍ତାରେ ଯେତେ ମଣିଷ ବା ଚତୁଷ୍ପଦ ଦେଖିବେ ଅଛନ୍ତି, ପ୍ରତ୍ୟେକଙ୍କୁ ଜୁହାର କରିବାରେ ଅନ୍ତତଃ ପନ୍ଦର ମିନିଟ ଲେଖାଏ ଲାଗିଯାଏ । କଚେରିରେ ପହଞ୍ଚିବା ବେଳକୁ ହୋଇଯାଏ ଦଶ ବାରଟା । ଇତି ମଧ୍ୟରେ ହାକିମଙ୍କର ଦୁଇ ତିନିଥର ତଲବ ସରି ଯାଇଥାଏ । କଚେରିରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ପକାଇ ଚୌକିରେ ବସିବାବେଳକୁ ସାମନାରେ ଟେବୁଲ ଉପରେ ନାଲି ପେନସିଲରେ ଲେଖା ଗୋଟିଏ କାଗଜ ଦୃଷ୍ଟି ଆକର୍ଷଣ କରେ । ସେ ଖଣ୍ଡିକ ହେଡ୍‌କିରାଣୀଙ୍କ ଆଦେଶ ପତ୍ର, କାହ୍ନୁବାବୁ ପହଞ୍ଚିବା ମାତ୍ରେ ସାହେବଙ୍କୁ ଦେଖା କରିବେ । ଏହା ନିତ୍ୟନୈମିତ୍ତିକ ବ୍ୟାପାର । କାହ୍ନୁବାବୁ ସେ ଖଣ୍ଡିକ ଦେଖି ନ ଦେଖିଲା ପରି ଚଦରରେ ମୁଣ୍ଡ ଝାଳ ପୋଛି, ଚଦର ସଞ୍ଚାଳନ କରି ଟିକିଏ ବସି ଦମ ଦମ ଡୋଳାଇ ହେଉନ୍ତି । ହାକିମଙ୍କ ଚପରାସି ବା ହେଡ୍‌କ୍ଲର୍କ ନିଜେ ଆସି ତାଙ୍କୁ ଉଠାଇ ଦେଇ କହନ୍ତି, ଯାଆନ୍ତୁ ସାହେବ ସଲାମ ଦେଇଛନ୍ତି ।

କାହ୍ନୁବାବୁ ଆଉ ଗୋଟିଏ ଦୀର୍ଘଶ୍ୱାସ ପକାଇ ପାଟିରୁ ପାନ ବାହାର କରି ଫୋପାଡ଼ି ଦେଇ କୋଟଟା ଟିକିଏ ସଜାଡ଼ି ଦେଇ ଧୀରେ ଧୀରେ ଉଠିଯାଆନ୍ତି ସାହେବଙ୍କ ଦପ୍ତରକୁ । ସେଠି ପ୍ରାପ୍ୟ ଅଧଘଣ୍ଟାଏ ଧରି ଗାଳିମିଶ୍ରିତ ଉପଦେଶ ବାଣୀ ନିର୍ବିକାର ଚିତ୍ତରେ ମୁଣ୍ଡପୋତି ଠିଆ ହୋଇ ଶୁଣି ଅନେକଗୁଡ଼ିଏ କାମ କରିବାର ତାଲିକା ଧରି ଫେରି ସିଧା ଚାଲିଯାଆନ୍ତି ରେକର୍ଡ଼ ଘରକୁ । ରେକର୍ଡ ଘରଟି ଅନ୍ଧାରୁଆ । ସେ ଘରକୁ ପ୍ରାୟ କେହି ଯାଆନ୍ତିନାହିଁ । ଖୁବ୍ ଉଚ୍ଚ ଘର, କାଠ ବନ୍ଧ ଆକାରରେ ଭର୍ତ୍ତି । ସବୁ ପୁରୁଣା ନଥିପତ୍ର ରେକର୍ଡ ଏହି ଘରେ ଥାଏ । ସବା ପଛ ଆଡ଼କଟିରେ କେତେଗୁଡ଼ିଏ ରେକର୍ଡ଼ ଯୋଡ଼ାଇ ଗୋଟିଏ ମଣିଷ ଶୋଇବା ଭଳି ସ୍ଥାନ କରାହୋଇଛି । ତା ଉପରେ ପଡ଼ିଛି ଖଣ୍ଡିଏ ଛିଣ୍ଡା ମସିଣା । କେତେଗୁଡ଼ିଏ ମୋଟା ଖାତା ସ୍ତୁପାକାର କରି ତକିଆ ଭଳି ରଖା ହୋଇଛି । କାହ୍ନୁବାବୁ ସାହେବଙ୍କ ପାଖରୁ ଗାଳି ଖାଇ ଆସିବା ପରେ ସେଗୁଡ଼ିକ ହଜମ୍ କରିବା ପାଇଁ ସେଇଠି ଶୋଇପଡ଼ନ୍ତି । ତାଙ୍କର ଏ ଗୁପ୍ତ ଶୟନ ଶିବିର ତାଙ୍କର କେତେଜଣ ବନ୍ଧୁ ସାଥୀ ହାତ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଇତି ମଧ୍ୟରେ ଘୁମ ଆସ୍ତେ ତାଙ୍କୁ

ଖୋଜା ଚାଲିଥାଏ । ତାଙ୍କର କେଉଁ ନାତି କୁହେ, ସେ ଦେଉଛନ୍ତି ଅମୁକ ଅଫିସକୁ କହିବ କାମରେ; କଏ କୁହେ ଯାଉଛନ୍ତି ତମୁକ ଅଫିସକୁ କହିବ କଥା ଆଣିବା ପାଇଁ, ସେତିକବେଳେ ବାବୁ ନେପାଳ ହଜର ବାଟେ କହୁଥିବ କାହ୍ନୁବାବୁଙ୍କ ଖାଲି ଚୌକିକୁ ବଡ଼ ବଡ଼ ଆଖିରେ ଅନାଇ ଟେବୁଲ ଗୋଡ଼ରେ ପୁଣ୍ଡାରେ ବନ୍ଧା ହୋଇଥିବା ପୁଳାଏ କାଗଜରୁ ଖଣ୍ଡେ ଟାଣିଥିବ ପଛରେ କ୍ଷମାଏ କଅଣ ଲେଖି ପକାଇ ଡାକନ୍ତି ଚପରାଶିକୁ ।

—ଅଇଜ୍ଞା :

—ଯାଓ, ସାହେବଙ୍କୁ ଏଇଟି ଦେଇ ଆସ, ଯାଅ ।

ବୁଢ଼ା ଚପରାଶି ଅନୁର ହେଇ ଲାଇବାରେ ବ୍ୟସ୍ତ ପଡ଼େ । ସେ କାହ୍ନୁ-ବାବୁଙ୍କର ଘର ବନ୍ଧୁ । ଦୁହେଁ ଗୋଟିଏ ଗ୍ରାମରେ ପାଞ୍ଚଟଙ୍କା ଭଡ଼ାରେ ରହନ୍ତି । ସ୍କୁଲରୁ କଲେଜରୁ ଦୁହେଁ କେବେହେଁ ସ୍ତ୍ରୀ ପୁତ୍ର ସହ କଟକରେ ରହି ନାହାନ୍ତି କମ୍ପା ଛୁଟି ନେଇ କେବେହେଁ ଘରକୁ ଯାଇନାହାନ୍ତି । ବର୍ଷକୁ ଥରେ ମାତ୍ର ପୂଜା ଛୁଟିରେ ଘରୁ ପିବାକୁ ଅନୁମତି ମିଳେ, ସେତେ ଯାଆନ୍ତି । ଗାଁ ତାଙ୍କର କଟକଠାରୁ ବହୁ ଦୂରରେ, ଯିବା ଆସିବା ପାଇଁ ଅନ୍ତତଃ ପନ୍ଦରଟି ଟଙ୍କା ଆବଶ୍ୟକ ହୋଇପଡ଼େ । ଏତେ ଟଙ୍କା କେବେହେଁ ଏକା ଥରକରେ ଜୁଟେ ନାହିଁ, ଜୁଟିଲେ ମଧ୍ୟ ଛୁଟି ମିଳିବା ତାଠାରୁ ଅଧିକ ଦୁଃସାଧ୍ୟ ହୋଇପଡ଼େ । ଅଗତ୍ୟା ମୁହଁମାଡ଼ି ସେମାନେ କଟକରେ ପଡ଼ିଥାଆନ୍ତି ସେଇ ଗୋଟିଏ ଅଣଓସାରିଆ ସନ୍ତସନ୍ତିଆ କୁଡ଼ିଆଟିରେ ।

ଏଇ ହେଲା କାହ୍ନୁବାବୁଙ୍କର ନିତ୍ୟନୈମିତ୍ତିକ ଜୀବନ । ଏହାର ବ୍ୟତିକ୍ରମ କଦାପି ହୋଇନାହିଁ । ଥରେ ଅତ୍ୟନ୍ତ ବିରକ୍ତ ହୋଇ ହାକିମ ତାଙ୍କୁ ବୁଝାଇ ବାଟକୁ ଆଣିବାକୁ ଚେଷ୍ଟାକରି କହିଥିଲେ, ଦେଖନ୍ତୁ କାହ୍ନୁବାବୁ, ସମୟ ଥିଲା, ଯେତେବେଳେ ଇଂରେଜ ଶାସନ ଚାଲିଥିଲା, ସେତେବେଳେ କୃଏତ ଆପଣଙ୍କ କର୍ତ୍ତବ୍ୟ ପ୍ରତି ଅବହେଳା କ୍ଷମଣୀୟ ଥିଲା; କିନ୍ତୁ ଦେଶ ବର୍ତ୍ତମାନ ସ୍ୱାଧୀନ ହୋଇଛି । ଆମେ ଯଦି ଏତେବେଳେ କାମରେ ଫାଙ୍କି ଦେଉଁ, ତେବେ ଆମେଇ ମରିବା, ଏହା କଅଣ ବୁଝିପାରୁ ନାହାନ୍ତି ! କାହ୍ନୁବାବୁ ନୀରବରେ ଛିଡ଼ାହୋଇ ରହିଲେ । ତାଙ୍କର ଏହାହିଁ ସ୍ୱଭାବ, ଯେତେ ଗାଳି ଦିଅ ବା ଯେତେ ଉପଦେଶ ଦିଅ ବା ଯେତେ ପ୍ରଶଂସା କର ସବୁଥିରେ ସେ ନୀରବ । ହାକିମ ତାଙ୍କର ନୀରବ-ତାରେ ଆହୁରି ରାଗିଯାଇ ଟେବୁଲ ଉପରେ କଲମ କଚାଡ଼ି କହିଲେ, ଏ କଅଣ

ଡଙ୍ଗ ଆପଣଙ୍କର ? ସତ୍ୟ କହିଲେ ଉତ୍ତର ଦିଅନ୍ତୁ ନାହିଁ କାହିଁକି ? ହାକିମଙ୍କ ଆଡ଼କୁ ଟିକିଏ କାଣେଇ ଚାହିଁ କାହ୍ନୁବାବୁ କହିଲେ, ଆଜ୍ଞା, ବୁଝୁନାହିଁ କି, ସବୁ ବୁଝୁଛି। କିନ୍ତୁ କାମକୁ ମୋତେ ଛଡ଼ା ହେଉନାହିଁ, କଣ କରିବି।

—କାହିଁକି ?

—ମୁଁ କାମକଲେ ଦେଶର ଉନ୍ନତି ହେବ, ଦେଶର ଉନ୍ନତି ହେଲେ ଆମର ଉନ୍ନତି ହେବ ଏ କଥା ମୁଁ ବୁଝୁଛି; କିନ୍ତୁ ସାର୍, ମୋର ଜୀବନଟା ଚାଲି, ଟିକିଏ ସାମାନ୍ୟ ଦୁଃଖ କରି ଚାଲିନାହିଁ। ଦିନକପାଇଁ ପିଲାପିଲା ପାଖରେ ରହି ଆନନ୍ଦ ପାଇ ପାରିନାହିଁ......

ହାକିମ ନୀରବ ରହିଲେ। କିଛିକ୍ଷଣ ପରେ କହିଲେ, ହଉ ଯାଆନ୍ତୁ। ପେନ୍‌ସନ୍ କେବେ ନେବେ ?

—ଆଜ୍ଞା ଅନୁରୋଧ ଅଛି ସାର୍। ପୁଅ ଏଠି କଚେରିରେ ରହିବା ପାଇଁ ଖଣ୍ଡେ ଦରଖାସ୍ତ କରିଛି। ଦୟାକରି ଯଦି ଆପଣ ତାକୁ କାମରେ ଲଗାଇ ଦିଅନ୍ତେ ତେବେ ପେନ୍‌ସନ୍ ନେଇ ମୁଁ ଚାଲିଯାଆନ୍ତି।

—ହଉ ଯାଆନ୍ତୁ।

ହାକିମଙ୍କ ପିତା କିରାଣୀ ଥିଲେ। ସେ କି କଷ୍ଟରେ ତାଙ୍କୁ ଓ ତାଙ୍କର ଭାଇମାନଙ୍କୁ ପାଠ ପଢ଼ାଇ ମଣିଷ କରିଛନ୍ତି, ସେ ଜାଣନ୍ତି।

କାହ୍ନୁବାବୁଙ୍କ ପୁଅ ଅଜୟ ଚାକିରି ପାଇ ରହିଲେ; କିନ୍ତୁ କାହ୍ନୁବାବୁ ଆଉ କିଛିଦିନ ଚାକିରିରେ ରହିବା ପାଇଁ ପୁଣି ଦରଖାସ୍ତ କଲେ। ହେଡ଼ କିରାଣୀ ସେ ଦରଖାସ୍ତ ଉପରେ କାହ୍ନୁବାବୁଙ୍କ ବିପକ୍ଷରେ ଗୁଡ଼ାଏ ଲେଖି ମତଦେଲେ ଯେ କାହ୍ନୁବାବୁଙ୍କ ଭଳି ଅକର୍ମଣ୍ୟକୁ ଚାକିରିରେ ଆଉ ରଖିବା ଅନ୍ୟାୟ ହେବ।

ହାକିମ ଦରଖାସ୍ତ ପଢ଼ି ଆଶ୍ଚର୍ଯ୍ୟ ହୋଇ କାହ୍ନୁବାବୁଙ୍କୁ ଡକାଇଲେ। ବୁଢ଼ା ଚପରାସି ଧନୁ ଡକାଇବାର କାରଣ ବୁଝିପାରି କାହ୍ନୁବାବୁଙ୍କୁ ତାଙ୍କର ଶୀଟରୁ ଉଠାଇ ସାହେବଙ୍କ ପାଖକୁ ପଠାଇଲେ। କାହ୍ନୁବାବୁ ତରବର ହୋଇ ମୁହଁ ଧୋଇ ସାହେବଙ୍କ ପାଖରେ ହାଜର ହୋଇ ଛିଡ଼ାହେଲେ।

—କି କାହ୍ନୁବାବୁ ଇଏ କଣ ? ଏ ଦରଖାସ୍ତ କଅଣ !

କାହ୍ନୁବାବୁ ମାନିବ ।

—ଆପଣ ତେବେ କହୁଥିଲେ ଯେ ପୁଅ ଚାକିରି କଲେ ଅବସର ନେବେ । ଫେର ଏ କଅଣ !

—ଆଜ୍ଞା, ତା ତ ଭାବୁଥିଲି; କିନ୍ତୁ ମନ ବଳିଲା ନାହିଁ !

—ନା, ନା, ଆପଣଙ୍କ ବୟସ ଅନେକ ହେଲାଣି । ଚାକିରି ତ ତିରିଶି ବର୍ଷରୁ ବେଶୀ ହେଲାଣି । ଏଥର ଘରେ ବସି ଧର୍ମ କର୍ମରେ ମନ ଦିଅନ୍ତୁ । ପୁଅ ତ ଚାକିରି ପାଇଲା । ଏଥର ପୁଅକୁ ବାହାଦେଇ ଆନନ୍ଦରେ ନାତି ନେଇ ଘରେ ରହନ୍ତୁ । ଆଉ କେତେ କାହିଁକି ? —ଆଜ୍ଞା, ଏ କଥା ନୁହେଁ, ଅବସର ନେଲେ ଅଳ୍ପ କେତୋଟା ଦିନରେ ମରିଯିବି, ଘରେ ତ ଜମି ବାଡ଼ି ନାହିଁ ଯେ ଗୃହବାସ କରି କାଳ କଟିଯିବ, କଅଣ କରିବି ?

—କାହିଁକି, ଏତେ ଦିନ ଏକା ଏକା କାଳ କଟାଇଲେ, ଏଥର···

—ଆଜ୍ଞା, ସେହି ବୟସରେ ତା ହେବାର କଥା ତ ହେଲାନାହିଁ । ଆଜି ଏ ବୟସରେ···ସାର୍, ସତ କହୁଛି, ବିବାହ କରିଛି ସତ···କିନ୍ତୁ କିନ୍ତୁ···

—କଅଣ କିନ୍ତୁ ।

—ସାର୍ ଏତେଦିନ ଅଲଗା ଏକା ଏକା ରହି ରହି ଏ ଜୀବନଟା ଅଭ୍ୟାସରେ ପଡ଼ି ଗଲାଣି । ସ୍ତ୍ରୀ ତ ଅପରିଚିତା ଜଣେ ନାରୀ···ତା ସହିତ ବା ମୋର ସମ୍ପର୍କ କଅଣ ଅଛି, ଆଜି ପର୍ଯ୍ୟନ୍ତ କେବଳ ମାସକୁ ଥରେ ମନିଅର୍ଡରର ରସିଦରେ ତାର ଟିପଚିହ୍ନ ଦେଖିବା ଛଡ଼ା ତା ସହ ଦୁଇଥର ଦେଖା ହୋଇଛି । ଥରେ କେବଳ ଏଇ ପୁଅର ଅନ୍ନପ୍ରାସନକୁ ଦିନେ ଯାଇଥିଲି, ଆଉ ବୁରପ ଝିଅର ପୂଜା ଛୁଟିରେ ଜନ୍ମଦିନ ପାଇଁ ଗାଁକୁ ଯାଇଥିଲି । ଏତିକି ତ ସମ୍ପର୍କ । ସରକାର ଆଉ ବେଶୀ ସମ୍ପର୍କ ରଖିବାକୁ ଦେଇନାହାନ୍ତି ।

ହାକିମ ବୁଝିପାରିଲେ ପ୍ରସଙ୍ଗଟା କ୍ରମେ କାହ୍ନୁବାବୁଙ୍କ ମନ ଦେହକୁ ପ୍ରବେଶ କରୁଛି । ସେଇଠି ସେ ପ୍ରସଙ୍ଗ ବନ୍ଦ କରି, ଆଉ ବର୍ଷେ ଚାକିରି ସମୟ ବଢ଼ାଇ ଚିଠି ଲେଖିଦେଲେ ଉପର ମହଲକୁ ।

× × ×

ଏହାର ଅଳ୍ପଦିନ ପରେ କାହ୍ନୁବାବୁ ପୁଣି ଦୁଇ ଖଣ୍ଡ ଦରଖାସ୍ତ ନେଇ ହାଜର ହେଲେ ହାକିମଙ୍କ ପାଖେ । ଉପରେ ମାରଫତରେ ଦରଖାସ୍ତ ଡିଓଟି ସାହେବଙ୍କୁ

ଦେଖାଇ ଦେଇ ସେ ଛିଡ଼ାହୋଇ ରହିଲେ । ହାକିମ ତତ୍‌କ୍ଷଣାତ୍ ଉଚ୍ଚକି ପଡ଼ି କହିଲେ, ବେଶ, ବେଶ୍, ଅଜୟର ବାହାଘର କରୁଚ ନା, କେଉଁଠି ହେଉଚି ?

—ଆଜ୍ଞା, ଆମ ଚପରାସି ଧନୁର ଝିଅ ସହିତ ।

—ଭଲ, ଭଲ; କିନ୍ତୁ ତିନ ଦିନରୁ ବେଶୀ ଛୁଟି ଦେଇପାରିବି ନାହିଁ । ବଡ଼ି ସମସ୍ୟା । ଆରଆଡ଼େ ହାହାକାର, ଖୋଷଣ କାମ ପଡ଼ିଚି । କେବଳ ତୁମପାଇଁ ମୁଁ ତିନିଦିନ ଦେଇପାରେ ।

—ହଉ ସାର, ଯାହା ଆପଣଙ୍କର ଦୟା ।

ଅଜୟର ବିବାହ ହୋଇଗଲା । ବୋହୂକୁ ଗାଁ ଘରେ ଛାଡ଼ି ଅଜୟ, ଧନୁ ଓ କାହ୍ନୁବାବୁ ତିନିଦିନ ପରେ ଚତୁର୍ଥଦିନ ଦପ୍ତରରେ ଯୋଗ ଦେଲେ ।

ଏହାର ପ୍ରାୟ ବର୍ଷକ ପରେ ଦିନେ କାହ୍ନୁବାବୁ ଚିଠି ପାଇଲେ ତାଙ୍କର ଗୋଟିଏ ନାତି ହୋଇଛି । ସେଦିନ କାହ୍ନୁବାବୁଙ୍କର ଆନନ୍ଦ ଦେଖେ କିଏ । ଆନନ୍ଦରେ ସେ ସେଦିନ ସମ୍ବାଦଟି ସବୁଆଡ଼େ କହି ବୁଲିଲେ । ହାକିମଙ୍କୁ ମଧ୍ୟ କହି ଆସିଲେ । ହାକିମ ସମ୍ବାଦଟି ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । କାହ୍ନୁ-ବାବୁ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ସାର୍ ଅଜୟକୁ ଓ ମୋତେ ଆଉ ଗୋଟିଏ ଦିନ ଛୁଟି ଦବାକୁ ହେବ ସାର୍, ଥରେ ବଂଶଧରକୁ ଦେଖି ଆସିବା ପାଇଁ ।

—ହଉ ଯାଆନ୍ତୁ ।

ଅଜୟ ଏ ପର୍ଯ୍ୟନ୍ତ ଏ ସମ୍ବାଦ ପାଇନାହିଁ । କାହ୍ନୁବାବୁ ହାକିମଙ୍କ ପାଖରୁ ଛୁଟିର ଅନୁମତି ଆଣି ଅଜୟ ପାଖକୁ ଗଲେ । ଅଜୟ ସେତେବେଳେ ତାର ଚୌକିରେ ନ ଥିଲା । ଧନୁକୁ ପଚାରିବାରୁ ଧନୁ କହିଲା, ହେଁ, ହେଁ, ଜୋଇଁ ଠିକ୍ ତୁମରି ପରି, ସେ ପରା ତୁମ ଜାଗାରେ ଶୋଇଛି । ତୁମେ ସେ ଜାଗାକୁ ଯିବା ପୂର୍ବରୁ ସେ ଟିକିଏ ସେଠି କଡ଼ ଲେଉଟାଇ ଦିଏ ।

ଦୁହେଁଯାକ ହୋ ହୋ ହସି ଗଲେ ଶବ୍ଦର ଶିଖରକୁ । ଅଜୟକୁ ଠେଲି ଉଠାଇ କାହ୍ନୁବାବୁ କହିଲେ, ଚାଲ ବସାକୁ ଯିବା ।

ଅଜୟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କାହିଁକି ? ଏତେବେଳେ ?

—ଚାଲ, ବସାରେ କହିବି । ଏ ଆନନ୍ଦପୂର୍ଣ୍ଣ ସମ୍ବାଦଟି ଧୀରେ ସୁସ୍ଥେ କହିବା ତାଙ୍କର ଉଦ୍ଦେଶ୍ୟ ।

ବସାକୁ ଯିବା ବାଟରେ କାହ୍ନୁବାବୁ ବଜାର ସଉଦା କଲେ । ସନ୍ଧ୍ୟା ବେଳକୁ ବସାରେ ପହଞ୍ଚି କାହ୍ନୁବାବୁ ପୁଅକୁ କହିଲେ, ନେ, ତୁଣ୍ଡା ଟିକେ କିଣି ଆଣିଛି, ଦେଖ୍ ଖୋଲିଦେଇ ଜିନିଷପତ୍ର ସବୁ ବନ୍ଦୋବସ୍ତ କରି ରଖିଥା ମୁଁ ବଜାରକୁ ଯାଉଛି, ତୋ ବୋଉପାଇଁ ଗୁଣ୍ଡାଖି କିଣି ଆଣିବାକୁ ଭୁଲିଯାଇଛି ।

—କିନ୍ତୁ ଏ ଛୁଟି : ଏତେ ଜିନିଷ ପତ୍ର ! କଥା କଅଣ ?

—ନେ, ଏ ଚିଠି ପଢ଼ । ସବୁ ସଜାଡ଼ି ରଖିଥା । ମୁଁ ଏଇନେ ଆସୁଛି । ବଜାରକୁ ଯାଇ କାହ୍ନୁବାବୁ ଗୁଣ୍ଡାଖି, ନାତି ପାଇଁ ରଙ୍ଗୀନ ଜାମା, କଣ୍ଢେଇ କିଣି ଫେରି ଦେଖିଲେ ଅଜୟ ଚିଠିଟି ଧରି ସେମିତି ବସିଛି ଖଟ ଉପରେ । ଆଖିରୁ ତାର ଦୁଇଧାର ଲୁହ ଗଡ଼ିଯାଉଛି, ତାର ହୋସ ନାହିଁ ।

କାହ୍ନୁବାବୁ ତାକୁ ଠେଲି ଦେଇ କହିଲେ, କିରେ ଇଏ କଅଣ, ଗାଡ଼ି ଆସିବାକୁ ଆଉ ମୋଟେ ଅଧ ଘଣ୍ଟାଏ ଅଛି, ତୁ ବସିଛୁ । ଜିନିଷପତ୍ର ସେମିତି ପଡ଼ିଛି ! କିରେ କାନ୍ଦୁଚୁ କିଆଁ ?

—ବାପା, ଏ ନାତି ହେବାରେ ତୁମେ ମନରେ ଆନନ୍ଦ ପାଉଛ କେମିତି ?

—କାହିଁକି, କଅଣ ହେଲା ?

—ବାପା, ମୁଁ ତେବେ ଖୋଲି କହୁଛି । ବାହାହେବା ପରେ ଥରେ ମାତ୍ର ମୁଁ ଗୋଟିଏ ରବିବାରରେ ସେ ଗାଁକୁ ଯାଇଥିଲି; କିନ୍ତୁ ସେତେବେଳେ ସେ ମାସ୍ତୁ ହୋଇଥିଲା । ଏ ପୁଅ ତେବେ ହେଲା କେମିତି ?

—ଓହୋ, ଏଇ କଥା । ରାମ, ରାମ । ଆମର ଏତେ ଧଇଲେ ଚଳେ କିରେ, ତୁ କେମିତି ହୋଇଥିଲୁ ? ମୁଁ ମୋ ଜୀବନରେ ପରା ମୋଟେ ତିନି ଚାରିଥର ଗାଁକୁ ଯାଇଛି, ପ୍ରତିଥର ବି ସେମିତି କିଛି ଗୋଟାଏ ଅସୁବିଧା ଥାଏ । ଆମେ ଚାକିରିଆ ଲୋକ, ଆମର ଏତେ ଧଇଲେ ଚଳେ । ପୂର୍ବକାଳେ କଅଣ ହେଉଥିଲା ? ରାଜ ସ୍ତ୍ରୀର କେଉଁଆଡ଼ୁ ସନ୍ତାନ ହେଲା ସେଥିରେ କୌଣସି ମୁନି ମୁଣ୍ଡ ଖେଳାଉ ନଥିଲେ । ଆନନ୍ଦରେ ତାକୁ ପାଳୁଥିଲେ ।

—ବାପା, ତେବେ ମୁଁ ବି ଏମିତି ଜନ୍ମ ହୋଇଥିଲି ?

—ଆରେ ହଁ, ହଁ । ଜନ୍ମ୍ ଉଠ, ବେଳ ହୋଇଗଲାଣି । କଏ କାହାର ପୁଅରେ ! କେହି କା ପୁଅ ନୁହେଁ । ପିତା ସ୍ୱଭାବଠାରୁ ଅଲଗା । ସେଦିନ ଦେଖିଲି କଦମ୍‌ବାବୁ ଗୋଟାଏ ଗୋରା ପୁଅକୁ କାନ୍ଧରେ ବସାଇ ଧାଇଁଛନ୍ତି ଡାକ୍ତରଖାନା । ଅନ୍ତର୍ଯ୍ୟାମୀ ହୋଇ ଦେଖୁଛି, କହିଲା, ବାହାଘରର ପୁଅ ହୋଇ ଯାଉଛି, ଆମକୁ କହୁନା । କହିଲା, ନା ନ ମୋ ପୁଅ ନୁହେଁ ମାନେ ମୋ ପୁଅ ଯେ, ଯାକୁ ବାହା ହୋଇଛି ତା'ର ପୁଅ । ଅନ୍ତର୍ଯ୍ୟାମୀ ହୋଇ ଦେଖୁଛି, ମାନେ ! ସେ ସେମିତି କହି କହିଲା, ମାନେ ତା'ର ଅବିବାହିତା ଅବସ୍ଥା'ର ପୁଅ ଏ । ମୋହ ମୁଦ୍‌ଗର ପଢ଼ିନୁ, କା ତବ କାନ୍ତା କସ୍ତେ ପୁତ୍ରଃ, ସଂସାରୋୟମ୍‌ ଅତୀବ ବିଚିତ୍ରଃ··· । ଉଠ୍‌ ଉଠ୍‌ ।

—ହଁ ବାପା, ସଂସାର ଆଜ ମଣିଷ ଅତି ବିଚିତ୍ର । ଭୁଲ ପିତା । ପୁଅ ପାଇଁ କଅଣ କରିବ ଦେଖେ ।



# ଗୋଟିଏ ଇନ୍‌କୁଆରୀ

ଗୋଟିଏ ଇନ୍‌କୁଆରୀ କରିବାକୁ ବାହାରିଛୁ ହରିପୁରକୁ । ହରିପୁର ନୟାଗଡ଼ରୁ ଗୋଟିଏ ପର୍ବତ କୋଳରେ । ତାର ପୂର୍ବସୀମାକୁ ଲାଗି ରହିଛି ପର୍ବତମାଳା, ନରସିଂହପୁର, ହରଷ, ମଣ୍ଡଳିଆପୁର, ଜଳିତା, ମଙ୍ଗଳପୁର ଇତ୍ୟାଦି । ଗାଁମାନଙ୍କ ସୀମାଦେଇ ପର୍ବତର ପ୍ରାଚୀର ଲମ୍ବି ଯାଇ ମିଶିଛି ଗୋରୁଖିଆ ପର୍ବତ ସହିତ । ଉଚ୍ଚ ପର୍ବତ ନୁହେଁ । ହେଲେ ଘୋର ଜଙ୍ଗଲ ।

ହରିପୁର ଗାଁ ସୀମାରେ ଦୁଇଟି ପର୍ବତ ପାଖାପାଖି ହୋଇ ଛିଡ଼ା ହୋଇଛନ୍ତି, କେତେ ଯୁଗର ଲୋକେ ତା ଉପରକୁ ଚଢ଼ିଛନ୍ତି କାଠ କାଟିବାକୁ, ସେମାନଙ୍କର ପାଦଚିହ୍ନ ନାହିଁ; କିନ୍ତୁ ଅନେକଙ୍କର ଇତିହାସ ରହିଯାଇଛି ସେଇ ପର୍ବତ ଦୁଇଟିର ଦେହରେ । ଅକ୍ଷଣାର ଗୋପି ବାପା ଯାଇଥିଲା କାଠ କାଟିବାକୁ, କାଠ ଖୋଜୁ ଖୋଜୁ ସେ ଦେଓଙ୍କ ଅଧିଷ୍ଠାନ ଆଡ଼କୁ ଚାଲି ଯାଇଥିଲା । ଦେଓ ତାକୁ ବାଘ ରୂପରେ ଦେଖା ଦେଇଥିଲେ । ବାସ୍ ସେଇଠି ଶେଷ, ଗୋଟିଏ ଝାଡ଼ା ପରେ । ପ୍ରାପ୍ତ ବୟସ ପୁରୁଷ ଅଗେ ହଜି ବି ଯାଇଥିଲା ସେ ଜାଗାକୁ । ସେ ଥିଲା ଅମାନିଆ, ନାସ୍ତିକ ଠାକୁର ଠାକୁରାଣୀ ମାନୁ ନ ଥିଲା । ଯେମିତି ଯାଇଛି ସେ ଜାଗାକୁ ଠାକୁରାଣୀ ତାକୁ ଲଟାରେ ବାନ୍ଧି ଦେଲେ, ଲଟାରେ ଗୁଡ଼େଇ ଭୁଡ଼େଇ ହୋଇ ସେ ମଲା । ତା ବଂଶରେ ମଧ୍ୟ କେହି ଦୀପ ଦେବାକୁ ରହିଲେ ନାହିଁ । ଏ ପର୍ଯ୍ୟନ୍ତ ତା ଡିହଟି ରହିଛି, ସପନଡ଼ିହ, ଗାଁ ମୁଣ୍ଡରେ । ଖାଲି ଗୋଟାଏ ଅଧାକାନ୍ଥି ରହିଛି, ଆଉ ରହିଛି କେତେଗୁଡ଼ାଏ ଖପର । ସେ ଡିହ କେହି ମାଡ଼ନ୍ତି ନାହିଁ ।

ସଞ୍ଜ ଅଧରେ ଅନେକେ ପର୍ବତ ଆଡ଼ୁ ଗୋଟାଏ କୁହାଟ ଶୁଣିଛନ୍ତି, ହେ-ଏ-ଏ-ଏ-ଏ ହେଃ, ହେଃ, ହେଃ, ହାଃ, ହାଃ, ହାଃ । ଗାଁରେ କେହି ଅନ୍ୟାୟ

ଅତ୍ୟାଚାର କଲେ ସେଇ କୁହାଟ ଶୁଭେ । କୁହାଟ ଶୁଣିଲେ ଗାଁର ଲୋକେ ତୁର୍ଣ୍ଣି ଚାଲନ୍ତି କେଉଁ ଅନ୍ୟାୟ କରିଛନ୍ତି । ବାଜା ବାଜେ, ଠାକୁରାଣୀଙ୍କ ପୂଜା ହୁଏ, ଭୋଗ ଲାଗେ, ବଳି ପଡ଼େ, ଜାଗରଣ ଲାଗେ । ତା' ପରେ ବସେ ସଭା, ଯିଏ ଅନ୍ୟାୟ କରିଥାଏ, ସେ ନିଜେ ନିଜେ ଦୋଷ ସ୍ୱୀକାର କରେ । ଯାହା ଉଚିତ ଦଣ୍ଡ ବୋଲି ସଭା ସ୍ଥିର କରେ ସେ ଦଣ୍ଡ ସେ ପାଏ ।

ସେ ଯୁଗ ଚାଲିଗଲା । ସେତେବେଳେ ଗାଁରେ ଗୋଟିଏ ପାଠଶାଳା ବି ନ ଥିଲା । ଗାଁ ଅବଧାନେ ପିଲାମାନଙ୍କୁ କେବଳମାତ୍ର ପୋଥି ପଢ଼ିବା ଶିଖାଇ ପାରିଲେ ହେଲା । "ନମଇ ନୃସିଂହ ଦେବ, ଅନାଦି ପରମ କାରଣ" ବୋଲିବା ପର୍ଯ୍ୟନ୍ତ ଶିକ୍ଷା ହୋଇଗଲେ ତେବେ ହେଲା । ତା' ପରେ କାନ୍ଧରେ ଜୁଆଳି ପକାଇ ବଳଦ ଲାଙ୍ଗୁଡ଼ ମୋଡ଼ି "ହେଟ୍ ହେଟ୍ ଦେଖା ଖଳାଉଛୁ" କହି କହିକା ମୁଢ଼ି କି ଚୂଡ଼ା ଚୋବାଇ ଚୋବାଇ ପୁରୁଷ ବିତାଇଲେ ସେମାନେ ।

ସେ ଯୁଗ ବି ଚାଲିଗଲାଣି । ବର୍ତ୍ତମାନ ଗାଁରେ ଗୋଟିଏ ମାଇନର ସ୍କୁଲ୍ । ସେ ଏଣି ହାଇ ସ୍କୁଲ୍ ହେବାକୁ ଯାଉଛି । ଗାଁର ଗୋଟିଏ ପାଣିପୁଅ ବି. ଏ. ପାସ୍ କରି ବଡ଼ ଚାକିରି କଲାଣି । ତାଙ୍କରି ଆଉ ସେ ନୁଆଣିଆ ଚାଳଘର ନାହିଁ । ଦି ମହଲା ପକ୍କା ଘର ବି ହେଲାଣି । ପଞ୍ଚବାର୍ଷିକ ଯୋଜନାଦ୍ୱାରା ଗାଁର ଅନେକ ଉନ୍ନତି ହେଲାଣି ।

ଗୋଟିଏ ପ୍ରଧାନ ଯୋଜନା ହେଉଛି, ଦୁଇଟି ପର୍ବତ ମଝିରେ ବନ୍ଧ ପକାଇ ଜଳଭଣ୍ଡାର ତିଆରି କରିବା । ଗୁଡ଼ାଏ ଟଙ୍କାର ଯୋଜନା । ଜଳଭଣ୍ଡାରଟି ସୃଷ୍ଟି ହେଲେ ଗୁଡ଼ାଏ ଜମି ଆବାଦ ହୋଇପାରିବ ।

କାମ ଆରମ୍ଭ ହେଲାଣି ଆଜକୁ ତିନିବର୍ଷ ହେବ; କିନ୍ତୁ ସେ ଆରମ୍ଭରେ ହିଁ ରହିଯାଇଛି । ଆଗେଇ ପାରୁନି । ଯୋଜନାକାର୍ଯ୍ୟ ଆରମ୍ଭ ହେବା ଦିନରୁ ଗାଁରେ ତିନିଦଳ ସୃଷ୍ଟି ହୋଇଛି । ପ୍ରତ୍ୟେକ ଦଳ ଚାହୁଁଛି କାମଟି ସିଏ ହାତକୁ ନେବ । ଟଙ୍କା ଖର୍ଚ୍ଚ ହେବ ଅନେକ ଗୁଡ଼ାଏ । ପ୍ରତ୍ୟେକ ଦଳ ଅନ୍ୟ ଦଳର ଗୁଳ ଖୋଳି, ଦୋଷ ଦର୍ଶାଇ ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଏସ୍. ଡି. ଓ. ପର୍ଯ୍ୟନ୍ତ କେତେ ଯେ ବେନାମୀ ସ୍ୱନାମୀ ଦରଖାସ୍ତ ଦେଲେଣି ତାହାର ଇୟତ୍ତା ନାହିଁ । କେତେ ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଦରଖାସ୍ତ, ତାରବାର୍ତ୍ତା ପଠାଇଛନ୍ତି । ପ୍ରତ୍ୟେକଙ୍କ

ଦପ୍ତରରେ ବଡ଼ା ବଡ଼ା ଫେଷ୍ଟୁନ ବନ୍ଧା ହୋଇ ରହିଛନ୍ତି ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି କମିଶନର, କଲେକ୍ଟର ଏସ୍. ଡି. ଓ. ଜିଲ୍ଲା ଇଞ୍ଜିନିୟର୍ ଯେତେ ଆସି ଇନ୍‌କୁଆରୀ କରି ଗଲେଣି । କିନ୍ତୁ ଫଳ ଫଳି ନାହିଁ । କାମ ଯେଉଁଠି ସେଇଠି । କଥାଟା ସେତିକିରେ ରହିନାହିଁ, ମୁଣ୍ଡ ଫଟାଫଟି ପର୍ଯ୍ୟନ୍ତ ଯାଉଛି । ଏବେ ସେଥିରୁ ଉତ୍ପନ୍ନ ହୋଇ ଯାଉ ଏଇ ଜଳବିଭ୍ରାଟରେ ଚାଲିଛି ।

ଗୋଟିଏ ଦଳର ନେତା ନାନା ଉପାୟ କରି ପୁଣି ଇନ୍‌କୁଆରୀ ଆରମ୍ଭ କରାଉଛନ୍ତି । ମୁଁ ବାହାରିଛି ଇନ୍‌କୁଆରୀ କରି । ସାଙ୍ଗରେ ଓଭରସିୟର୍, ଏ. ଡି. ଓ. ଚପରାସି ଆଦି ନେଇ ଏ ଥରର ଅଭିଯୋଗ ହେଉଛି, ବନ୍ଧରେ ଦୁମାସରେ ମାଟି ପଡ଼ିନାହିଁ । ଯେଉଁ ଗାଡ଼ି ସବୁ କେତେ ଅଛନ୍ତି ମାପ ହୋଇ ସାରିଛି ଓ ତା'ର ଟଙ୍କା ଯାଉଅଛନ୍ତି, ପୁଣି ସେହି ଗାଡ଼ିଗୁଡ଼ିକୁ ଟିକିଏ ଟିକିଏ ଚେଞ୍ଜ କରି ନୂଆ କରି ମାପ କରାଇ ପ୍ରାୟ କେତେ ହଜାର ଟଙ୍କା ଅସୁଲ କରୁଛନ୍ତି ଅନ୍ୟ ଦଳର ଲୋକେ । ସେହି ଟଙ୍କାରେ ଅମୁକର ପୁଅର ବାହାଘର ହୋଇଛି, ଅମୁକର ପିଣ୍ଡା ପକା ହୋଇଛି ଇତ୍ୟାଦି ।

ସଜବାଜ ହୋଇ ବାହାରୁ ବାହାରୁ ବାଜିଲା ପ୍ରାୟ ନଅଟା । ଏଠାରୁ ମାଇଲ ରାସ୍ତା ଯିବାକୁ ହେବ ମଟରରେ । ତା'ପରେ ଜଳମଗ୍ନ ଦେଇ ଚାଲିବାକୁ ହେବ ଚାରି ମାଇଲ୍ । ମଟରରୁ ଓହ୍ଲାଇ ଆମେ ବାହାରିଲାବେଳକୁ ସୂର୍ଯ୍ୟ ଗୋଲୁକିଆ ପର୍ବତଚୂଡ଼ା ଉପରକୁ ଉଠିବାକୁ ଆରମ୍ଭ କଲେଣି ।

ଯେଉଁଠି ଆମ ମଟର ରହିବା କଥା, ସେଠି ଅପେକ୍ଷା କରି ରହିଥିଲେ ଛନ ମହାନ୍ତି, ଯିଏ କି ଏ ଇନ୍‌କୁଆରୀ କରାଇଛନ୍ତି । ତାଙ୍କ ସହିତ ଥିଲେ ପ୍ରାୟ ପଚିଶ ସରିକି ଲୋକ । ଆମେ ପହଞ୍ଚିବା ମାତ୍ରକେ ଭୂମି ନମସ୍କାର କରି ହାତଯୋଡ଼ି ସମସ୍ତେ ଛିଡ଼ାହେଲେ ।

ବାହାରିଲୁ । ଛନ ମହାନ୍ତି ଓ ତାଙ୍କର ଲୋକେ ଆଗେ ଆଗେ ଚାଲିଲେ ବାଟ ଦେଖାଇ । ହଳ ହିଡ଼େ ହିଡ଼େ ଆମେ ଚାଲିଲୁ । ଦୁଇ କଡ଼ରେ ଧାନ ଜମି । ଧାନ ଗଛ ସବୁ ଅଣ୍ଟାଏ ଉଚ୍ଚର ହେଲେଣି । ଫୁଲ ଧରିଛି । ଚାରିଆଡ଼େ ଖାଲି ସବୁଜ । ସେ ସବୁଜିମା ମିଶିଯାଇଛି ଦୂର ଚକ୍ରବାଳର ନୀଳିମାରେ । ମଝିରେ ମଝିରେ ଗୋଟାଏ ଗୋଟାଏ ଝାଟି ଦିଶୁଛି । ସେ ଝାଟି ମଝିରେ ମଝିରେ ଅଳ୍ପ

ସମସ୍ତ ଟାଙ୍ଗି ଉଠି ଦୁଇ ଚଢ଼ି ଟାଙ୍ଗୁଛି । ତା' ଭିତରେ ଯେଉଁ ଗାଁମାନେ ଅଛନ୍ତି, ସେମାନେ ନିର୍ବିକାର ଭାବରେ କାଳକ୍ଷେପ କରି ଚାଲିଛନ୍ତି । ଆମ ଦ୍ରୁତ ଯାନ ବେଗ ନାହିଁ । ତଳକୁ ଗୋଟାଏ ଅଦ୍ଭୁତ ଦୃଶ୍ୟ ଆସୁଛି । ସେ ଦୃଶ୍ୟର ତୁଳନା ହେବା ଅସମ୍ଭବ ।

ଚମତ୍କାର, ଏଟା କି ବାସନା ହୋ ।

କିଏ ଜଣେ ଉତ୍ତର ଦେଲା, ଆଜ୍ଞା ଧାନଫୁଲର ।

ଧାନଫୁଲର ଏମିତି ବାସନା ! ଚମତ୍କାର !

ଛିଦ ମହାନ୍ତି କଥାର ଖିଅ ଧରି କହି ଚାଲିଲେ, ଆଜ୍ଞା, ଏ ବର୍ଷ ଧାନ ସବୁ ମରିଯିବ ହେଟା ଜମି ଏଗୁଡ଼ାକ । ବନ୍ଧଟା ହୋଇଥିଲେ ମୁଦାଏ ମୁଦାଏ ପାଣି ପାଉଥାନ୍ତେ ଖେତଗୁଡ଼ାକ । ଦେଖନ୍ତୁ ଆଜ୍ଞା ଟିକିଏ ଦୃଷ୍ଟି ପକାନ୍ତୁ । ଧାନ ମୂଳ ସବୁ ଶୁଖି ଗଲାଣି । ଦୁଗୁଳା ମାଟି ଆଜ୍ଞା, ପାଣି ଧରି ରଖିବ କାହିଁ ! ଏତେବେଳେ ଯିନା ପାଣି ଦରକାର ।...

ଆଜିକୁ ଚାଳିଶ ବର୍ଷ ହେବ ଭାତ ଖାଉ ମୁଁ ମଣିଷ; କିନ୍ତୁ ଏ ପର୍ଯ୍ୟନ୍ତ ବୁଝିପାରିଲି ନାହିଁ କେତେବେଳେ ଧାନ ଲୋଡ଼େ ପାଣି, କେତେବେଳେ ବା ପବନ, କେମିତି ବଢ଼େ ସେ କଅଁଳ ତା'ର ଜନ୍ମ ।

ଛିଦ ମହାନ୍ତି କହି ଚାଲିଛନ୍ତି, ଆଜ୍ଞା, ମୁଁ ଏ ସବୁ ଜଞ୍ଜାଳକୁ ପଶେ ନାହିଁ । ମୁଁ ଭଲ କି ମୋ ଘର ଭଲ । ପିଣ୍ଡା ବାହାରକୁ ଗୋଡ଼ କାଢ଼େ ନାହିଁ ଆଜ୍ଞା । ହେଲେ ବନ୍ଧ ଟଙ୍କା ଏମିତି ବରବାଦ ହେଉଛି ଦେଖି ମୋ ଛାତି ଫାଟିଯାଉଛି । ଏତେ ଅନ୍ୟାୟ ! ଉଃହୋ ! ଆଁ ଏଁ !!

ସେ ଖାଲି ପାଟିରେ କଥା କହୁ ନ ଥାଆନ୍ତି । ତାଙ୍କ ଆଖି, ମୁଣ୍ଡ, ସବୁ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ କଥା କହୁଥାଆନ୍ତି ।

ହରିପୁର ଗାଁରେ ପହଞ୍ଚିବାବେଳକୁ ବେଳବୁଡ଼ ସମୟ । ଗାଁ ଭିତର ଦେଇ ଯିବାବେଳେ ଛିଦ ମହାନ୍ତି ଘର ଘର ଗୋଟାଏ ଡାକ ଦେଇ ଯାଉଥାଆନ୍ତି; ଏ ଗଙ୍ଗା, ଏ ବାଉରି, ଏ ସପନା, ଆସ ଆସ ସବୁ ଅତି ଶୀଘ୍ର ବନ୍ଧ ଉପରକୁ । ସାହେବ ଡକେଇ ଗଲେଣି ।

ବନ୍ଧ ଉପରକୁ ଚଳାଦେଲକୁ, ସେଠି ମଧ୍ୟ ଲୋକେ ମୁଇଁଫଳ ଛୁଡ଼ା ହୋଇଛନ୍ତି । ଆମକୁ ଦେଖି ସମସ୍ତେ ଆଭୂମି ନମସ୍କାର କଲେ ଓ ଛନ୍ଦ ମହାନ୍ତି ଅଙ୍ଗକୁ ଚଇଠି ଗୁହିଁଲେ ।

ତା'ପରେ ଅତି ଚିନ୍ତାଜନକ ଗୋଟାଏ କାଣ୍ଡ ଘଟିଲେ । କେଉଁ କୁଆଡ଼ୁ ନାହିଁ, ବୁଲିଡା ତେଲ ଆସି ପଡ଼ିଲା ଛନ୍ଦ ମହାନ୍ତି ଉପରେ । ତା'ପରେ ମୋତେ ନେଇ ଚନ୍ଦନଲ ପେଲାପେଲି ହେଲେ । ତା' ସଙ୍ଗେ ଗୁରୁ ଦୋହାଖୋଳି, କାହା ଦୁଆର କାହା ଦଣ୍ଡଚ ଦାପଡ଼ଶପୁ ଅଛି, କାହାର ଭଉଣୀ କୋଉ ପୁଅକୁ ପୂଜା କରିଛି, କଏ ଉଛୁଳି ଟଙ୍କା ଖାଇଯାଉଛି, କଏ ପଞ୍ଚଭୂତ ଧାନଗୋଲରୁ ଚୋରି କରି ନେଇ ଯାଉଛି, କଏ ପଞ୍ଚପୂତ ଟିକସ ଖାଇଯାଉଛି, କଏ କେଉଁ ନାଗଲମାନଙ୍କରେ ଗୋଟାଏ ଛୋଟାରୁ ଦେବଟଙ୍କା ଘୁଷ୍ ନେଉଛି, କଏ ବନ୍ଧ କାମରେ ଟଙ୍କା ଚୋରି କରିଦେଉଛି, କଏ ଗୋଟାଏ ଧୋବଣୀକୁ ରକ୍ଷିତା କରି ରଖିଛି, ଇତ୍ୟାଦି କଥା । ଟେକା ସବୁ ମୁଣ୍ଡ ଉପରେ ବୁଲୁଛି ।

ମୁଁ ଉପାୟ ନ ପାଇ ପ୍ରାଣଭୟରେ ସମସ୍ତଙ୍କୁ ବୁଝାଇବାକୁ ଚେଷ୍ଟା କରୁଥାଏ । ଜଣେ ଡେପୁଟି ଏମିତି ଏକ ଘଟଣାରେ ପ୍ରାଣ ଦେଇଛନ୍ତି, ଲୋକେ ତାଙ୍କୁ ମାରି ହିଡ଼ରେ ପୋତି ଦେଇଛନ୍ତି । କଥାଟା ମନେ ପଡ଼ିବାରୁ ଗୁଣ୍ଡିରୁ ଛଡ଼ା ଖସିପଡ଼ିଲା, ଝାଳ ବୋହିଗଲା ସାରା ଦେହରୁ ।

କୌଣସିମତେ ବାହାରିଆସିଲି । କହି ଆସିଲି ହାତ ଯୋଡ଼ି, ଆପଣମାନେ ଶାନ୍ତ ନ ହେଲେ ମୁଁ ଇନ୍‌କୁଆରି କରିବ ନା···ହିଁ··· ।

ମୋ କଥା କେହି ଶୁଣିଲେ କି ନା ଜାଣେନା । ମୁଁ କିନ୍ତୁ ଛୁଟିପିଟି ହୋଇ ବାହାରି ଆସିଲି । ସେମାନେ ସେହିପରି ଠେଲାପେଲା ହେଉ ଥାଆନ୍ତି ।

ମୁଁ ଗ୍ଲଲ ଅସିଲି ଗାଁ ମୁଣ୍ଡକୁ । ଦେଖିଲି ପାଦ ଦେଶରେ ଗୋଟିଏ ଘଞ୍ଚ କୁଞ୍ଜ । ତା'ର ଭିତରେ ପଶିଗଲି ଆତ୍ମଗୋପନ କରିବାକୁ ।

ଚାରିଆଡ଼େ କେନ୍ଦୁକ, ସାହାଡ଼ା, ବକୁଳ, ଅମ୍ବ, ଆଦି ଗଛ ସବୁ ଲଗାଲଗି ଛନ୍ଦାଛନ୍ଦ ହୋଇ ଛୁଡ଼ା ହୋଇଛନ୍ତି । ଭେଦ ଜ୍ଞାନ ନାହିଁ । ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ନୀରବ ଭାଷାରେ ଯେପରି କଥାବାର୍ତ୍ତା କହୁଛନ୍ତି, ଆଉ ମୁଁ ରହ

ମୂର୍ତ୍ତିକ ହସୁଛନ୍ତି । ମନ୍ଦିରରେ ଗୋଟିଏ ପଥର ଚଟାଣର ଗୋଟିଏ ପାଖରେ କେତେଗୁଡ଼ିଏ ବେଦୀ ତିଆରି ହୋଇଛି । ପ୍ରତ୍ୟେକ ବେଦୀରେ ଗୋଟିଏ ଆବକ୍ଷ ଖାଲି ମୁ । ଦେଢ଼ା ମେଢ଼ା ଘଟରେ ସିନ୍ଦୁର ଚନ୍ଦନ ଲାଗି ନେଉଳ ହୋଇଯାଇଛନ୍ତି । ଏହିପରି ତେତିଶି ବେଦୀ । ପ୍ରତ୍ୟେକ ବେଦୀ ପାଖରେ ମାଟି ତିଆରି କେତେ ହାତୀ, କେତେ ଘୋଡ଼ା । ହାତୀମାନଙ୍କ ଉପରେ ହାଉଦା ପଡ଼ିଛି, ସେ ହାଉଦାରେ ପୁଣି କେତେ କାରୁକାମ ହୋଇଛି । ହାଉଦା ଉପରେ ସିଂହାସନ । ଘୋଡ଼ାମାନଙ୍କ ମୁହଁ ଗୋଲ ଓ ଫମ୍ପା । ଗୋଡ଼ଗୁଡ଼ିକ ମଧ୍ୟ ଗୋଲ ଓ ଫମ୍ପା; କିନ୍ତୁ ପ୍ରତ୍ୟେକଙ୍କ ଗୋଡ଼ରେ ଗହଣା ଓ ପ୍ରତ୍ୟେକଙ୍କ ମୁଣ୍ଡରେ ସିନ୍ଦୁର ଚନ୍ଦନ ।

ଗୋଟିଏ ବୁଢ଼ା ଗୋଟିଏ ଚହିଁବରେ ଜାଗାଟି ଝାଡ଼ୁଥିଲା । ମୋତେ ଦେଖି ଉଠିକି ହୋଇ ଦାନ୍ତ ନିକୁଟି ଛୁଡ଼ିଦେଲା । ଏତେ ବୁଢ଼ା କିନ୍ତୁ ସବୁ ଯାକ ଦାନ୍ତ ଅଛି । ଦାନ୍ତଗୁଡ଼ିକ ହଳଦିଆ । ଆଖିରେ ନେଞ୍ଜରା । ପିନ୍ଧିଛି ଗୋଟିଏ ତେଲଚିକଟା ଗାମୁଛା । ଗାମୁଛାର ଦୁଇ ପାଖର ଧଡ଼ି ଓ ଧଡ଼ିକୁ ଲାଗି ଦୁଇଇଞ୍ଚ ସରିକ କନା । ଗାମୁଛାର ବାକି ଅଂଶ ନାହିଁ କହିଲେ ଚଳେ ।

ପଚାରିଲି, ଇଏ କି ଠାକୁରାଣୀ ହୋ ।

ବୁଢ଼ାଟି ଆକାଶକୁ ଚାହିଁଲା, ତା'ପରେ ଠାକୁରାଣୀମାନଙ୍କ ଆଡ଼େ ମୁହଁ କରି ଜୁହାର ହୋଇ କହିଲା, ଆଜ୍ଞା, ଦଶ ଭଉଣୀ ଏମାନେ···

—ନା' କଅଣ ଏମାନଙ୍କର ?

—ଆଜ୍ଞା, ଇଏ ହେଉଛନ୍ତି ବଡ଼ ବାହ୍ମୁଣୀ, ତାଙ୍କ କଡ଼ରେ ତାଙ୍କ ପୁଅ···

—ଏମାନଙ୍କୁ ଏପରି ଅଲଗା ହୋଇ ରଖାହୋଇଛି କାହିଁକି ?

ଆଜ୍ଞା, ଏ ସବୁ ବାହ୍ମୁଣୀ । ଏଙ୍କ ପାଖରେ ଛେଦା ଲାଗିବ ନାହିଁ, ଛେଳି ଲାଗିବ ନାହିଁ । ଖାଲି ଅରୁଆ ପୂଜା ଏଙ୍କର । ସେଇଥିପାଇଁ ତାଙ୍କ ଆସ୍ଥାନ ଅଲଗା···

ବାହ୍ମୁଣୀ ଦେଖା ବୋଲି ଯାହାକୁ କୁହାଗଲା ସେ ଆଉ କିଛି ନୁହେଁ ଗୋଟିଏ ପଥର ଛେଳ, ତଳକୁ ଓସାରିଆ, ଉପରକୁ ଗୋଜିଆ । ମୋଟ ପ୍ରାୟ ଇଞ୍ଚେ ହେବ, ତିନିକୋଣିଆ ।

ଚମ୍କିଲି, କହିଲି, ମୂର୍ତ୍ତି କାହିଁ ? ଏ ତ ପଥର ଖଣ୍ଡକାଠାଏ । ବୁଢ଼ାଟି ଜଣେ କାମ୍ବଡ଼ ବ୍ୟକ୍ତି ଭାବରେ ମୋତେ କଟୁକ୍ଷଣ ଚାହିଁ କହିଲା, ଅଜ୍ଞା, ଦେଖନ୍ତୁ, ଏଇ ତାଙ୍କ ହାତ, ଏଇ ଦେଖନ୍ତୁ ତାଙ୍କ କେଶ ମୁକୁଳା ହୋଇ ଉଡ଼ୁଛି ।

ସେ ସବୁ କିଛି ଦେଖି ପାରିଲି ନାହିଁ । କଅଣ ଗୋଟାଏ ଗାର ଅବଶ୍ୟ ଦିଶିଲା; କିନ୍ତୁ ତାକୁ ହାତ ନ କହି ଗୋଡ଼ ବା ଗୋଡ଼ ନ କହି ପାଟି କହିଲେ କିଛି କ୍ଷତି ହେବନାହିଁ, କିନ୍ତୁ ବୁଢ଼ା ପକ୍ଷରେ ସେ ହାତ ଛଡ଼ା ଆଉ କିଛି ନୁହେଁ । ଯାହାକୁ ହାତ ବୋଲି କହୁଛି, ତାକୁ ଖାଲି ଆଖିରେ ଦେଖିଲେ ଚିହ୍ନିବା ଅସମ୍ଭବ । କେତେ କଳ୍ପନା କଲେ ବା ଜାଣିହେବ ଅସମ୍ଭବ କଳ୍ପନା ଶକ୍ତି ଏମାନଙ୍କର !!

ତା'ପରେ, ବୁଢ଼ା କହିଚାଲିଲା, ଏ ହେଉଛନ୍ତି ମଙ୍ଗଳା, ତାଙ୍କ ପାଖକୁ ଢଣ୍ଡିଆ ମଙ୍ଗଳା । ରାତିରେ ଢଣ୍ଡି ଢାଗୁଡ଼ ଟିକି ବୁଲି ବାହାରନ୍ତି । ଏଙ୍କ ହାବୁଡ଼ରେ ପଡ଼ିଗଲେ ରକ୍ଷାନାହିଁ । ତାପରେ ଅଛନ୍ତି ମା ବୁଗାଳ ଓ ତାଙ୍କ ପାଖକୁ ହରିହର ବୁଗାଳ । ଏ ଦୁ ଭଉଣୀ ଭାରି ସାଙ୍ଗ, ଏକା ସାଙ୍ଗରେ ବୁଲି ବାହାରନ୍ତି, ଏକା ସାଙ୍ଗରେ ଖାଆନ୍ତି । ଏ ଦୁ ଭଉଣୀଙ୍କ ନା'ରେ କାଠ କାଟି ଗଲେ ବାଘ ବା ବାଟ ଗୁଡ଼ ଦେବ, ଖାଲି ଦେଖା ଦେବପିନା କଣ୍ଟକ ଆସିବ ନାହିଁ । ତା'ପରେ, ଦେଖନ୍ତୁ ପାଟମୁଣ୍ଡେଇ, ସୁନ୍ଦର ଉଗ୍ର । ଏମାନଙ୍କ ବୟସ ହେଲାଣି, ଏମାନେ ଆଉ ବୁଲି ବାହାରନ୍ତି ନାହିଁ, ଖାଲି ଗାଁ'ର ଦୁର୍ଭାଗ୍ୟ ପଡ଼ିଲେ କୁହାଟ ଛାଡ଼ନ୍ତି ।

ଯେତେ ଠାକୁରାଣୀଙ୍କ ନାଁ କହିଲା ସବୁ ଗୋଟିଏ ଗୋଟିଏ ପଥର ଖଣ୍ଡ । କେଉଁଟି ବା ସ୍ୱରକ୍ଷିତ, କାହାର ଆକାର ନିର୍ଣ୍ଣୟ କରିବା ଅସମ୍ଭବ । ସେମାନଙ୍କ ଭିତରୁ ପୁଣି, ଏ ବୁଢ଼ା ଜାଣେ, କାହାର ବୟସ ହେଲାଣି, କାହାର ବାଳ ମୁକୁଳା, କଏ ଏକାଠି ଶୁଅନ୍ତି ।

—ଆଉ ଅଜ୍ଞା, ଇଆଡ଼େ ଦେଖନ୍ତୁ, ଏ ହେଉଛନ୍ତି ପଶ୍ଚିମା ମା । ଇଏ ଏଠି ନ ଥିଲେ ପଶ୍ଚିମ ଆଡ଼ୁ ଆସିଲେ ।

—କେବେ ? ପଚାରିଲି ।

—କେବେ କେଜାଣି ? ଆଜକୁ ହେବ ନା ପାଞ୍ଚଶହ ବର୍ଷ ହେବ କିଏ କଳନା କରିପାରିବ । ଗାଁରେ ମଡ଼କ ପଡ଼ିଥିଲା । ମା' ଚାମୁଣ୍ଡୀ ସମ୍ଭାଳି ପାରିଲେ ନାହିଁ, ଏଙ୍କୁ ଡାକି ଆଣିଥିଲେ । ଲୋକେ ଦେଖିଛନ୍ତି ଆଜ୍ଞା, ବଡ଼ ଅଧରେ, ଗୋଟିଏ ବଡ଼ ଆଲୁଅ ପଶ୍ଚିମ ଆଡ଼ୁ ମାଡ଼ି ଆସୁଥାଏ, ସେଇଦିନୁ ସେ ଏଠି ରହି ଯାଇଛନ୍ତି । ଆଉ ଯାଇନାହାନ୍ତି ।

ବନ ଉପରୁ କୋଳାହଳ ଭାସି ଆସୁଥାଏ । ମଝିରେ ମଝିରେ ଗୋଟାଏ ଦଳ ପେଲି ନେଉଥାଏ ଆଉ ଗୋଟିଏ ଦଳକୁ ଠେଲୁଥାଏ ବାଡ଼ି ଓ ମୁଷ୍ଟି ସେ ଦଳ ଆଉ ଦଳକୁ ଘଉଡ଼ାଇ ଦେଉଥାଏ ।

—ଅଉ ଦେଖନ୍ତୁ ଆଜ୍ଞା, ଏ ହେଉଛନ୍ତି ଚଣ୍ଡେଇ । ଏଙ୍କର ମାଛ ନ ହେଲେ ଖାଇ ଚଳେ ନାହିଁ । କଞ୍ଚା ନ ହେଲେ ଶୁଖୁଆ ଟିକିଏ ଦରକାର । ଇଏତ ଗାଁ ଗାଁ ବୁଲନ୍ତି ନଈତୀ ବାଡ଼ିରେ, ଆଉ ଦୁରି କରନ୍ତି । ଇଏତ ହେଉଛନ୍ତି, ଦଶନଦେଈ ବୁଢ଼ୀ ମା । ସବା ବଡ଼ ଭଉଣୀ ଏ । ତାଙ୍କ ଆସ୍ଥାନ ଦେଖନ୍ତୁ ସବା ଶେଷରେ । ଏ ଅସ୍ଥାନ ଯେ ଜଗି ରହିଥାନ୍ତି । ତାଙ୍କ ପାଖରେ ଦେଖନ୍ତୁ ଖୁଣ୍ଟ ପୋତା ହୋଇ ରହିଛି । ଅନ୍ୟ ଦେବୀ କେହି ଆସିଲେ ବୁଢ଼ୀମା ସେ ଖୁଣ୍ଟ ପାର କରି ଦିଅନ୍ତି ନାହିଁ । ବାଡ଼ି ଓଗାଳନ୍ତି । "କିଏ ତୁମେ ? କାହିଁକି ଆସିଛ ?" ପଚାରି ତାଙ୍କ ହାଲ୍ ଚାଲ୍ ବୁଝି ବିଦା କରି ଦିଅନ୍ତି ।

କାହିଁକି ? ପଚାରିଲି ।

—ଆଜ୍ଞା, କେତେ ରକମର ଦେବ ଦେବୀ ବୁଲୁଛନ୍ତି ଘୂରିଆଡ଼େ । କିଏ ତା ଭିତରେ ଭଲ; କିଏ ବା ଓଲଟପା, ଝାଡ଼ାବାନ୍ତି କରାନ୍ତି, କିଏ କାହା ଗାଁରେ ପଶି କଳି ଲଗାଇ ଦିଅନ୍ତି । ବୁଢ଼ୀମା ସେ ସବୁଙ୍କି ଗୁଡ଼ନ୍ତି ନାହିଁ ଗାଁ ଭିତରକୁ । ଯେଉଁ ବଡ଼ୁଆ କେହି ଆସନ୍ତି, ତେବେ ବୁଢ଼ୀମା ତାଙ୍କୁ ଭୋଗବାଗ ଦେଇ ବୁଝାଇ ଶୁଝାଇ ବିଦା କରିଦିଅନ୍ତି । କୌଣସି ବିପଦ ଗାଁକୁ ଆସିବାରେ ଆଠଦଶ ଦିନ ଆଗରୁ ଏ ଗାଁ ଗାଁ ବୁଲି ବୁଲାଉନ୍ତି, ଏ ଘରବାଳା ହୁସିଆର ରହ । ଖାଲି ଏତିକି କହନ୍ତି ।

ତୁମେ ଶୁଣିଛ ? ପଚାରିଲି ।

ହଁ ଅଜ୍ଞା । ତେବେ ଆଜକାଲ ଅନେକ ସେ ଡାକ ଶୁଣିପାରୁ ନାହାନ୍ତି ? ଲୋକମାନଙ୍କ ଭିତରେ ହିଂସା, ଲୋଭ ବଢ଼ି ଚାଲିଛି ନା, ଅଜ୍ଞ ସେ ଡାକ ଶୁଣିପାରୁ ନାହାନ୍ତି ।

ତୁମ ବୟସ କେତେ ? ପଚାରିଲି ।

—ପାଞ୍ଚକୋଡ଼ି ।

ତୁମେ ଏଠି କଅଣ କର ?

ମୋ ଘର ଏଇଠି ଅଜ୍ଞା, ମୁଁ ମା'ମାନଙ୍କର ଅସ୍ଥାନ ମାର୍ଜନା କରେ ।

ଗୁରୁଆଡ଼ ସେତେବେଳକୁ ଅନ୍ଧାର ହୋଇଗଲାଣି । ଶୀତଦିନ କୁହୁଡ଼ି ଧୂଆଁ ଗଛଉପରେ ଜମିଗଲାଣି । ବଣଉପରେ କୋଳାହଳ ଥମିନାହିଁ । ସେମାନେ ସମସ୍ତେ ମୋ ଆଡ଼କୁ ଅନୁଛନ୍ତି ।

ମୁଁ ସେମାନଙ୍କୁ କହିଲି, ଅଜି କିଛି ହେବନାହିଁ । କାଲି ସକାଳୁ ଦେଖା-ଯିବ । ସମସ୍ତେ ଚାଲିଗଲେ । ମୋର ରହିବା ବନ୍ଦୋବସ୍ତ ହେଲା ବୁଢ଼ା ଘରେ ହେଲା ।

ଖାଇସାରି ମୁଁ ଶୋଇବାକୁ ଗଲି । ରାତି ପ୍ରାୟ ଅଧ ହେଲାଣି ! ନିଦ ମାଡ଼ୁ ନ ଥାଏ ।

ବୁଢ଼ା ପିଣ୍ଡାରେ ଶୋଇଥାଏ ।

ଡାକ ପକାଇଲି, ହଇହୋ, ବର୍ତ୍ତମାନ ତ ଦେଖୁଛ · ଗାଁ ଭିତରେ ଏତେ ଅନ୍ୟାୟ ଚାଲିଛି । କାହିଁ ତୁମ ଦର୍ଶନଦେଇ ବୁଢ଼ୀ ବା ଅନ୍ୟ କେହି ତ କୁହାଟ ଛାଡ଼ୁ ନାହାନ୍ତି ।

—କଏ କହିଲା ଅଜ୍ଞା, ସେ କଥା । ମା'ମାନେ ଡାକୁଛନ୍ତି, କେହି ଶୁଣିପାରୁନାହାନ୍ତି । ସବୁକୁ ସମୁଦ୍ର ଫଳେ । (କଥାଟାର ଅର୍ଥ ମୁଁ ଏପର୍ଯ୍ୟନ୍ତ ବୁଝିପାରି ନାହିଁ) ଭଳେ ଯେତେବେଳେ ଅନ୍ୟାୟ ଏକଦମ୍ ବଢ଼ିଯିବ, ସେତେବେଳେ ସବୁ ଶେଷ । ପୁଣି ଆରମ୍ଭ ।

ତା'ପରେ ବୁଢ଼ା ହଠାତ୍ ଚମକି ପଡ଼ି ମୁହଁରେ ଅଙ୍ଗୁଳିଦେଇ କହିଲା, ଚୁପ୍ ଚୁପ୍ ହୋଇ ଶୁଣନ୍ତୁ, ମା' ପଶ୍ଚିମା କୁହାଟୁଛନ୍ତି । ବୁଢ଼ା ସାଷ୍ଟାଙ୍ଗ ପ୍ରଣିପାତ କରି ପଡ଼ି ରହିଲା । କହିଲା, ରକ୍ଷାକର ମା ଏ ଗାଁକୁ·····ରକ୍ଷା କର ମା ।

ମୁଁ କିନ୍ତୁ କିଛି ଶୁଣିପାରିଲି ନାହିଁ । ଛଉ ମହାନ୍ତ ପିଣ୍ଡା ଆରପଟେ ଶୋଇଥିଲେ ପାଟି କରିଲେ, କାହିଁକି ଟୋକେ ମିଛରେ ବକର ବକର ହେଉଛ ? ସାହେବଙ୍କୁ ଶୋଇଦେଉ ନାହଁ । ଠାକୁରାଣୀଙ୍କ କୁହାଟ ଶୁଣୁଛ ଇସ୍... ଡ୍ୟାମ୍ ।

ମୁଁ ଭାବୁଛି, The fear of god is the beginning of knowlege ବଚନଟିର ତାତ୍ପର୍ଯ୍ୟ କଅଣ ? ହୁଏତ, କାହାର ସହିତ ସମ୍ପର୍କ ନଥିବା ଭିତରର ନିଃସଙ୍ଗ ଏକା ମଣିଷଟି ଏବଂ ବହୁ ସହିତ ସମ୍ପର୍କ ଥିବା ବାହାରର ସାମାଜିକ ମଣିଷଟି କଅଣ ପରସ୍ପର ବିରୋଧୀ ?



# କାଠ ପନ୍ଥା

ରେଳଗାଡ଼ିର ପ୍ରଥମ ଶ୍ରେଣୀରେ ଚଢ଼ି ଯାତ୍ରାକରିବା ମୋ ଜୀବନରେ ସେଇ ପ୍ରଥମ । ପିଲାବେଳୁ ବାପାଙ୍କ ସହିତ ଅନେକ ଥର ମୁଁ ରେଳଗାଡ଼ିରେ ଯାଇଛି; କିନ୍ତୁ ସବୁବେଳେ ତୃତୀୟ ଶ୍ରେଣୀରେ । ଠେଲି ପେଲି ମାଲପତ୍ର ଉଠାଇ ଆମେ ଚଢ଼ୁଁ ଏବଂ ଡବା ଭିତରେ ଛିଡ଼ାହୋଇ ଯାଉଁ । ଗୋଡ଼ ବିନ୍ଧିଗଲେ ଛିଡ଼ା ହୋଇ ହୋଇ । ପ୍ରଥମ ଶ୍ରେଣୀ ଡବାର ଯାତ୍ରୀମାନଙ୍କୁ ମୁଁ ଭୟ ଓ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହୁଥାଏ କେବଳ । ଜୀବନରେ ଥରେ ପ୍ରଥମ ଶ୍ରେଣୀରେ ଯାତ୍ରା କରିବା ସେତେବେଳେ ଥିଲା ମୋର ଗୋଟାଏ ଆଦର୍ଶ । ସରକାରୀ ଚାକିରି କରି ମଧ୍ୟ ବହୁତ ଦିନ ମୁଁ ପ୍ରଥମ ଶ୍ରେଣୀରେ ଯିବାର ଯୋଗ୍ୟ ହୋଇ ନ ଥିଲି ।

ଯେଉଁ ଦିନ ଯୋଗ୍ୟହେଲି, ତାହାର ଅଳ୍ପଦିନ ପରେ ବଦଳି ହେଲି ଅନ୍ୟ ଜାଗାକୁ । ପ୍ରଥମ ଶ୍ରେଣୀ ଟିକଟ ଯେତେବେଳେ କିଣିଲି, ସେତେବେଳେ ମନରେ ଗୋଟାଏ ଅଦ୍ଭୁତ ପୁଲକ ଓ ରୋମାଞ୍ଚ ଜାତହେଲା । ମନରେ ଭୟ ଓ ବାହାରେ ଗୋଟାଏ ବେପରୁଆ ଭାବ ଫୁଟାଇ ଚଢ଼ିଲି ପ୍ରଥମ ଶ୍ରେଣୀ ଭିତରକୁ । ମନରେ ଭୟ ଥାଏ, କିଏ ଜାଣେ ଟିକଟ ଥିଲେ ମଧ୍ୟ ମୋତେ କେହି ବାହାର କରିଦେଇ ପାରନ୍ତି, ହୁଏତ କୌଣସି ନିୟମ ଅନୁସାରେ । ଟିକଟ ନମ୍ବରଟି ଡାଇରିରେ ଟିପି ରଖିଲି, ସରକାରଙ୍କୁ ବିଲ୍ ଦେଲାବେଳେ ନମ୍ବରଟି ଦେବାକୁ ପ୍ରମାଣ ସ୍ୱରୂପ । ଅପମାନ ଲାଗିଲା ଅବଶ୍ୟ; କିନ୍ତୁ ଏ ଅପମାନ ଆମେ ନିଜେଇ ବରଣ କରିଛୁ । ତୃତୀୟ ଶ୍ରେଣୀରେ ଯାଇ ପ୍ରଥମ ଶ୍ରେଣୀର ଖର୍ଚ୍ଚ । ଆଦାୟ କରୁଥିବାରୁ ସରକାର ଏ ଅପମାନଜନକ ନିୟମ କରିଛନ୍ତି ।

ସାନ ଡବାଟିଏ । ତଳେ ଗୋଟିଏ ବର୍ଥ୍ ଓ ତା' ଉପରକୁ ଗୋଟିଏ ବଙ୍କ୍ । ବଙ୍କ୍ ଉପରେ ଶୋଇ ଥାଆନ୍ତି ଜଣେ ଭଦ୍ରଲୋକ ଏବଂ ବର୍ଥ୍ ଉପରେ ମଧ୍ୟ । ସେମାନେ ନାକ ଘୋଡ଼ି ନିଦରେ ଶୋଇ ଥାଆନ୍ତି କି ଚେଇଁ ଶୋଇଥାନ୍ତି ଜାଣିବାର ଉପାୟ ନାହିଁ । ସେମାନଙ୍କୁ ଡାକିବାକୁ ସାହସ ହେଉନାହିଁ । ଛୁଆ ହୋଇ ରହିଲି ମାଝବରେ ।

ପର ଷ୍ଟେସନରେ ଉଠିଲେ ଜଣେ ଭଦ୍ରଲୋକ । ତାଙ୍କର ପୋଷାକ ପରିଚ୍ଛଦରୁ ସ୍ପଷ୍ଟ ମନେ ହେଉଥାଏ, ସେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ତାଙ୍କର ମାଲପତ୍ରରେ ମଧ୍ୟ ଲେଖା ତାଙ୍କର ନାମ ଓ ପଦବୀ । ଭଦ୍ରଲୋକ ମିଷ୍ଟର ଦାସ । ସେ ଉଠି କାହାରିକୁ କିଛି ନ କହି ବର୍ଥରେ ଶୋଇଥିବା ଭଦ୍ରଲୋକଙ୍କୁ ଆଦେଶଦେବା ଭଙ୍ଗୀରେ କହିଲେ, ହୁଁ, ଉଠନ୍ତୁ ଉଠନ୍ତୁ ।

ବର୍ଥର ଭଦ୍ରଲୋକ ଆଖି ମେଲି ଥରେ ଚାହିଁଲେ ସତ; କିନ୍ତୁ ଉଠନ୍ତୁ ଆଦେଶର କୌଣସି ପ୍ରତିକ୍ରିୟା ହୋଇଥିବା ଭଳି ଜଣାଗଲା ନାହିଁ । ମିଃ ଦାସ କହିଲେ, ଉଠନ୍ତୁ, ନ ହେଲେ ଆପଣଙ୍କୁ ଘୋଷାରି ମୋତେ ଉଠାଇବାକୁ ହେବ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ଅଛି ବୋଲି ନିଉଟନ୍ ଯେଉଁ ପ୍ରାକୃତିକ ନିୟମ ଆବିଷ୍କାର କରିଥିଲେ, ବର୍ଥଶାୟିତ ଭଦ୍ରଲୋକ ତାହା ଭୁଲ୍ ବୋଲି ପ୍ରମାଣ-କଲେ ।

ମିଃ ଦାସ ଘୋଷାରି ଉଠାଇଦେବା ପାଇଁ ତାଙ୍କର ହାତ ପ୍ରସାରିଲେ । ସ୍ପର୍ଶ କରିଛନ୍ତି ମାତ୍ର । ତା'ପରେ··· ।

ପ୍ରଚଣ୍ଡ ପ୍ରତିକ୍ରିୟା !! ସାମାନ୍ୟ ଟିକିଏ ସୁଇଚ୍ ଟିପି ଯେମିତି ବିଦ୍ୟୁତ ଶକ୍ତିକୁ ମୁକ୍ତ କରାଯାଏ ସେମିତି । ଏଇ ଅଳ୍ପ ସମୟ ମଧ୍ୟରେ ସାମାନ୍ୟ କେତୋଟି କ୍ରିୟାର ଯେ ଏତେ ପ୍ରତିକ୍ରିୟା ସୃଷ୍ଟି ହୋଇ ସଞ୍ଚିତ ହୋଇଥିଲା ମୁଁ ଆଶା କରି ନ ଥିଲି ।

ଜ୍ୟାମୁକ୍ତ ଧନୁପରି ବର୍ଥଶାୟିତ ଭଦ୍ରଲୋକ ଡେଇଁ ପଡ଼ିଲେ । ଧୀରେ ଗୋଟିଏ ସିଗାରେଟ ଲଗାଇ ଥରେ ଟାଣି ମୁହଁରୁ ଧୂଆଁ ବାହାରକଲେ କିଛିକ୍ଷଣ । ତା'ପରେ··· ।

ମୁଁ କେବଳ ଶୁଣିବାକୁ ପାଇଲି ଗୋଟାଏ ଶବ୍ଦ । ଗୋଟାଏ ଟିଣରେ କେତେଗୁଡ଼ାଏ ଗୋଡ଼ି ପୂରାଇ ହଲାଇଲେ ଯେମିତି ଶବ୍ଦ ବାହାରେ ସେମିତି । ମଝିରେ ମଝିରେ ଅବଶ୍ୟ ଗୋଟାଏ ଦୁଇଟା ଇଂରାଜୀ କଥା କାନକୁ ଆସୁଥିଲା । କିନ୍ତୁ ପୂର୍ବାପର ସେଣ୍ଟେନ୍ସ ବୁଝି ପାରୁ ନ ଥିବାରୁ ଇଂରାଜୀ କଥା ସବୁ ଆଦୌ ବୁଝିପାରୁ ନଥିଲି ଏବଂ ସେ ସେଣ୍ଟେନ୍ସ ମଧ୍ୟ ମୁଁ କେବେହେଁ ପଢ଼ିନାହିଁ । କେବଳ ଶେଷକୁ ଶୁଣିଲି ସେ କହୁଛନ୍ତି, ଜାଣନ୍ତି ଆପଣ ମୁଁ କିଏ ? ମୁଁ ...... । ପଦଟିଏ କହି ସେ ତା'ର ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ନୀରବ ହେଲେ ।

ମୁଁ ଚମକି ପଡ଼ିଲି ସେ ପଦଟି ଶୁଣି । ଭାବିଲି ପର ଷ୍ଟେସନରେ ଓହ୍ଲାଇଯିବି ମୋର ଚିର ପରିଚିତ ତୃତୀୟ ଶ୍ରେଣୀ ଡବାକୁ; କିନ୍ତୁ ଏଇ ସୁବିଧାଟି ଦରକାରବେଳେ କାମରେ ଆସିବ । ନିୟମାନୁସାରେ ଟିକିଏ ଖୋସାମଦ କରିବାର ମଧ୍ୟ ଲୋଭ ହେଲା; କିନ୍ତୁ ପୁଣି ସେତିକି କରିବାକୁ ମଧ୍ୟ ଭୟ ହେଲା ।

ମିଃ ଦାସ କିନ୍ତୁ ସେ ପଦକ ଶୁଣି ହସିଲେ । ଗମ୍ଭୀର ସ୍ୱରରେ କହିଲେ, ଆପଣ ଜାଣନ୍ତି ମୁଁ କିଏ ? ମୁଁ...... ।

ସେ ପଦକ ଶୁଣି ମୋର ହୃତ୍କମ୍ପ ଜାତହେଲା । ମନେହେଲା ଭାଗ୍ୟ ଖରାପ ଯୋଗରେ ମୁଁ ଯାତ୍ରା ଆରମ୍ଭ କରିଛି ।

ବର୍ଥଶାୟିତ ଭଦ୍ରଲୋକ ସିଗାରେଟରେ ଗୋଟିଏ ଦୀର୍ଘ ଶୋଷଣ ଦେବା ପରେ କହିଲେ, ଶ୍ରେଃ ଏଥି ପାଇଁ ଏତେ । ସରକାରର ଗୋଟାଏ ନଗଣ୍ୟ ବିଭାଗ, ତାହାର ପୁଣି···ଆପଣ ! ମୋତେ ହସେଇଲେ ଆପଣ ! ଭଦ୍ରଲୋକ କିନ୍ତୁ ହସିଲେ ନାହିଁ, ରୋଷକଷାୟିତ ନେତ୍ରରେ ଚାହିଁ ରହିଲେ ।

ଓଃହୋ, ଘୁଷୁଡ଼ିଆ ବିଭାଗରେ ଚାକିରି ବୋଲି ଏତେ ତେଜ ଆପଣଙ୍କର ନା ? ମିଃ ଦାସ କହିଲେ ।

ତା'ପରେ ବଂଶର ବଡ଼ିମାରୁ ବିଭାଗର ବଡ଼ିମାକୁ ପ୍ରବେଶକଲା ଦୁହିଁଙ୍କ ମଧ୍ୟରେ କଳହ ।

ସେ ବିଷୟରେ କୌଣସି ସିଦ୍ଧାନ୍ତ ହେବା ପୂର୍ବରୁ ( ଅବଶ୍ୟ କୌଣସି ସିଦ୍ଧାନ୍ତ ପାଇଁ ସେମାନେ ବ୍ୟଗ୍ର କରୁ ନ ଥିଲେ । ) କଳହ ପ୍ରବେଶ କଲା

ପ୍ରଦେଶର ବଡ଼ମାଷ୍ଟରଙ୍କୁ (ଅର୍ଥଶାସ୍ତ୍ରିତ ଭଦ୍ରଲୋକ ଓ ମିଃ ଦାସ ଭିନ୍ନ ଭିନ୍ନ ପ୍ରାନ୍ତର ଲୋକ ।) ଏହି ସ୍ତରରେ ପହଞ୍ଚିବା ପରେ ବିବାଦ ଅଧିକ ମୌଳିକ ନ ରହି ଶାରୀରିକ ଆଡ଼କୁ ଅଗ୍ରସର ହେବାକୁ ଲାଗିଲା । ମିଃ ଦାସ ଟେବୁଲ ସିଟି ଟେବୁଲ ଲଗାଇବାକୁ ଯାଉଥିଲେ । ତାଙ୍କୁ ଉଣ୍ଡିଦେଇ ଟେବୁଲ ... ବାହାର କରି ସେଥିରେ ଅଗ୍ନି ସଂଯୋଗ କରି ଅଗ୍ରସର ହେଲେ ଉଦ୍ଧତର ମୂର୍ତ୍ତି ଧରି ।

ମୁଁ ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ାହୋଇ ରହିଲି । ଥରେ ଭାବିଲି ଗୀତା ଦର୍ଶନ ବୁଝାଇ ଏମାନଙ୍କୁ ଶାନ୍ତ କରିବି । ଆରମ୍ଭ କଲି, ପରମେଶ୍ୱରଙ୍କ ସୃଷ୍ଟିରେ··· । ମୋର ଉ: ପ୍ରା: ସ୍କୁଲରେ ପଢ଼ିବା ସମୟରେ ହେଡ଼ପଣ୍ଡିତ ମହାଶୟ ଶିଖାଇଥିଲେ, ଯେ କୌଣସି ରଚନା, ଗାଈ ହେଉ ବା ଘୋଡ଼ା ହେଉ ବା ପୋଷାକପତ୍ର ହେଉ ବା ଗ୍ରୀଷ୍ମ ଋତୁ ହେଉ, ଆରମ୍ଭ କରିବା ସମୟରେ ଉତ-ସର୍ଗିକାରେ ପରମେଶ୍ୱରଙ୍କଠାରୁ ଆରମ୍ଭ କରିବ ଏବଂ ତା'ର ଯେଉଁ ଫର୍ମୁଲା ସେ କରି ଦେଇଥିଲେ, ସେଇ ଫର୍ମୁଲା ଅନୁସାରେ ଆରମ୍ଭ କଲି ।

କିନ୍ତୁ "ପରମେଶ୍ୱର" ଶୁଣିବା ମାତ୍ରକେ ଦୁଇଜଣଯାକ କହି ଉଠିଲେ, ଷ୍ଟପ୍ ଦ୍ୟାଟ ନନ୍‌ସେନ୍‌ସ । "କୃଷ୍ଣ ନାମ ଆଜଠାରୁ ମୋ ଶ୍ରବଣେ ନ ଶୁଣାଇବଟି କେହି ଗୋ" ଭଙ୍ଗୀରେ ମୁହଁ, ତୀବ୍ର ଘୃଣାରେ ଉତ୍‌କ୍ଷିପ୍ତ ହୋଇ ।

ମନେ ମନେ ଦୁହିଁଙ୍କୁ "ପାଷାଣ୍ଡ" କହି ଝରକା ବାହାରେ ଧପଧପ ଦିଗକୁ ପ୍ରବାହମାନା ପୃଥିବୀର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଚେଷ୍ଟା କଲି । କିଆରି ସବୁ, ଧାନଗଛ, ପୋଖରୀ, ତାଳ ଗଛ, ପାହାଡ଼ ସବୁ ଗୋଟିଏ ସ୍ରୋତରେ ପଡ଼ି ଦଉଡ଼ୁଛନ୍ତି ବିପରୀତ ଦିଗକୁ ।

ସେମାନଙ୍କର କଳହ ସେତେବେଳେ ଉଚ୍ଚମାତ୍ରାରେ ପ୍ରବେଶ କରିଥାଏ । କାରଣ ସେମାନଙ୍କ ପୃଷ୍ଠପୋଷକ ମନ୍ତ୍ରୀମାନେ ସେତେବେଳେ ଐକ୍ୟ ହୋଇ ସାରିଲେଣି । ମଝିରେ ମଝିରେ ରେଳଗାଡ଼ି ଝନ୍‌ଝନ୍ ଶବ୍ଦରେ କମ୍ପି ଉଠୁଥାଏ । ସେମାନେ ମଧ୍ୟ କମ୍ପି ଉଠୁଥାଆନ୍ତି ତା' ସହିତ । କଣେଇ ଦେଖିଲି ଦୁଇ ଦିଗରୁ ଦୁଇ ହଳ ହାତ ପରସ୍ପରର ନାକ ପର୍ଯ୍ୟନ୍ତ ଯାଉଥାଏ ଓ ଫେରୁଥାଏ । ଅନବରତ ନଃଶେଷରେ । ଡର ମାଡ଼ୁଥାଏ; କିନ୍ତୁ ଭାରି ମଜା ବି ଲାଗୁଥାଏ ।

ରେଳଗାଡ଼ିର ଗତି ଧୀରେ ଧୀରେ କମିଆସିଲା ।

ମିଃ ଦାସ ଏଥର ଆଉ ବକାବକି ନ ମାନି ଅନ୍ୟର ବିଛଣା ବର୍ଥ୍ର ଉପରକୁ ଉଠାଇ ଦେଇ ନିଜ ବିଛଣା ପକାଇ ଦେଇ ଶୋଇ ପଡ଼ିଲେ । ଅନ୍ୟ ଜଣକ ଏଥିରେ ଆପତ୍ତି ନ କରି ନୀରବ ରହିଲେ । ହୁଏତ୍ ଏ ପରିବର୍ତ୍ତନର କାରଣ ନ ବୁଝିପାରିବେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ।

ପାନ୍, ବିଡ଼ି, ସିଗାରେଟ୍···

ଲଞ୍ଚ ପ୍ଲାଟ୍···ସାର୍ ?

ନୋଃ ।

ସେ ଷ୍ଟେସନରେ ଉଠିଲେ ଜଣେ ପ୍ରୌଢ଼ ଭଦ୍ରଲୋକ । ଦୁଗ୍ଧ ଧବଳ ପୋଷାକ, ପଞ୍ଜାବୀ ଓ ଧୋତିରେ ପିନ୍ଧା ସୁନ୍ଦର ମୂର୍ତ୍ତିଟିଏ । ସ୍ନିଗ୍ଧ ହସ । ଦେଖିବା ମାତ୍ରେ ଭକ୍ତି ଜାତହେଲା ।

ଭଦ୍ରଲୋକ ହଠାତ୍ ମୁରୁକି ହସି ମୋ ଆଡ଼କୁ ଚାହିଁଲେ । ତା'ପରେ ଜାରବରେ ମୋ ପାଖରେ ଛିଡ଼ା ହୋଇ ରହିଲେ । କିଛିକ୍ଷଣ ପରେ ଗୁଣୁ ଗୁଣୁ କରି ସୁନ୍ଦର ସ୍ୱରରେ ଗାଇବାକୁ ଲାଗିଲେ ଗୀତାର ଗୋଟିଏ ଶ୍ଳୋକ ।

ଗୀତାର ଶ୍ଳୋକ ଶୁଣି ମୋର ଭକ୍ତି ଆହୁରି ବଢ଼ିଗଲା ।

ଝ୍···ଅ···ପ୍ର···ପ୍ର···କ୍, ଜସ୍ ଜସ୍ ଜସ୍···

ତା'ପରେ ଝଅ ଝକ୍ ଜସ୍ ଜସ୍ ଜସ୍···

ତା'ପରେ ଝକ୍ ଜସ୍ ଜସ୍

ତା'ପରେ ଧପ୍ ଧପ୍ ଧପ୍, ଝଣ ଝଣ ଝଣ ଧପ ଧପ ଧପ ଧପ ଧପ ଧପ···(ଦ୍ରୁତ ତାଳରେ)

ଗାଡ଼ି ପୁଣି ଚଳିବାକୁ ଆରମ୍ଭ କଲା ଅଦ୍ଭୁତ ଭାଷାରେ ସଙ୍ଗୀତ ଗାଇ । ଗୀତା ଶ୍ଳୋକ ଶୁଣିବା ପରେ ମୋର ମନ ଦାର୍ଶନିକ ଚିନ୍ତାରେ ଭରି ଉଠିଥିଲା । ମନେ ମନେ ଭାବିଲି, ଗାଡ଼ିର ଏ କଉଣ ଭାଷା ବୁଝେଁ ? କି ଭାଷା ଏ ? ବାହାରକୁ ଅନାଇ ରହି ଭାବିବାକୁ ଲାଗିଲି···

…କୋଟି କୋଟି ସୂର୍ଯ୍ୟ ଘୂରି ବୁଲୁଛନ୍ତି ( କାହାକୁ କେନ୍ଦ୍ର କରି ? )। ପୁଣି ଗୋଟିଏ ଗୋଟିଏ ସୂର୍ଯ୍ୟ ଚ୍ଛରିପଟେ ଅସଂଖ୍ୟ ଗ୍ରହ ଚାରି ବୁଲୁଛନ୍ତି। ସେମିତି ଗୋଟିଏ ସୂର୍ଯ୍ୟ ଚ୍ଛରିପଟେ ବୁଲୁଛି ଆମ ମୃତ୍ତ କଣିକା, ମହାଶୂନ୍ୟରେ, ମହାକାଶରେ କୋଟି କୋଟି ବର୍ଷ ଧରି ! ସେଥିରେ ପୁଣି କେତେ ଦେଶ ଭିତରୁ ଆମ ଦେଶ। ସେଥିରେ ଆମ ପ୍ରଦେଶ, ସେଥିରେ ଗୋଟିଏ ସ୍ଥାନ, ସେ ସ୍ଥାନରେ ଗୋଟିଏ ରେଳଗାଡ଼ି, ସେ ଗାଡ଼ିରେ ଗୋଟିଏ ଡବା, ସେ ଡବାରେ କେତୋଟି ପ୍ରାଣୀ ଅମୃ ଗାଡ଼ିମାନରେ ବ୍ୟସ୍ତ।

ଝିକ ଝିକ ଝିଙ୍ଗା, ହାଃ ହାଃ ହାଃ…ରେଳଗାଡ଼ି ହସି ପକେଇଲା।

କିଛିକ୍ଷଣ ପରେ ଡବା ଭିତରକୁ ଦୃଷ୍ଟି ଫେରିବାରୁ ଦେଖିଲି ଏକ ଅଦ୍ଭୁତ ଦୃଶ୍ୟ !

ନବାଗତ ବଙ୍କା ଚାହିଁ ଭଦ୍ରଲୋକଙ୍କ ଗୋଡ଼ ଘଷି ଦେଉଛନ୍ତି !!

ଭକ୍ତିରେ ମୁଣ୍ଡ ନଇଁଗଲା।

ବଙ୍କସ୍ଥ ଭଦ୍ରଲୋକ କିଛିକ୍ଷଣ ଶୋଇ ରହିଲେ ଏବଂ ଆରାମ ଲାଗିବାରୁ ଅନ୍ୟ ଗୋଡ଼ଟି ବଢ଼ାଇ ଦେଇ, କଡ଼ ମୋଡ଼ି ଶୋଇଲେ। କିଛିକ୍ଷଣ ପରେ କେଜାଣି ହଠାତ୍ ଚମକି ପଡ଼ି ସେ ଉଠି ବସି ଆଶ୍ଚର୍ଯ୍ୟ ଭାବରେ ଦୁହିଁ ଗୋଡ଼ ଉଠାଇ ନେଇ ନମସ୍କାର କରି କହିଲେ, ଏ କଅଣ କରୁଛନ୍ତି ଆପଣ ?

ନବାଗତ ବ୍ୟସ୍ତ ହୋଇ କହିଲେ, ଆ ହା ହା, ନା ନା ନା, ଆପଣ ଶୋଇ ରହନ୍ତୁ, ମୁଁ ଗୋଡ଼ ଘଷି ଦେଇ ଆପଣଙ୍କର ସେବା କରେ। ସେ ସୁଯୋଗ ମୋତେ ଦିଅନ୍ତୁ ଆପଣ।

ନା, ନା, ନା ··

ହଁ ହଁ ହଁ…

ତା'ପରେ ସେଇ ପ୍ରଶ୍ନ, ଆପଣ କିଏ ?

କଅଣ ମିଳିବ ମୋର ପରିଚୟରୁ, ନବାଗତ ସବିନୟେ କହିଲେ।

ଆପଣଙ୍କର ପରିଚୟ ପାଇବାକୁ ମନ ବ୍ୟାକୁଳ ହେଉଛି, କରୁଣମିନତି ବଙ୍କସ୍ଥ ଭଦ୍ରଲୋକଙ୍କର। ମୁଁ ମଧ୍ୟ ମନେ ମନେ ସେ ମିନତିରେ- ଯୋଗଦେଲି।

ମୁଁ ଦେଖୁଛି…

ମୁଁ ଶୁଣିଲି ଚମକିତ ହେଲି ଯେ ନା' କ୍ଷୁଣି । ଏଇ ଦେଖ ଜୁନାମଧନ୍ୟ… । ଯାହାଙ୍କର ଦର୍ଶନ ଲକ୍ଷଧିକ ଗ୍ରନ୍ଥଲୋକଙ୍କ ପାଇଁ କ୍ଷୁଣିକରେ ଖ୍ୟାତି ଅର୍ଜନ କରିଛି ! ଧନ୍ୟ ମୋର ଅଜିର ଯାତ୍ରା !!

ବଙ୍ଗୀୟ ଭଦ୍ରଲୋକ ଏଥର ବ୍ୟସ୍ତ ଭାବରେ ଉଠିଲେ ଓ ନବାଗତଙ୍କର ଚରଣ ସ୍ପର୍ଶ କଲେ ।

ତା'ପରେ, ସେ ବର୍ଙ୍କ୍ରୁ ନିଜର ବିଛଣା ଉଠାଇ ନେଇ ତଳେ ରଖି ଦେଇ, ନବାଗତଙ୍କର ବିଛଣା ନେଇ ସେଠାରେ ବର୍ଙ୍କ ଉପରେ ପାରିଦେଲେ ଏବଂ ନବାଗତଙ୍କୁ ଅତି ବିନମ୍ରର ସହିତ ଅନୁରୋଧ କଲେ ବର୍ଙ୍କ ଉପରେ ଶୋଇବାକୁ ।

ନବାଗତ ଏହି ବିନମ୍ର ଅନୁରୋଧ ଏଡ଼ି ନ ପାରି ଉଠି ଶୋଇଲେ ଓ ନାନା ଶ୍ଳୋକ ଗାଇବାକୁ ଲାଗିଲେ । ମଝିରେ ମଝିରେ ତା'ର ଅର୍ଥ ବୁଝାଇବାକୁ ଯାଇ ସେ ନିଜ ଦେଶରେ ପ୍ରାଧାନ୍ୟତା ପ୍ରତି କଟୁ ମନ୍ତବ୍ୟ ଓ ଅନ୍ୟ ଦେଶର ସାଧୁତାର ପ୍ରଶଂସା କରିବାକୁ ଲାଗିଲେ । ସେଥିରେ ତାଙ୍କ ପ୍ରତି ମୋର ସମ୍ମାନ ଆହୁରି ବଢ଼ିଗଲା ।

କିଛିକ୍ଷଣ ପରେ…

ନବାଗତ ପୌଢ଼ ଭଦ୍ରଲୋକ ସୁଖ ନିଦ୍ରାରେ ଘୁଙ୍ଗୁଡ଼ି ମାରୁଛନ୍ତି । ବର୍ଥ ଉପରେ ଦୁଇ ପ୍ରତାପୀ ମଧ୍ୟ ପରସ୍ପର ଆଡ଼କୁ ମୁଣ୍ଡକରି ଶୋଇଛନ୍ତି । ବଙ୍ଗୀୟ ଭଦ୍ରଲୋକ ଡବାଟିର ଚଟାଣ ଉପରେ ବିଛଣା ପାରି ଶୋଇଲେଣି । ମୁଁ ତ୍ୟାଗ ଛୁଡ଼ାହୋଇ ରହିଛି । ଗୋଡ଼ ଦୁଇଟି ଅନେକ ବେଳ ଛୁଡ଼ାହୋଇ ରହିଥିବାରୁ ।



# ନିମନ୍ତ୍ରଣ

ଚିଠି ଚଢ଼େ ଚିନ୍ତା !

ରବୀନ୍ଦ୍ର ଚିଠିଟି ରେଣୁ ହାତକୁ ବଢ଼ାଇ ଦେଲେ । ରେଣୁ ଚିଠିଟି ପଢ଼ି ମୁଣ୍ଡରେ ହାତ ଦେଇ ଚୌକିଟିରେ ବସି ପଡ଼ିଲା ଏବଂ ସାଙ୍ଗେ ସାଙ୍ଗେ ଚମକି ଉଠି-ପଡ଼ିଲା । ଗୋଟିଏ ବଡ଼ ଦୁର୍ଘଟଣାରୁ ସେ ଅଳ୍ପକେ ବଞ୍ଚିଗଲେ । ଘରେ ଏଇ ଗୋଟିଏ ମାତ୍ର ଚୌକି । ବହୁଦିନ ଧରି ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ବିରୁଦ୍ଧରେ ଯୁଦ୍ଧ କରି ସେ କ୍ଷତ ବିକ୍ଷତ । ସେ ଆଜି ମନୁଷ୍ୟକୁ ପୃଥିବୀର ସେ ଅଦୃଶ୍ୟ ଶକ୍ତିରୁ ବଞ୍ଚାଇ ରଖି ଆରାମ ଦେବାକୁ ନାରାଜ । ଜାଣେଣି କାହାପାଇଁ ବ୍ୟବହାର କଲେ ଅଧିକତର ଲାଭପ୍ରଦ ଏବଂ ନିରାପଦ ହୁଅନ୍ତା; କିନ୍ତୁ ଘରେ ଚୌକି ଥିବାର ଯେଉଁ ଗର୍ବ ବା ପରିତୋଷ ସେ ରେଣୁକୁ ଦେଉଛି, ତାହା ଯେ କୌଣସି ଚୌକିଦାରର ଗର୍ବ ବା ପରିତୋଷଠାରୁ ଊଣା ନୁହେଁ । ଏଇ ଟିକିଏ ମାନସିକ ଦୁର୍ବଳତା ପାଇଁ ରେଣୁ ବହୁ କଷ୍ଟରେ ଯୋଡ଼ାଯୋଡ଼ି କରି ଚୌକିର ଚୌକିତ୍ୱ ବଜାୟ ରଖିଛି । ବସିବାକୁ ଗଲେ ପ୍ରଥମେ ଖୁବ ମନୋଯୋଗ ସହ ଚୌକିର ତତ୍କାଳୀନ ଶାରୀରିକ ଅବସ୍ଥା ପରୀକ୍ଷା କରି ଅତି ସନ୍ତର୍ପଣରେ ଶରୀର ଭାରର କେତେକ ଅଂଶମାତ୍ର ଲଦିବାକୁ ହୁଏ । ରେଣୁ ଚିଠିଟି ପଢ଼ି ହଠାତ୍ ଦୁର୍ଭାବନାରେ ସବୁ ଭୁଲି ଯାଇଥିଲା ।

ଚିଠିଟି ଆସିଛି ତାର ସାନ ଭଉଣୀ ମଲ୍ଲିକା ପାଖରୁ । ଭଉଣୀ ବିବାହ କରିଛି ଖୁବ ଧନୀ ଘରେ । ତାର ସ୍ୱାମୀ ଧନଞ୍ଜୟ ବାବୁ ଧନୀର ଏକମାତ୍ର ପୁତ୍ର ଏବଂ ଉଚ୍ଚପଦସ୍ଥ କର୍ମଚାରୀ ମଧ୍ୟ । ବିବାହ ବାର୍ଷିକରେ ମଲ୍ଲିକା ରେଣୁ ଓ ରବୀନ୍ଦ୍ରକୁ ନିମନ୍ତ୍ରଣ ପଠାଇଛି । ଖାଲି ନିମନ୍ତ୍ରଣ ନୁହେଁ, ବହୁ ଅନୁନୟ ବିନୟ କରି ଯିବାକୁ ମଧ୍ୟ ଲେଖିଛି । ଏହା ପୂର୍ବରୁ ସେମାନେ ଅନେକ ଥର ନିମନ୍ତ୍ରଣ ପାଇଅଛନ୍ତି । ଆନନ୍ଦ ପରିବର୍ତ୍ତେ ଏ ନିମନ୍ତ୍ରଣ ଦେଇଛି ମାନସିକ ଯାତନା । ପ୍ରତ୍ୟେକ ଥର ବହୁ

ଆଲୋଚନା ପରେ ଗୋଟିଏ ବିଶ୍ରାମ ଯୋଗ୍ୟ କାରଣ ଦର୍ଶାଇ ମାନସିକ ଯାତନା ଏଡ଼ାଇ ନ ପାରିଲେ ମଧ୍ୟ ନିମନ୍ତ୍ରଣ ଏଡ଼ାଇବାକୁ ସମର୍ଥ ହୋଇଥିଲେ । ଏଥିର ଅଧିକ ଦୁଶ୍ଚିନ୍ତାର କାରଣ ହୋଇଛି ଧନଞ୍ଜୟ ବାବୁ କିଛି ଦିନ ପରେ ତାଙ୍କ ମଠର ନେଇ ଅଭିଷେକ ନେବାକୁ । ରବୀନ୍ଦ୍ର ଓ ରେଣୁ ଥାଆନ୍ତି ତେଲଙ୍ଗା ବଜାରର ଗୋଟିଏ ସଂକୀର୍ଣ୍ଣ ଗଳିର ଶେଷ ମୁଣ୍ଡରେ, ଗୋଟିଏ କ୍ଷୁଦ୍ର ଘର ଭଡ଼ା ନେଇ । ଘରର କ୍ଷୁଦ୍ରତା, ଗଳିର ସଂକୀର୍ଣ୍ଣତା ବା ସ୍ଥାନଟିର ଅସ୍ୱାସ୍ଥ୍ୟକରତା ସହିତ ଘର ଭିତରର କୌଣସି ସଂପର୍କ ଘରେ ମଳିନ ରହିନାହିଁ । ଧନଞ୍ଜୟ ବାବୁ ଥାଆନ୍ତି ଚୌଧୁରୀ ବଜାର ପାଖେ ନିଜର ପ୍ରାସାଦୋପମ ଅଟ୍ଟାଳିକାରେ ।

ରେଣୁ ଚୌକିର ପ୍ରତ୍ୟାଖ୍ୟାନ ଗୌରବରେ ସହ୍ୟ କରି ପାରିଲାନାହିଁ । ଅକ୍ଷଣ ରାତିରେ ସେ ଚୌକିକୁ ଗୋଟିଏ ଗୋଇଠା ମାରିବାକୁ ଯାଉଥିଲା । ରବୀନ୍ଦ୍ର ଆତଙ୍କିତ ହୋଇ ତାକୁ କୋଳକୁ ଉଠେଇ କହିଲା, ଏହିକ୍ଷଣି ସେମାନେ ଆସି ପହଞ୍ଚିବେ ଯେ । ବସିବାକୁ ଦେବ କଅଣ ? ଅଗତ୍ୟା ରେଣୁ ମୁଣ୍ଡରେ ହାତ ଦେଇ ତଳେ ବସି ପଡ଼ି କହିଲା, 'ଟିକିଏ ଆରାମ କରି ଦୁଶ୍ଚିନ୍ତା କରିବାର ଉପାୟ ନାହିଁ ଏ ଘରେ । ହେ ଭଗବାନ୍ ··କାହିଁକି···ଛୁ । ଅନେକ କ୍ଷଣପରେ ରବୀନ୍ଦ୍ରକୁ ସେ ପୁଣି କହିଲା, ଆଜ ଭାବୁଚ କଅଣ । ବସା ଛାଡ଼ି ପଳାଇଯିବା ଛଡ଼ା ଆଉ ଉପାୟ ନାହିଁ; କିନ୍ତୁ ସେଥର ଅଜୟ ବାବୁଙ୍କ ଘରକୁ ଏହିପରି ପଳାଇ ଯାଇ ଯେତେ ଖର୍ଚ୍ଚ ହେଲା ଏବଂ ଯାହା ଅପମାନ ପାଇଲ ତ ଜାଣ । କଅଣ କରିବ କହ । ଆଉ ସମୟ ନାହିଁ ଯେ ।

ରବୀନ୍ଦ୍ର ହସି କହିଲା, ମୁଁ କହେ, କାହିଁକି ? ଏତେ ଲଜ୍ଜା କାହିଁକି ? ହୁଅନ୍ତୁ ନା ସେ ଧନୀ । ନିଜର ଅବସ୍ଥା ପ୍ରତି ଏତେ ଘୃଣା କାହିଁକି । ମୁଁ କହୁଚି, ଭୁଲ ଏଥର ଯିବା । ତୁମର ଏ ଦୁର୍ବଳତା କେବଳ ନିଜକୁ ପୋଡ଼ୁଛି ସିନା କାହାର କିଛି କ୍ଷତି କରୁ ନାହିଁ । ଧନୀମାନେ ତ ଶୋଷକ ।

ତିକ୍ତ ସ୍ୱରରେ ରେଣୁ କହିଲା, 'ତୁମର ସାମ୍ୟବାଦ ଭଷପୁରେ ବକ୍ତୃତା ରଖ ।'

ମ୍ଳାନ ଭାବରେ ରବୀନ୍ଦ୍ର କହିଲା, ରାଣି ! ମେ ବୁଝିବ ନାହିଁ ପୁଞ୍ଜିବାଦ ଉପରର ବିଶୃଙ୍ଖଳ ଭାବରେ ଖାଲି ଦୁନିଆର ଦାରିଦ୍ର୍ୟ ବଢ଼ାଇ ନାହିଁ, ଦରିଦ୍ରର

ଲୋକର ମୋହ ବଢ଼ାଇ ତାର ଆତ୍ମାକୁ ମଧ୍ୟ ମାରିଦେଉଛି । ଏ ସଭ୍ୟତାର ଏହା ହିଁ ସବୁଠାରୁ ପୀଡ଼ାଦାୟକ । ଏ ଦୁର୍ବଳତାକୁ ତୁମେ କାଟିବାକୁ ଦଅନାହିଁ । ରେଣୁର ହାତ ଧରି ସେ ଜୋରରେ ହସି କହିଲା, କ୍ଷୁଦ୍ର ହୃଦୟ ଦୌର୍ବଲ୍ୟମ୍...

ରେଣୁ ହତ୍‌ବୁଦ୍ଧିର ହସ ହସି ଗଲା, ମୋ ହାତ ଧର। ତୁମେ ନେଇ ଚାଲ ସଖା ମୁଁ ଯେ ପଥ ଚିହ୍ନେ ନା...କିନ୍ତୁ ଲୁଚ !!! ରେଣୁ ପୁଣି ମୁଣ୍ଡରେ ହାତ ଦେଇ ବସି ପଡ଼ିଲା ।

କାହିଁକି ତୁମର ସେତିକି ସଫା ଶାଢ଼ୀ, ଯାହାକୁ ପିନ୍ଧିଲେ ତୁମକୁ...

—ହର୍ଜିର ଅପ୍ରଶସ୍ତ ଭଲ ଦୁଃଖେ; କିନ୍ତୁ ଏପରି ଶାଢ଼ୀ ତ ମଫସଲର ଦାସୀମାନେ ବି ପିନ୍ଧନ୍ତି ନାହିଁ ।

—ଧନଲୋକ ଏବଂ ତାଙ୍କର ଦାସୀ କେଉଁର କପଡ଼ା ଶାଢ଼ୀ ଲୁଗା ପିନ୍ଧନ୍ତି, ତାହା ଅନୁସନ୍ଧାନ କରି ସେହି ଅନୁସାରେ ନିଜର ଶାଢ଼ୀ ଲୁଗାରେ ଫେରି କରିବ ନା କଅଣ ! ରେଣୁ ଆଉ ସମ୍ଭାଳି ପାରିଲା ନାହିଁ । ତା ଆଖିରୁ ଅଶ୍ରୁ ଆବରଣ ଝରିବାକୁ ଲାଗିଲା । ରବୀନ୍ଦ୍ର ଗୋଟିଏ ଚୁମ୍ବନ ଦେବାକୁ ଯାଉଥିଲା । ରେଣୁ ଠେଲିଦେଇ କହିଲା, କାହିଁକି ଯେ ବାପା ମୋ ବେକରେ ପଥର ବାନ୍ଧିଲେ; କି ସୁଖ ମୁଁ ପାଉଛି...ଖାଲି ଦର୍ଶନ ଶୁଣୁଥିବି...

ରବୀନ୍ଦ୍ରକୁ ଏପରି ଅନେକ ଥର ଶୁଣିବାକୁ ହୋଇଛି । ଷାଠିଏଟି ଟଙ୍କାର କିରାଣୀ ସେ । ରେଣୁର ଆଶାନୁରୂପ ବ୍ୟୟ କରିବାକୁ ଗଲେ ଆୟ ଅନ୍ତତଃ ତିନିଅଙ୍କ ବିଶିଷ୍ଟ ହେବା ଦରକାର । ପିଲା ପଢ଼ାଇ ଓ ଅନ୍ୟାନ୍ୟ ନାନା ଉପାୟ କରି ସୁଦ୍ଧା ରବୀନ୍ଦ୍ର ଆୟ ମାସକୁ ତିନି ଅଙ୍କକୁ ଆଣିପାରେନାହିଁ । ତାର ସମସ୍ତ ଆୟ ରେଣୁର ମନ ମୁତାବକ ଖଣ୍ଡେ ଶାଢ଼ୀକୁ ନିଅଣ୍ଟ । ରେଣୁର କଥାରେ ଆଘାତ ପାଇଲେ ବି ରବୀନ୍ଦ୍ର ହସି କହିଲା, ନାରୀର ଯୌନ ପ୍ରବୃତ୍ତି ତାର ସମସ୍ତ ଦେହ ଓ ମନରେ ବିକ୍ଷିପ୍ତ । ସାମାନ୍ୟ ଗୋଟାଏ ଉପହାର, ଟିକିଏ ଭଲ କଥାରେ ମଧ୍ୟ ତାର ଯୌନ ପ୍ରବୃତ୍ତି ଚରିତାର୍ଥ ହୁଏ । ତୁମର ଆଶା ଓ ଆକାଂକ୍ଷା ମୁଁ ପୂରଣ କରିପାରୁନାହିଁ । ମୁଁ ପରାଜୟ ସ୍ୱୀକାର କରୁଛି । ମୁଁ ବୁଝିପାରୁଛି ଏହିପରି ହତାଶାରେ କେତେଦିନ ରହିଲେ, ତୁମେ ହୁଏତ ପାଗଳ ହୋଇଯିବ । ଏହାର

କାରଣ ମୋତେ ତାହା ଭାବନ୍ତୁ ମୁଁ ମର୍ମେ ମର୍ମେ ଅନୁଭବ କରୁଛି; କିନ୍ତୁ ଉପାୟ କଅଣ ।

ତେବେ ବିବାହ କଲ କାହିଁକି ? ରେଣୁ ତାର ସ୍ୱରରେ ବିଷ ମିଶାଇ କହିଲା ।

କିନ୍ତୁ ବୈଦିକ ଜାତକରେ ତୁମର ଓ ମୋର ରାଜ ଯୋଟକ ହୋଇଥିଲା । ତୁମର ବାପା ଜବରଦସ୍ତି କରିଥିଲେ ଏ ବିବାହ ପାଇଁ—ମୋର କିଛି ଆପତ୍ତି ନଥିଲା ।

—କାହିଁକି ତୁମର ଆପତ୍ତି ଥିଲା ଶୁଣେ ?

—ତୁମରି ଆକାଂକ୍ଷା ସହିତ ମୋର କ୍ଷମତା ଖାପ ଖାଇବ କି ନା ମୋର ସନ୍ଦେହ ହେଉଥିଲା ।

—ସନ୍ଦେହ ଯଦି ଥିଲା, ତେବେ ଦୟାକରି ବିବାହ ନ କରିବା ଉଚିତ ଥିଲା ।

—କିନ୍ତୁ ସୌଭାଗ୍ୟ ବା ଦୁର୍ଭାଗ୍ୟରୁ ତୁମକୁ ଯେଉଁଦିନ ଦେଖି ପକାଇଲି ଏବଂ ପ୍ରଥମ ଦେଖାରେ ହିଁ…ବାସ୍ । ମନର ସେଇ ବିମୁଗ୍ଧ ଅବସ୍ଥାରେ ମୋର କ୍ଷମତାକୁ ମୁଁ ବହୁଗୁଣ କରି ଦେଖିଲି । ମୋର କ୍ଷମତା ଅବଶ୍ୟ ଅନେକ ଗୁଣ ବଢ଼ିଛି; କାରଣ ମୁଁ ବର୍ତ୍ତମାନ ଲେଖକ…ଯାହା ହେବା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି…କିନ୍ତୁ… ସେ କଥା ବର୍ତ୍ତମାନ ଥାଉ । ସେମାନେ ବର୍ତ୍ତମାନ ଆସିଯିବେ । ମୋ କଥା ମାନ । ନିଜର ପରିଚୟ ଓ ସୌନ୍ଦର୍ଯ୍ୟକୁ ଶାଢ଼ୀରେ ରଖନା । ମୟୂରପକ୍ଷଧାରୀ ବାୟସର କଥା ଜାଣିଚ ?

—ମୁଁ କଦାପି ସେ ଶାଢ଼ୀ ପିନ୍ଧିବି ନାହିଁ । ଆଉ ଯଦି ବା ସେ ଶାଢ଼ୀ ପିନ୍ଧେ ହାତ ନାକ କାନରେ କଅଣ ପିନ୍ଧିବି ! ରେଣୁ ହଠାତ ଭାବବିହ୍ୱଳ କହିଲା ।

ରବୀନ୍ଦ୍ର ଏଥର ମୁଣ୍ଡରେ ହାତ ଦେଇ ବସିବାକୁ ଯାଉଥିଲା ଚୌକି ଉପରେ, ଚମକି ଉଠି ପଡ଼ିଲା । ଏ ସମସ୍ୟା ତାର ବୁଦ୍ଧିର ବାହାରେ । ସନ୍ଧ୍ୟା ହେବାକୁ ଆଉ ବେଶି ବେଳ ନାହିଁ । ଏବେକ୍ଷଣି ଧନଞ୍ଜୟ ଆସିଯିବ । ସେ ଅସହାୟ ଭାବରେ ରେଣୁ ଆଡ଼କୁ ଅନାଇ ରହିଲା । ରେଣୁର ଅଧରରେ ଟିକିଏ ହସ ଖେଳିଗଲା । ରବୀନ୍ଦ୍ରର ମୁଣ୍ଡରେ ହାତ ବୁଲାଇ ବୁଲାଇ ସେ କହିଲା, 'ତୁମେ ମୋ କଥା ଏଥର ମାନ । ପଡ଼ୋଶୀ ଘରର ଦୁର୍ଲଭ ବାବୁଙ୍କ ସ୍ତ୍ରୀ ମୋତେ ଭାରି ଭଲ ପାଆନ୍ତି । ମୁଁ

ପାଉଥିବ ନୂଆ ନୂଆ ଶାଢ଼ୀ ଓ ଗହଣା କେତେଥର ମାଡି ଆସିବ । ତୁମେ କାହିଁକି ଯେ ଏଥିରେ ଆପତ୍ତି କର, ମୁଁ ବୁଝେନା ।'

ରଞ୍ଜନ ଏଥର ହସକୁ ଦେଇ କହିଲା, 'କେତେଥର କହିଛି ମୋର ସ୍ଥିତି ଜାଣି ...'

ଏମିତି ସମସ୍ତେ କରନ୍ତି । ରେଣୁ ଅଧୀର ସ୍ୱରରେ କହିଲା ।

ରଞ୍ଜନ କିଛିକ୍ଷଣ ନୀରବରେ ବସି ରହିଲା । ରେଣୁ ଉତ୍ସାହ ପାଇ କହିଲା, 'ଏ ମଧ୍ୟ ତୁମର ଟଙ୍କା ଏବଂ ଦାମ୍ଭିକତା ଯେ ଦୁନିଆରେ ଆଜି କାହାରି ସାହାଯ୍ୟ ନେବ ନାହିଁ ।'

ତୁମର ଯାହା ଇଚ୍ଛା କର । ଏଥର ନିମନ୍ତ୍ରଣ ରକ୍ଷା ନ କରିବା ମୋତେ ଭଲ ଲାଗୁନାହିଁ ।

ଦୁର୍ଲଭ ବାବୁ ଘର ଘଣ୍ଟାରେ ଢଂ ଢଂ ଛ'ଟା ବାଜିଲା । ରେଣୁ ବ୍ୟସ୍ତ ହୋଇ ତାଙ୍କ ଘରକୁ ଦୌଡ଼ିଗଲା ଏବଂ କିଛି ସମୟ ପରେ ଆଣିଲା ଖଣ୍ଡେ ବହୁମୂଲ୍ୟ ବନାରସୀ ଶାଢ଼ୀ ଓ ଅନେକଗୁଡ଼ିଏ ଗହଣା । ରଞ୍ଜନ ପୂର୍ବପରି ଖଟକୁ ମୁହଁ ପୋତି ବସି ରହିଥିଲା । ରେଣୁ ନୃତ୍ୟର ଛନ୍ଦରେ ଦୌଡ଼ି ଆସି ରଞ୍ଜନକୁ ଠେଲି ଦେଇ କହିଲା, କାହିଁକି ମିଛରେ ଭାବୁଛ । ଦେଖ ଏ ଶାଢ଼ୀ ମୋତେ କେମିତି ମାନୁଛି । ପ୍ରଶଂସା ଆଶାରେ ରେଣୁ ଶାଢ଼ୀଟି ତାର ଉନ୍ନତ ବକ୍ଷ ଦେହରୁ ଲମ୍ବାଇ ଦେଲା । ରଞ୍ଜନ ଶୂନ୍ୟ ଦୃଷ୍ଟିରେ ଚାହିଁରହି କହିଲା, 'ବାଃ, ବେଶ୍ ।'

ଦୁଆରେ ମୋଟରର ଆସିବାର ଶବ୍ଦ ଶୁଣାଗଲା । ରେଣୁ ଚମକି ପଡ଼ି ଝଟିତି ଶାଢ଼ୀଟି ଗୋଟିଏ ଟ୍ରଙ୍କ ଭିତରେ ଏବଂ ଗହଣାଗୁଡ଼ିକ ଗୋଟିଏ ବାକ୍ସ ଭିତରେ ରଖିଦେଲା ।

ରଞ୍ଜନ ସେହିପରି ଶୂନ୍ୟ ଦୃଷ୍ଟିରେ ଚାହିଁ ରହି କହିଲା, 'କୁନି ଉଠିଲାଣି' ତାକୁ କଅଣ କରିବ ?

ତାକୁ ଦୁର୍ଲଭ ବାବୁଙ୍କ ଘରେ ରଖିଦେଇ ଯିବା । ରେଣୁ ବ୍ୟସ୍ତ ହୋଇ କୁନିକୁ ଶୁଆଇ ଦେବାକୁ ଗଲା । କୁନିର ବୟସ ବର୍ଷେ । ସେ ଟିକିଏ କାନ୍ଦି ପୁଣି ଶୋଇପଡ଼ିଲା ।

ଧନଞ୍ଜୟ ବାବୁଙ୍କ ସ୍ୱର ବାହାରେ ଶୁଣାଗଲା; କଟକରେ ଏମିତି ନାଗା ବଢ଼ୁଛି !! ସାବଧାନ, ସେଠି ନର୍ଦ୍ଦମା । ଏଠି ଏମାନେ ଥାଆନ୍ତି କଣରେ !!!

—ଆରେ, ଝିଅ ଶୁଣିବ । ମଲ୍ଲିକା ବାଧାଦେଇ କହିଲା ।

—ରବୀନ୍ଦ୍ର ବାବୁ ।

—ଝିଅ ।

—ରେଣୁ ତରତର ଘର ବାହାରି ଆସିଲା ।

ମଲ୍ଲିକା ଅଧୀର ଭାବରେ କହିଲା, 'କଣ ଝିଅ, ତୋ କାମ ସରିନାହିଁ !! ଶୀଘ୍ର କାମ ସାର ଆହୁରି କେତେ ଜାଗାକୁ ଯିବାକୁ ହେବ । ସମସ୍ତେ ଘର' ଭିତରକୁ ଗଲେ । ମଲ୍ଲିକା ପିନ୍ଧିଛି ଖଣ୍ଡେ ବହୁମୂଲ୍ୟ ଶାଢ଼ୀ । ଦେହର ସବୁ ସମ୍ଭବ ଅସମ୍ଭବ ସ୍ଥାନ ବହୁମୂଲ୍ୟ ଗହଣାରେ ପୂର୍ଣ୍ଣ । ଗୋଡ଼ରେ ହାଇ ହିଲ୍ ଜୋତା । ଧନଞ୍ଜୟ ବାବୁ ପିନ୍ଧିଛନ୍ତି ବହୁମୂଲ୍ୟ ଧୋତି ଓ ପଞ୍ଜାବୀ । ହାତରେ ଧରି ହୋଇଛି ପାଇପ୍ । ରେଣୁ ମ୍ଳାନ ଭାବରେ ଥରେ ରବୀନ୍ଦ୍ରକୁ ଚାହିଁଲା । ରବୀନ୍ଦ୍ର ଟିକିଏ ହସିଲା । ଧନଞ୍ଜୟ ବାବୁ ଚୌକି ଉପରେ ବସି ପଡ଼ିଲେ । ରେଣୁ ଦୌଡ଼ିଯାଇ ଚୌକି ପଛରେ ଛିଡ଼ା ହୋଇ ରହିଲା ।

—ଝିଅ, ତୁ ଆଉ ଛିଡ଼ା ହନା, ଜଲଦି ଯା ।

—ହଉ ଯାଉଛି । ଟିକିଏ ବସ୍ । ଘୋଡ଼ାରେ ଚଢ଼ି ଆସିଚୁ ନା କଅଣ ।

—ବେଳ ନାହିଁ । କଲିକତାରୁ ସନ୍ଦେଶ ଆସିଲା କି ନା, ମାଣିକ ପାଟଣାରୁ ଦହି ଆସିଲା କି ନା, ପୁଣି କଲେକ୍ଟର ଓ ଚିଫ୍ ସେକ୍ରେଟେରୀଙ୍କ ସ୍ତ୍ରୀମାନଙ୍କୁ ଆଣିବାକୁ ହେବ । ମଲ୍ଲିକା ରେଣୁକୁ ଠେଲିବାକୁ ଲାଗିଲା । ଶୀଘ୍ର ଲୁଗାପଟା ପିନ୍ଧି ଆସିବାକୁ । ରେଣୁ ଭୟରେ ଆଖି ବଡ଼ ବଡ଼ କରି ବ୍ୟାକୁଳ ଭାବରେ ରବୀନ୍ଦ୍ର ଆଡ଼େ ଅନାଇ ରହିଲା । ରବୀନ୍ଦ୍ର ଟିକିଏ ହସି ଚୌକିଟିକୁ ଧରି ଛିଡ଼ାହେଲା ।

ରେଣୁ ଅଳ୍ପ ସମୟପରେ ଶାଢ଼ୀ ବଦଳାଇ ଗହଣା ପିନ୍ଧି ଆସିଲା ।

—ଝିଅ, ତୋତେ ଆଜ କି ସୁନ୍ଦର ଦିଶୁଛୁ । ଏ ଗହଣା, ଶାଢ଼ୀ କେବେ କଲୁ ?

—ମନେ ନାହିଁ । ସେ କଣ ଆଣିଛନ୍ତି । ସୁନ୍ଦର ଶାଢ଼ୀ ଗହଣା !

—ବାଃ, ପସନ୍ଦ ଅଛି ଏକ୍କେବ ମାନିବାକୁ ହେବ । କହୋ ସନ୍ନ୍ୟାସୀ, ବିବାହ ହେବାକୁ ତ ମନା କରୁଥିଲ । ଏ କଅଣ !

ରବୀନ୍ଦ୍ର କିଛି ସମୟ ଅବାକ୍ ହୋଇ ରହିଁ ରହି କହିଲା, ତୁମମାନଙ୍କର ସେଇଁ ମୂର୍ଖଳା ରୂପ ! ମୁଁ ତ ଭାବେ......

—ବୁଝିଲ ତ ଏବେ

—ମନେ ମନେ

—ହଉ ଯାଅ, ଲୁଚି ଛିଡ଼ ଅସ

ରବୀନ୍ଦ୍ର ଚୌକିଟି ଛାଡ଼ି ଉଠି ଯାଉଥିଲା । ରେଣୁ ଶୀଘ୍ର ଯାଇ ଚୌକି ପଛରେ ଛିଡ଼ା ହେଲା ।

ରବୀନ୍ଦ୍ର ଅନ୍ୟ ଘରକୁ ଯାଇ ନିସ୍ତବ୍ଧ ଭାବରେ ଛିଡ଼ା ହୋଇ ରହିଲା । ରେଣୁର ଶାଢ଼ୀ ଗହଣାକୁ ଝାପ ଖୁଆଇ ସେ ପିନ୍ଧିବ କଅଣ ! ଲୁଗା ଧୋବା ଏ ପର୍ଯ୍ୟନ୍ତ ଦେଇ ନାହିଁ । ସବୁ ଠାରୁ ଭଲ ଅଛି ତା'ର ଖଣ୍ଡେ ସଫା ମୋଟ ପଞ୍ଜାବୀ ଓ ଖଣ୍ଡେ ଅଧମଇଳା ଲୁଗା ।

ଟିକଏ ଏ ଘରକୁ ଆସିବ କି ? ରବୀନ୍ଦ୍ର ଅଧୀର ଭାବରେ ରେଣୁକୁ ଡାକିଲା ।

ତୁମେ ଯାହା ପାଉଛ ଶୀଘ୍ର ପିନ୍ଧି ଆସ । ରେଣୁ ନ ଯାଇ କହିଲା । ରେଣୁ ଆସି ନ ଟାଣିବାର କାରଣ ବୁଝିପାରି ପୁଣି ଥରେ ହସିଲା ଏବଂ ସେହି ସଫା ମୋଟ ପଞ୍ଜାବୀ ଓ ଅଧମଇଳା ଲୁଗା ପିନ୍ଧି ବାହାରି ଆସିଲା । ରେଣୁ ତାକୁ ମୁହଁ ପୋଛି ଛଡ଼ାଇଦେଲା ।

ସମସ୍ତେ ବାହାରିଲେ । ମଲ୍ଲିକା ପଚାରିଲା, ଅପା, କୁନ ?

—ଇଲେ ବୋଉ, ତା କଥା ମନେ ନାହିଁ । ଟିକଏ ଅପେକ୍ଷା କର ମୁଁ ତାକୁ ଦୁର୍ଲଭ ବାବୁଙ୍କ ଘରକୁ ଦେଇ ଆସେ ।

—ସେ ଉଠିଲେ ତ ତୋ ଛଡ଼ା ଆଉ କାହା ପାଖରେ ରହିବ ନାହିଁ । ତାକୁ ନେଇ ଚାଲନ୍ତୁ !

—ନା ସେ ଏମିତି ଅନେକ ବେଳ ଯାଏ ଶୋଇଛି । ଉଠିଲେ ମୋ ପାଖକୁ ପଠାଇ ଦେବାକୁ କହି ଆସିଛି । ତା ଦେହ ଖରାପ ଅଛି । ନହେଲେ ଭଲ ହେବ ନ ।

ସମସ୍ତେ ମଣ୍ଡପରେ ବସିଲେ ଆଜି ମଲ୍ଲିକାର ବିବାହ ହେବ । ସହରର ସବୁ ଧନୀ ମାନୀ ବ୍ୟକ୍ତି ନିମନ୍ତ୍ରିତ । ଘରଟି ବିଜୁଳି ଆଲୁଅ ଓ ବହୁମୂଲ୍ୟ ପଦାର୍ଥରେ ସଜା ହୋଇଛି । ରେଣୁ ଆଜି ତାର ସବୁଠୁ ଭଲ ଫ୍ରକଟି ପିନ୍ଧି ବାହାରକୁ ଗଲାଣି, ଗୋଟିଏ ସାମାନ୍ୟ ଉପହାର କିଛି ସେ ବାପାଙ୍କଠାରୁ ପାଇନାହିଁ । ଗୋଟିଏ ଦୀର୍ଘ ନିଃଶ୍ୱାସ ତାର ଅଜାଣତରେ ବାହାରି ଆସିଲା ।

ଗୋଟିଏ ଘରେ ଗୋଟିଏ ବଡ଼ ଟେବୁଲ ଉପରେ ଅତିଥିମାନେ ଦେଇଥିବା ନାନା ଜାତିର ବହୁମୂଲ୍ୟ ଉପହାର ସଜା ହୋଇ ରହିଛି । ମଲ୍ଲିକା ସବୁଙ୍କ ଉପହାରଗୁଡ଼ିକ ରେଣୁକୁ ଦେଖାଉଛି । ରେଣୁ ନୀରବରେ ସେମାନଙ୍କୁ ଅନୁସରଣ କରୁଛି । ହଠାତ୍ ଘରର ଫାଟକ ପାଖରେ ଉଚ୍ଚ ସ୍ୱରରେ ଶିଶୁର କ୍ରନ୍ଦନ ଶୁଣାଗଲା । ରେଣୁ ଚମକି ପଡ଼ି କହିଲା, ନାଇଁରେ, କୁନି ଉଠିଛି ।' ଖାଇଲା ସେ ମୋତେ । ମୋତେ ନ ଦେଖିପାରି ନିଶ୍ଚୟ ତାର ରାଗ ବଢ଼ିଛି ।

ରେଣୁ ବାହାରକୁ ଦୌଡ଼ି ଆସିଲା । ଦୁର୍ଲଭ ବାବୁଙ୍କ ସ୍ତ୍ରୀ ରେଣୁକୁ କୁନିକୁ ଦେଇ ଚାଲିଗଲେ ।

କିନ୍ତୁ କୁନି କୌଣସି ପ୍ରକାରେ ମା' କୋଳରେ ରହିଲା ନାହିଁ । ଥରେ ମାତ୍ର ମା ଆଡ଼କୁ ଚାହିଁ ଉପରେ ଆଖି ବୁଜି ଦେଇ ଅଧିକ ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲା ଏବଂ ବ୍ୟାକୁଳ ଭାବରେ କାହାକୁ ଖୋଜିବାକୁ ଲାଗିଲା । ରବୀନ୍ଦ୍ର କୁନିକୁ କୋଳକୁ ନେବାକୁ ଚେଷ୍ଟାକଲେ; କିନ୍ତୁ ବାପା ପାଖକୁ ମଧ୍ୟ ଯିବାକୁ ନାରାଜ । ଏ ଅଦ୍ଭୁତ କ୍ରନ୍ଦନ ଶୁଣି ଘରର ସମସ୍ତେ ସେଠି ରୁଣ୍ଡ ହେଲେ । କୁନି କେବଳ ଉପରେ ସମସ୍ତଙ୍କୁ ଥରେ ଚାହେଁ ଏବଂ କାହାକୁ ଯେପରି ନ ପାଇ ଅଧିକ ଜୋରରେ କାନ୍ଦିବାକୁ ଆରମ୍ଭ କରେ । ରେଣୁ ଯେତେ ଚେଷ୍ଟା କରେ ନିଜକୁ ଦେଖାଇବାକୁ, କୁନି ଆଉ ଫେରି ଥରେ ବି ମୁହାଁ ଚାହେଁ ନାହିଁ । ମଲ୍ଲିକା ତାକୁ କୋଳକୁ ନେଇ ନାନା ପ୍ରକାର ଖେଳଣା ଦେଇ ଭୁଲାଇବାକୁ ଚେଷ୍ଟା କରେ । ମୂଲ୍ୟବାନ୍ ଖେଳଣା ସବୁ କୁନି ଅନାଦରରେ ଫିଙ୍ଗିଦିଏ । ଗୋଟିଏ

ଦାସୀ ଚତ୍ରୁପ କରି କହିଲା, 'ତାର ଏ ସବୁ ଖେଳନା ପସନ୍ଦ ହେଉନି ।' ରେଣୁ ରାଗରେ ତାକୁ ଚାହିଁ ରହିଲା । ଦାସୀ ମୁହଁ ମୋଡ଼ି ଚାଲିଗଲା । ମଲ୍ଲିକା କୁନକୁ କୋଳକୁ ନେଇ ଘରର ନାନା ମୂଲ୍ୟବାନ ପଦାର୍ଥ ଦେଖାଇ ଭୁଲାଇବାକୁ ଚେଷ୍ଟା କଲେ । କୁନ ଅବଜ୍ଞାରେ ସେ ସବୁ ଥରେ ଦେଖି ବି ନାହିଁ । ତାର ଦୁଇଟ ଆଖିପୋଡ଼ିକ କେବଳ ଅଧୀର ଭାବରେ କାହାକୁ ଖୋଜି କ୍ରମେ କ୍ରମେ କୁନର କ୍ରନ୍ଦନ ଅସହ୍ୟ ହେବାକୁ ଲାଗିଲା । ମନେହେଲା ତାର ହୃତ୍‌ପିଣ୍ଡ ହଠାତ୍ ବନ୍ଦ ହୋଇଯିବ । ରେଣୁ ଆତଙ୍କରେ କୁନକୁ କୋଳକୁ ଟାଣିନେଲା ।

ଗୋଟିଏ ଦାସୀ କହିଲା, 'ସେ ତା' ବୋଉକୁ ଚିହ୍ନି ପାରୁନି ମ ।'

ରେଣୁ ଧମକ ଦେଇ କହିଲା, ଚୁପ୍ କର ଚିହ୍ନିବ ନାହିଁ କାହିଁକି ? କଅଣ ଗୋଟାଏ ଜିଦ୍ ଧରିଛି ସେ ।'

ଦାସୀ କହିଲା, 'ମା' ମୁଁ କହୁଛି ତୁମେ ଶାଢ଼ୀ ବଦଳାଇ ଝେନ୍ତ୍ର ଅଧାମଇଳା ଶାଢ଼ୀ ପିନ୍ଧ, ଗହଣାଗୁଡ଼ିକ ଖୋଲି ପକାଅ । ସେ ତୁମକୁ ଚିହ୍ନିବ ।'

ରେଣୁ ଲଜ୍ଜା ଓ କ୍ରୋଧରେ ତାକୁ ଅନାଇ ରହିଲା । ତାର ସମସ୍ତ କ୍ରୋଧ ପଡ଼ିଲା କୁନ ଉପରେ । ଗୋଟିଏ ଚାପୁଡ଼ାରେ କୁନ ଏକଦମ୍ ନୀରବ ହୋଇଗଲା । ତାର ହାତ ଗୋଡ଼ ସବୁ କଠିନ ହୋଇଗଲା । ହାତ ମୁଠାକରି ସେ ରେଣୁର କୋଳରେ ଢଳି ପଡ଼ିଲା । ରେଣୁ ଅଧୀର ହୋଇ ଚିତ୍କାର କରି ଉଠିଲା ଇଲେ ବୋଉ ମୁଁ କଅଣ କରିବି, ଏ କଅଣ ହେଲା ।

ସମସ୍ତେ ଦୌଡ଼ି ଯାଇ ପାଣି ଆଣି କୁନର ମୁହଁରେ ଛିଞ୍ଚିଲେ । ଅଳ୍ପ ସମୟ ପରେ କୁନ ଆଖି ମେଲି ରେଣୁ ଆଡ଼େ ଚାହିଁଲା ଏବଂ ପୁଣି ଅତି ଭୟରେ ଆଖି ବନ୍ଦକରି କାନ୍ଦିବାକୁ ଲାଗିଲା । ସେହି ଦାସୀ କହିଲା, 'ତୁମେ ମା' ହୋଇ ଏତକ ବୁଝିପାରୁନା, ସେ ତୁମକୁ ଚିହ୍ନିପାରୁନି । କେବେ ତୁମକୁ ଏ ସବୁ ପିନ୍ଧିବାର ଦେଖିନାହିଁ ବୋଲି ।'

ଅଗତ୍ୟା ତାହା ହିଁ କରିବାକୁ ହେଲା; କିନ୍ତୁ ମଲ୍ଲିକା ଘରେ ଅଧମଇଳା ଶାଢ଼ୀ ମିଳିଲାନାହିଁ । ରଘୁନାଥ ଘରକୁ ଯାଇ ରେଣୁର ଖଣ୍ଡେ ଶାଢ଼ୀ ଆଣିଲା । ରେଣୁ ଲଜ୍ଜା, କ୍ରୋଧ ଓ ଅଭିମାନ ଦମନ କରି ଖଣ୍ଡ ଖଣ୍ଡ କରି ଗହଣା କାଢ଼ି

ତାର ଅଧମଇଳା ଶାଢ଼ୀ ଟିଏ ଥିଲା । ମଲ୍ଲିକା ରେଣୁକୁ ଦେଖାଇ କହିଲା, 'ଦେଖା ତୋ ବୋଉ—ଦେଖେ 'କୁନି ମା' କୋଳକୁ ଠେଲିଦେଇ ମୁହଁ ଲୁଚାଇଦେଲା । ସମସ୍ତେ କାନ୍ଦି ପକାଇଲେ ।

ରେଣୁ ଦେଖି ସେ ତଳକୁ ମୁହଁ ପୋତି ରହିଲା, ଆଉ ଅନାଇଲା ନାହିଁ । ମଲ୍ଲିକାର ଅନୁରୋଧରେ ସେ ଟିକେ ଖାଇ ଶୀଘ୍ର ଘରକୁ ଫେରିଆସିଲା ଏବଂ କୁନିକୁ କୋଳରେ ଧରି ପଲଙ୍କ ଉପରେ ଶୋଇପଡ଼ିଲା । ରବୀନ୍ଦ୍ର ସନ୍ଧ୍ୟାରୁ ଫେରିନି ଆଉ ମନରେ ତାର ସମସ୍ତ ଦେହ ଥରିଉଠୁଛି । ସେ ସ୍ନେହରେ ତଳେ ପିଠିରେ ହାତ ବୁଲାଇବାକୁ ଲାଗିଲା । କୁନି ଗୁଡ଼ିଏ ଅସି ମା' କୋଳରେ ମୁହଁ ଲୁଚାଇ ନୀରବରେ ଶୋଇ ରହିଲା । ଅନେକ କ୍ଷଣ ପରେ ରେଣୁ ଉଠି ରବୀନ୍ଦ୍ରକୁ ଚାହିଁଲା ଏବଂ କୁନିକୁ କୋଳକୁ ଟାଣିନେଇ ହସି କହିଲା, 'ଏ ଟୋକୀ କାହିଁକି ଛଳନା କରିଦେଲା ନାହିଁ । ଭଲ ହୋଇଛୁ, ଠିକ୍ ହୋଇଛୁ ।'



# ଆଗନ୍ତୁକ

ଗଙ୍ଗାଧରଙ୍କ ବୈଠକଖାନାରେ ପ୍ରତ୍ୟହ ଯେପରି ସାନ୍ଧ୍ୟ' ମଜ୍ଲିସ ବସେ, ଆଜି ମଧ୍ୟ ସେମିତି ବସିଛି । ତେବେ ଆଜି ଟିକିଏ ସକାଳ ବସିଛି । ସକାଳ ବସିବାର ବିଶେଷ କାରଣ ଅଛି । ଗଙ୍ଗାଧର ବିବାହ କରିବା ପରେ ଦୁଇ ବର୍ଷ ଧରି ଲକ୍ଷ୍ୟ କରି ଆସୁଥିଲେ ଯେ ସ୍ତ୍ରୀ ପ୍ରତ୍ୟେକ ମାସର ୨୮ ତାରିଖ ଦିନ ନିର୍ଦ୍ଦିଷ୍ଟ ଭାବରେ ଋତୁସ୍ନାନ କରି ଆସୁଥିଲେ । ପ୍ରତ୍ୟେକ ଋତୁସ୍ନାନ-ବେଳେ ଗଙ୍ଗାଧର ଆକ୍ଷେପ କରି କହନ୍ତି, ଓଃ, ପ୍ରକୃତିର କି ଅଦ୍ଭୁତ ନିୟମାନୁବର୍ତ୍ତିତା; କିନ୍ତୁ ନ'ମାସ ପୂର୍ବେ ହଠାତ୍ ପ୍ରକୃତି ଦୟାକରି ସେ ନିୟମ ଭଙ୍ଗ କଲେ । ତା'ପରେ ପ୍ରଥମ ମାସଟି ସ୍ୱାମୀ ସ୍ତ୍ରୀ ଦୁହେଁ ଆଶଙ୍କାରେ କାଟିଲେ; କିନ୍ତୁ ଯେତେବେଳେ ସ୍ତ୍ରୀ ଦିନେ ସକାଳୁ ଉଠି କହିଲେ 'ବାନ୍ତି ବାନ୍ତି ଲାଗୁଛି' ସେତେବେଳେ ଗଙ୍ଗାଧର ଆନନ୍ଦରେ ବିଛଣାରେ ପଡ଼ି ଗଡ଼ିଗଲେ । ପୁଣି ଦିନେ ଯେତେବେଳେ ଦେଖିଲେ ସ୍ତ୍ରୀ ମାଟି ଖାଉଛନ୍ତି, ସେ ଆଉଥରେ ସେମିତି ଗଡ଼ିଯାଇ ରଘୁବଂଶର ଶ୍ଲୋକଟି ଆବୃତ୍ତି କଲେ; "କୌଶଲ୍ୟା ଗର୍ଭବତୀ ଥିବା ଅବସ୍ଥାରେ ମାଟି ଖାଉଥିବାର ଦେଖି ଦଶରଥ ମନେ ମନେ ଭାବୁଥାନ୍ତି, ଏ ସନ୍ତାନ ଦିନେ ଅଖଣ୍ଡ ମୃଣ୍ମୟୀ ପୃଥିବୀର ଅଧୀଶ୍ୱର ହେବ ଜାଣି କୌଶଲ୍ୟା ସନ୍ତାନ ଜନ୍ମ ପୂର୍ବରୁ ମାଟି ସହିତ ପରିଚୟ କରାଇ ଦେଉଛନ୍ତି ।" ଦିନକୁ ଦିନ ସ୍ତ୍ରୀଙ୍କ ସୌନ୍ଦର୍ଯ୍ୟ ବଢ଼ିବାକୁ ଲାଗିଲା ଏବଂ ତା ସହିତ ଗଙ୍ଗାଧରଙ୍କ ଆନନ୍ଦ । ଡାକ୍ତର ପରୀକ୍ଷା କରି ପରାମର୍ଶ ଦେଲେ ବିଶ୍ରାମ, ଦୁଧ ଓ ଅଣ୍ଡା । ଘରେ ଗୋଟିଏ ଗାଈ ଓ ପାଞ୍ଚୋଟି କୁକୁଡ଼ା ପାଳିତ ହେଲେ ସେଇଦିନୁ ।

ଆଜି ଦିନ ୯ଟା ବେଳେ ସ୍ତ୍ରୀଙ୍କ ସାମାନ୍ୟ ଯନ୍ତ୍ରଣା ଆରମ୍ଭ ହେବା ସାଙ୍ଗେ ସାଙ୍ଗେ ଗଙ୍ଗାଧର ବନ୍ଧୁମାନଙ୍କୁ ସୁସମ୍ବାଦଟି ଦେଇ ଡାକି ଆଣିଲେ, କେତେବେଳେ କଅଣ ଦରକାର ପଡ଼ିପାରେ ସେଇଥିପାଇଁ ।

ଅଧ୍ୟାପକ ପାଣିଗ୍ରାହୀ ସେମା ଅର୍ଦ୍ଧ-ନିମୀଳିତ ନୟନରେ କହିଲେ, 'ଆହେ ଗଙ୍ଗାଧର, ପତଞ୍ଜଳି ତାଙ୍କ ଯୋଗଶାସ୍ତ୍ରରେ 'ପ୍ରତ୍ୟକ୍ଷାନୁମାନାଗମାଃ ପ୍ରମାଣାନି', କହିଛନ୍ତି । ଅର୍ଥାତ୍ କୌଣସି ବିଷୟରେ ସତ୍ୟତା ନିରୂପଣ ପାଇଁ ତିନି ପ୍ରକାର ପ୍ରମାଣ ଅଛି । ପ୍ରତ୍ୟକ୍ଷଜ୍ଞାନ, ଅନୁମାନ ଏବଂ ଜ୍ଞାନିଜନମାନଙ୍କ ସିଦ୍ଧାନ୍ତ । ଜଣେ ଆଧୁନିକ ପାଶ୍ଚାତ୍ୟ ପଣ୍ଡିତ କହନ୍ତି, Motherhood is a fact, Fatherhood is a theory only, ଅର୍ଥାତ୍ ମାତୃତ୍ୱ ପ୍ରତ୍ୟକ୍ଷୀଭୂତ ବିଷୟ; କିନ୍ତୁ ପିତୃତ୍ୱ ନିଛକ ଅନୁମାନ ମାତ୍ର । ସ୍ତ୍ରୀ ଆଧୁନିକ ଯୁଗରେ ସେ ଅନୁମାନ ମଧ୍ୟ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଛି । ଅତଏବ ତୁମେ ଏ ଦୁର୍ବଳ ଆନୁମାନିକ ସତ୍ୟ ଉପରେ ନିର୍ଭର କରି କେତେ ଆନନ୍ଦିତ ହେଉଛ ?

ଲିଙ୍ଗରାଜ ତ୍ରିପାଠୀ ଉଚ୍ଚାରି ଶ୍ଲୋକ ବୋଲିଲେ, "କା ତବ କାନ୍ତା, କସ୍ତେ ପୁତ୍ରଃ, ସଂସାରୋଽୟମତୀବ ବିଚିତ୍ରଃ ।" ହେ ହେ ଗଙ୍ଗାଧର ତୁମର ଆନନ୍ଦ ହେବା ଉଚିତ ନୁହେଁ, ଉଚିତ ନୁହେଁ, ଉଚିତ ନୁହେଁ । ତୁମେ ଏ ମୋହ·········

ଉଚିତ ନୁହେଁ ? ଡାକ୍ତର ଦାଶ—ପ୍ରତିରୋଧ କରି କହିଲେ, ଏଣୁ ତୁମ ଶାସ୍ତ୍ର କହେ କେଉଁ ? ବାଃ ବାଃ ରେ ମୋହମୁଦ୍‌ଗର ! ପ୍ରକୃତିର ଯେଉଁ ଦୁର୍ଲଂଘ୍ୟ ନିୟମାନୁସାରେ ପ୍ରତ୍ୟେକ ପ୍ରାଣୀ ମଧ୍ୟରେ ପ୍ରଜନନ ପାଇଁ ଦୁର୍ବାର ଆବେଗ ଜାତ ହୁଏ, ଏ ଆନନ୍ଦ ସେଇ ନିୟମ ଅନ୍ତର୍ଭୁକ୍ତ । ଆଜି ତୁମେ କହିବ ମୋହ ! ପ୍ରକୃତିର ନିୟମକୁ ତୁମେ କଅଣ ଜାଣ ହେ ଲିଙ୍ଗରାଜ ତ୍ରିପାଠୀ, ସାହିତ୍ୟାଚାର୍ଯ୍ୟ, ବାଣୀଭୂଷଣ, ତର୍କତୀର୍ଥଙ୍କର ଇତ୍ୟାଦି ଇତ୍ୟାଦି ମିଥ୍ୟା ଓ ବାଜେ ଉପାଧିଧାରୀ ମାଣବକ ?

ଲିଙ୍ଗରାଜ ଟିକିଏ ବାଙ୍ଗର । ତେଣୁ 'ମାଣବକ' କଥାଟା ତାଙ୍କୁ ବାଧିଲା । ସେ ତତ୍‌କାଳ କିଛି କଅଣ ଗୋଟାଏ କହିବାକୁ ଯାଉଥିଲେ; କିନ୍ତୁ ନାଭିଦେଶରୁ ସେ ବେଦବାଣୀ ତଣ୍ଟି ପାଖରେ ଅଟକିଗଲା । ସୂତିକା ଗୃହରୁ ଗର୍ଭଯନ୍ତ୍ରଣାର ଚିତ୍କାର ଶୁଭିବାକୁ ଲାଗିଲା ।

ଗଙ୍ଗାଧର ବିମର୍ଷଭାବରେ କହିଲେ, 'ଇସ୍, ମୋପାଇଁ କମଳା କେତେ କଷ୍ଟ ପାଉଛି ସତେ ! ହାୟ, ହାୟ, ମୁଁ ଏ କୁକର୍ମ କାହିଁକି କଲି ? ହେ ଭଗବାନ୍ ! ହେ ଡାକ୍ତର ଟିକିଏ କମାଇ ପାରିବ ନି ଏ ଯନ୍ତ୍ରଣା ?'

ପାଣିଗ୍ରାହୀ କହିଲେ, ହଇହୋ ଗଙ୍ଗାଧର, ଏହାକୁ ତୁମେ ପାପ କହୁଛ ? ଏ ଯନ୍ତ୍ରଣାପାଇଁ ଅନୁତାପ କରୁଛ ? ସବୁ ମୂର୍ଖଙ୍କ ମୂଳରେ ଥାଏ ପ୍ରବଳ ଆକର୍ଷଣ,

ଆୟୋଜନ, ସବୁ ସୁଖର ମୂଳରେ ଥାଏ ସାଧନାର ଦୁଃଖ ଯନ୍ତ୍ରଣା, ସବୁ ସୁଶାସନ ନିର୍ଭର କରେ ଦଣ୍ଡ ଦେବାର ନୈତିକ ସାହସିକତା ଉପରେ । ତୁମେ କଅଣ ବୃହସ୍ପତିଙ୍କ ଉପଦେଶ ଜାଣିନ ? ସତ୍ୟ ହେଉଛି ଦେହ ରୂପ ବୃକ୍ଷର ପୁଷ୍ପଫଳ; କିନ୍ତୁ ମିଥ୍ୟା ଦେହର ମୂଳ ଏବଂ ମିଥ୍ୟା ଦ୍ୱାରହିଁ ଦେହରକ୍ଷା ହୋଇଥାଏ । କୃଷ୍ଣ ବାବୁଙ୍କ ଗୀତ ଶୁଣିନ—

“ପାପରୂପ କର୍ମ ଫଳେ,
ପୁଣ୍ୟରୂପ ସନ୍ତାନ ମିଳେ ।”

ଯେ ଆତଙ୍କକ ଆଣୁଛି, ସେ ପୁଣ୍ୟବାନ୍ ହେଉ । ଆଉ ଆତଙ୍କକ ଆସୁ......

ଡାକ୍ତର ଦାଶ ମ୍ଳାନସ୍ୱରରେ ହସି କହିଲେ, ମୁଁ ଆଗରୁ କହିଛି ପ୍ରସୂତିକୁ ଦୁଧ ଓ ଅଣ୍ଡା ଖାଇବାକୁ ଦେବାକୁ; କିନ୍ତୁ......

ଗଙ୍ଗାଧର ବିମର୍ଷସ୍ୱରରେ କହିଲେ, ‘ସେଇଥିପାଇଁ ତ ଗୋଟାଏ ଗାଈ ଓ ତିନୋଟି କୁକୁଡ଼ା ରଖିଛି । ଗାଈ ହେଲେ କିଛି ଦୟା କରୁଛି; କିନ୍ତୁ ପ୍ରାୟ ସବୁଦିନେ କେତେବେଳେ ପଘାରୁ ଫିଟି ତା ଛୁଆକୁ ସବୁ ଦୁଧ ପିଆଇଦେଉଛି ! ଗୋଟାଏ ପାଜି ଗାଈ କେଉଁଠୁ ଜୁଟିଛି ମୋ କପାଳକୁ । ପୁଣି ତିନୋଟା କୁକୁଡ଼ାରୁ ଗୋଟାଏ ଅଣ୍ଡା ଦେଉଥିଲା ଯେ, ଦୁଇଦିନ ଜମଲା ଖାଇଛି କି ନାହିଁ, ସାତଦିନ ସେଇଟା କୁଆଡ଼େ ଯାଉଛିଯେ ଫେରୁଛି ସନ୍ଧ୍ୟାବେଳକୁ । ଆଜିକି କେତେ ଦିନ ହେଲାଣି ତା’ର ଦେଖାନାହିଁ......ମୋ କପାଳକୁ......

ଅଧ୍ୟାପକ ଦୀର୍ଘନିଃଶ୍ୱାସ ପକାଇ କହିଲେ, ‘ଗଙ୍ଗାଧର’ ଯେଉଁ ଦିନ ତୁମେ କୁକୁଡ଼ା ଆଣିଥିଲ, ମୁଁ ସେଇଦିନ କହିଥିଲି ଏଥିରୁ ଗୋଟିଏ ଉଦରସ୍ଥ କରିବାକୁ । ଆହା ପିତାମହ ଭୀଷ୍ମ ସତ୍ୟ ହିଁ କହିଥିଲେ, ମାଂସ ତୁଲ୍ୟ ସରସ ଖାଦ୍ୟ କିଛି ନାହିଁ, ଯୁଧିଷ୍ଠିର ମଧ୍ୟ ସେ କଥା ସ୍ୱୀକାର କରିଥିଲେ । ଅନୁଶାସନ ପର୍ବ ଦ୍ରଷ୍ଟବ୍ୟ ବନ୍ଧୁ...ବର୍ତ୍ତମାନ ହୁଏତ ସେ କୁକୁଡ଼ା ଆଉ କାହାର ଉଦରସ୍ଥ ହୋଇଛି ! ହାୟ, ହାୟ......

ଲିଙ୍ଗରାଜ ବାଧା ଦେଇ କହିଲେ, ପାତଞ୍ଜଳି, ତୁମେ କୃଶ ନୁହଁ କି ଦୁର୍ବଳ ନୁହଁ । ହୁଏତ ଇନ୍ଦ୍ରିୟସେବୀ, ହୁଏତ କାମୁକ, ନିଶ୍ଚୟ; କାରଣ ପ୍ରତ୍ୟେକ ବର୍ଷ

ଜଳପକ୍ଷୀ ଏକ ନୁହେଁ ମନ୍ଦିରରେ ମନ୍ଦିରରେ ବୁଲ କରି ବନ୍ଦ ହଉ, ସ୍ମୃତିଦେବ କେବଳ କେଉଁ ତିନି ପ୍ରକାର ଲୋକଙ୍କପାଇଁ ମାଂସାହାର ନିଷେଧ କରିଛନ୍ତି ଯେ ପରମାଂସଦ୍ୱାରା ନିଜ ମାଂସ ବୃଦ୍ଧି କରେ, ତା'ଠାରୁ ନିକୃଷ୍ଟ ଓ କ୍ଷୁଦ୍ର କେହି ନାହିଁ ! ସେ କହିଛନ୍ତି, ମାଂସ ଶବ୍ଦର ତାତ୍ପର୍ଯ୍ୟ ମାଂ ସ ଅର୍ଥାତ୍ ମୋତେ ସେ ଜ ସେ ପୂର୍ବଜନ୍ମରେ ଖାଇଛି, ତେଣୁ ତାକୁ ମୁଁ ଖାଇବି !!

ଡାକ୍ତର କିନ୍ତୁ ମାଂସ ପ୍ରସଙ୍ଗ ଏଡ଼ାଇ ଯାଇ ରହସ୍ୟ ପ୍ରକାଶ କରିବା ଭଙ୍ଗୀରେ କହିଲେ, ହିଁ, ହୁମ୍, ଟେଲିସ୍କୋପ ଯନ୍ତ୍ରମୁ ଜଣାଯାଉଛି ମୁଁ ଜାଣେ ଯେ ଓ ମିସେସ୍......

ଛିଦ୍ରାନ୍ୱେଷଣ ତୁମର ସ୍ୱଭାବସିଦ୍ଧ ନୁହେଁ ଓ ତ୍ରୁଟି ଦେଖି, ପାଟକ୍ତିକ କହିଲେ; କିନ୍ତୁ ନିଜ କଥା କହୁନ କାହିଁକି ?

ଉହୁଁ, ସେ କଥା ହେବନାହିଁ । ଶାସ୍ତ୍ରରେ ମନାକରିଛନ୍ତି, ନିଜର ଛିଦ୍ରଗୋପନ ଓ ପରର ଛିଦ୍ରାନ୍ୱେଷଣ ବିଷୟରେ କଦାପି ସରଳ ହେବନାହିଁ !

କମଳାର ଯନ୍ତ୍ରଣା କ୍ରମଶଃ ବଢ଼ିବାକୁ ଲାଗିଲା । ଗଙ୍ଗାଧର ଡାକ୍ତରଙ୍କ ହାତ ଧରି ଅଧୀରଭାବରେ ପ୍ରସୂତି ଗୃହକୁ ଟାଣିବାକୁ ଲାଗିଲେ । ଡାକ୍ତର ବାଧା ଦେଇ କହିଲେ, 'ଅରେ ବ୍ୟସ୍ତ ହେବାର କିଛି ନାହିଁ, ବହୁ ଆଉ ଅଳ୍ପ ସମୟ ।'

ଲାଙ୍ଗଲ ହାତ ଘଡ଼ିକୁ ଚାହିଁ କହିଲେ, ବ୍ୟସ୍ତ ହୁଅନା ଗଙ୍ଗାଧର ! ଆଉ ତେୟାଳିଶ ମିନିଟ ଯାଉ ତା' ପରେ ପୁତ୍ର ଜନ୍ମିବେ ରାଜଚକ୍ରବର୍ତ୍ତୀ ହେବ ! ଆଜି ମୁଁ ଗଣନା କରି ଦେଖିଛି ତୁମର ପୁତ୍ରଲାଭ ହେବ । ତା'ପରେ ସେ ଗାଇଲେ—

"କୁଳଂ ପବିତ୍ରଂ ଜନନୀ କୃତାର୍ଥା,
ବସୁନ୍ଧରା ପୁଣ୍ୟବତୀ ଚ ତେନ ।"

ଏହି ପୁତ୍ର ସ୍ୱାସ୍ଥ୍ୟବାନ୍ ବିଦ୍ୟାବାନ୍ ହୋଇ ଜୀବନ ଯାପନ କରୁ, ପରମ-ବ୍ରହ୍ମରେ ତା'ର ଚିତ୍ତ ଲୀନହେଉ ଏବଂ ତା'ର କୁଳକୁ ପବିତ୍ର କରୁ !!

ନା, ନା, ସେ ଆଶୀର୍ବାଦ ଚଳିବନାହିଁ ଏ ଯୁଗରେ; ଡାକ୍ତର ବାଧା ଦେଇ କହିଲେ, ଏ ପୁତ୍ର ଉଚ୍ଚ ରାଜକର୍ମଚାରୀ ହେଉ, ଉନ୍ନୟନ ଯୋଜନା ପ୍ରସ୍ତୁ କରିଯାଉ, ଯୋଜନା ଛାଡ଼ିଗଲ ହେଲେ ଯାଉ···

ଆଜ ଦୁର୍ଗାଭିର ପ୍ରସ୍ତୁତ କରୁ । ଲିଙ୍ଗରାଜ ବିରକ୍ତ ହୋଇ କହିଲେ, ଚରମବ୍ରହ୍ମ ଆଣି ମନୁଷ୍ୟ ଜୀବନର ଲକ୍ଷ୍ୟ, କୋଟିପତି ହେବା ନୁହଁ କି ଧନୀ ମନ୍ତ୍ରୀ ହେବା ନୁହଁ !

କାହିଁକି ? ଯୋଜନାର କି ଦୋଷ ? ଡାକ୍ତର ମଧ୍ୟ ଉତ୍ତେଜିତ ବିରକ୍ତ ହୋଇ ପଡ଼ିଲେ ।

ପ୍ରଚୁର ଋଣ ଆଣି ତାକୁ ଖର୍ଚ୍ଚ କରିବାର ଯେଉଁ ବାଧ୍ୟତାମୂଳକ ଯୋଜନା ତାହା ଦୁର୍ଗତିମୂଳକ ଯୋଜନା, ଲିଙ୍ଗରାଜ ଅସନ୍ତୋଷ ପ୍ରକାଶ କହିଲେ । ଆଜି କି ବା ଯୋଜନା । ଆମେରିକାରେ, ବିଲାତରେ, ଏମିତି ହେଉଛି, ଅତଏବ ଆମର ବି କରିବା, ଦେଶ-କାଳ-ପାତ୍ରର କୌଣସି ବିଚାର ନ ରଖି ! ଆଜି, ଯୋଜନା ସଫଳ ହେଲେ ମଧ୍ୟ ତାହା ଯଦି ଲୋଭ, ହିଂସା, କ୍ରୋଧ ବଢ଼ାଏ, ତେବେ କିଭ ବା କଅଣ ସେ ଯୋଜନାରେ, ଦେଶର ନୈତିକ ବଳ ତ ଭାଙ୍ଗି ଯାଉଛି । ଦେଶର ନୈତିକ ବଳ ଭାଙ୍ଗିଲେ ବୈଦେଶିକ ମାଲ କେବଳ ହାସ୍ୟାସ୍ପଦ ହେବା ଛଡ଼ା ଆଉ କିଛି ହେବନାହିଁ, ସମସ୍ତେ ବେଖାତିର କରିବେ ।

ଡାକ୍ତର କହିଲେ, 'ଶ୍ରୀକୃଷ୍ଣଦେବ ତୁମର କହିଛନ୍ତି, ରାଜା ସଦାଚାରୀ ହେଲେ ପ୍ରଜାମାନେ ମଧ୍ୟ ତଦ୍ରୂପ ହୁଅନ୍ତି ଓ ଯେ ରାଜା ନିଜକୁ ସଂଯତ ନ କରି ଅନ୍ୟକୁ ଶାସନ କରନ୍ତି, ତାଙ୍କୁ ସମସ୍ତେ ଉପହାସ କରନ୍ତି । ସେ ଯେତେ ଶାନ୍ତି, ତ୍ୟାଗ, ସତ୍ୟ ବିଷୟରେ ବଡ଼ ବଡ଼ ବକ୍ତୃତା ଦେଉଥାଏ, ଲୋକେ ତାଙ୍କୁ ସେତେ ସନ୍ଦେହ କରୁଥାନ୍ତି ।

ପାଟଙ୍କେଳ କହିଲେ, ନା, ନା, ଏ ଯୁଗ ବ୍ୟବସାୟୀ ହେଉ ଏବଂ ବ୍ୟବସାୟୀ ହୋଇ ଦେଶ ଶାସନ କରନ୍ତୁ । ଦେଶର ଧନ ବୃଦ୍ଧି ହେବ । ଅର୍ଜ୍ଜୁନ କହିଲେ, ଅର୍ଥରୁହିଁ ଧର୍ମ, କାମ ଓ ସ୍ୱର୍ଗ ଲାଭ ହୁଏ, ଅର୍ଥହିଁ ମୂଳ, ଅର୍ଥ ନ ଥିଲେ ମନୁଷ୍ୟର ଜୀବିକା ନିର୍ବାହ ମଧ୍ୟ ହୁଏ ନା···ଆମେରିକାରେ ଧନକୁବେରମାନେ ହିଁ··· ।

କିନ୍ତୁ, ଲିଙ୍ଗରାଜ କହିଲେ, 'ସକ୍ରେଟିସ୍ ଏବଂ ଆମ ପିତାମହ ଭୀଷ୍ମ ମଧ୍ୟ କହିଛନ୍ତି, When traders become legislators, the ruin of a State is imminent.

ଏହି ସମୟରେ ଘରଭିତରୁ ଶଙ୍ଖ ହୁଳହୁଳି ଶେ ସବୁ ତର୍କ ବିତର୍କ ଛଡ଼ାଇଦେଲା । ଗଙ୍ଗାଧରଙ୍କ ପାଟି ମେଲାହୋଇ ଦନ୍ତପଂକ୍ତି ପ୍ରକାଶିତ ହେଲା । ସେ ଉଠି ପଳାଉଥିଲେ ଘରଭିତରକୁ । ଲିଙ୍ଗରାଜ ବାଧା ଦେଇ କହିଲେ; ବନ୍ଧୁ, ଆମେ ମରଣଶୀଳ ହେଲେ ମଧ୍ୟ ପ୍ରଜନନ ଆମକୁ କରିଛି ଅମର।

'ମଧୁବାତା ଋତାୟତେ
ମଧୁ କ୍ଷରନ୍ତି ସିନ୍ଧବଃ···''

ସୃଷ୍ଟିର ରହସ୍ୟଭେଦ ମଧୁ, ମଧୁ !!! ମଧୁ କ୍ଷରିତ !!! ଡାକ୍ତର କହିଲେ, ଏ ସନ୍ତାନ ତୁମର ନୁହଁ ଗଙ୍ଗାଧର, ଅମୃତର, ଅମୃତର ପୁତ୍ର । ଏ ଆଗନ୍ତୁକ···

ଗଙ୍ଗାଧରଙ୍କ ଶାଳୀ ଶଙ୍ଖ ବଜାଇ ବଜାଇ ଦୌଡ଼ିଆସି କହିଲା, ବକ୍‌ସିସ୍ ଦିଅ, ପୁଅ ହୋଇଛି, କୁନି ପୁଅ । ବକ୍‌ସିସ ଦିଅ ।

ଗଙ୍ଗାଧର ହସି ହସି କହିଲେ, କହୋ, ତୁମକୁ କାହିଁକି ବକ୍‌ସିସ୍ ଦେବୁ, ପରିଶ୍ରମ କଲୁ ଆମେ, ତୁମେ ଆମକୁ ସେଥିରେ ସାହାଯ୍ୟ କରିଥିଲ କି ? ଦରକାର ବେଳେ ତ କିଛି ସାହାଯ୍ୟ କଲନାହିଁ···

ଯା ବଜାଅ, କହି ସେ ପୁଣି ଘରଭିତରକୁ ଦୌଡ଼ିଗଲେ ଶଙ୍ଖ ବଜାଉ ବଜାଉ ।

ଚାକର ରାମଚନ୍ଦ୍ର ଘରକୁ ବ୍ୟସ୍ତତାର ସହିତ ପଶି ଏକ ରୋମାଞ୍ଚକର ସମ୍ବାଦ ଦେଲା, ଆଜ୍ଞା, ଏ ଶଳା କୁକୁଡ଼ାକୁ ଦେଖିଲେଣି ! ଆମେ ଅଣ୍ଡା ଖାଇଦେଲୁ ବୋଲି ଶଳା ବାଡ଼ି ପଛ ଜଙ୍ଗଲରେ ଅଣ୍ଡାସବୁ ଦେଉଥିଲା, ଏଇକ୍ଷଣି ଆଠଟି ଛୁଆକୁ ଧରି ଘର ଭିତରକୁ ଆସୁଛି ।

ଆମେ ଦୌଡ଼ିଯାଇ ଦେଖିଲୁ, ଗର୍ବର ସହିତ ହଲି ହଲି କୁକୁଡ଼ା ଆସୁଛି କାହାରିକୁ ଭ୍ରୂକ୍ଷେପ ନ କରି । ପଛରେ ତା'ର ଗୁଲୁ ଗୁଲୁ ହୋଇ ମା' ଦେହକୁ ଲାଗି ଆସୁଛନ୍ତି ଆଠୋଟି କୁକୁଡ଼ାଛୁଆ ।

ଗଙ୍ଗାଧର ଆନନ୍ଦାତ୍ମକ ଆଶ୍ଚର୍ଯ୍ୟଭାବରେ କହିଲେ, ଇସ୍ସେ ଜଏ ଲେ ମାଆ !

ଲିଙ୍ଗରାଜ କହିଲେ, ସୃଷ୍ଟି ଅଦ୍ଭୁତ ! ଏମାନେ ବି ଆଗନ୍ତୁକ !!
କାଲି······ ?

# କୁକୁଡ଼ା ଚାଷ

ଗୋବିନ୍ଦ ବାବୁଙ୍କ ପାଞ୍ଚବର୍ଷର ପୁଅ ବାପୁର ନୂଆ ଶିଙ୍ଗ ଉଠିଛି । ସେ ଯେଉଁଠି ପାଉଛି ଶିଙ୍ଗ ଲଗେଇ ଦେଇ ମାଟି ଖୋଳୁଛି । ସକାଳ ନ ପାହୁଣୁ ସେ ଖଣ୍ଡେ କାଗଜ ଧରି ଚିତ୍କାର କରି ପଢ଼ିବାରେ ଲାଗିଛି । ଅଳ୍ପ କେତେଦିନ ହେବ ସେ 'ଅ'କାର ଚିହ୍ନି ଶିଖିଛି ମାତ୍ର; କିନ୍ତୁ ତା'ର ଜ୍ଞାନ କେତେ ଦୂର, ସେ ଜ୍ଞାନ ପ୍ରୟୋଗ କରିବା ଯୋଗ୍ୟ କି ନା ଏବଂ ପ୍ରୟୋଗ କଲେ ଅନ୍ୟର କିଛି ଶାରୀରିକ ବା ମାନସିକ ଅସୁବିଧା ହେବ କି ନା ସେ ସବୁ ଚିନ୍ତା କରିବାର କାଣ୍ଡଜ୍ଞାନ ତାର ନାହିଁ । ବାପାଙ୍କୁ ସେ ଛୋଟ ବହି କିଣି ଆଣିବାକୁ ଜିଦ୍ ଲଗାଇ ଥିଲା । ଗୋବିନ୍ଦ-ବାବୁ ଛୋଟ ବହିର ଦାମ ଟଙ୍କାଏ'ରୁ କମ୍ ନାହିଁ ଦେଖି କୁକୁଡ଼ା ଚାଷ ବିଷୟରେ ଗୋଟିଏ ସରକାରୀ ଟ୍ରେକ୍ଟ ବହି ବହୁତ ଛୋଟ ଥିବାରୁ ନିଜ ଅଫିସରୁ ଆଣି ଦେଇଛନ୍ତି । ବାପୁ ପାଟିକରି ସେ ବହି ପଢ଼ିଚାଲିଛି···

ଏ···ଏ···ହା ଏହା ସତ ସ···ସ···ଦ (ସ୍ୱତଃସିଦ୍ଧ) ଯ (ଯେ) ଅ···ବ··· ସ୍ଥୁ···ବ ଗଠନ, ଶ···ରୀ···ରର (ଶରୀରର) ଭୁଁ···ଭୁଁ···ସ ବଦ (ବୃଦ୍ଧି) ଏବ ଭୁଁ···ଭୁଁ···ଭୁଁ (ସ୍ୱାସ୍ଥ୍ୟରକ୍ଷା) ପାଇ (ପାଇଁ) ଖାଦ୍ୟ, ଡାଲି ଘନପରବା (ପନିପରିବା) ସାଗକ (ସାଗକୁ) ମାଛ, ମାସ (ମାଂସ), ଦଧ (ଦୁଧ) କମ (କମ୍ବା) ଅ···ଣ୍ଡା (ଅଣ୍ଡା) ଉ ଳ ଅ ଉ···ତ୍କ···କ···ର···ଷ (ଉତ୍କୃଷ୍ଟ) ଖାଦ (ଖାଦ୍ୟ) ଦରକାର । ଆମ ଛୁଟ ପଲମାନଙ୍କର ଅବୟବ ଗଠନ ହବ ମାନସକ ବିକାଶର ବିଶେଷ ବ୍ୟାଘାତ ଘଟୁଛି, ବର୍ତ୍ତମାନ ସରସତ (ସମ୍ପ୍ରତି) କ କକଡ଼ା (କୁକୁଡ଼ା) ପାଳିବା ଦରକାର । କକଡ଼ା ଅଣ୍ଡା ସବଠାରୁ ବଳକାରକ ।

ବାପୁ କୁକୁଡ଼ା ଚାଷ ବିଷୟରେ ପଢ଼ିଚାଲିଛି ଅଧାରୁ ଅଧିକ ଉତ୍ସାହରେ । ଅର୍ଥ ହେଉ ନ ହେଉ, ଧ୍ୱନିରେ ସେ ମୁଗ୍ଧ ।

ସକାଳ ହୋଇଆସିଲାଣି, ସୂର୍ଯ୍ୟ ଫାଟିଲାଣି । ଦୂରେ ପୂର୍ବ ଦିଗ୍‌ବଳୟର ନୀଳାଭ ପାହାଡ଼ି ରେଖା ଉପରେ ଉଙ୍କି ଦେଇ ଗୋଲାପି ଆଭା ଧୀରେ ଧୀରେ ରକ୍ତିମ

ହୋଇ ଉଠିଛି । ତା ଉପରକୁ କିଛି ଦୂର ଜଙ୍ଗଲ ହଳଦିଆ ଏବଂ ତା ଉପରକୁ ବାଇଗଣି । ତା ପରେ ଅସୀମ ଅନନ୍ତ ନୀଳାକାଶ । ପଶ୍ଚିମ ଆକାଶରେ ଶୁକ୍ଳ ଦଶମୀର ବୃଦ୍ଧ ଚନ୍ଦ୍ରର ଦେହ ଛି ଆସିଲଣି; କିନ୍ତୁ ଅଗସ୍ତି ଏ ପର୍ଯ୍ୟନ୍ତ ଦପ୍ ଦପ୍ କରୁଛି । ଶୀତ ସଞ୍ଜର ଝଙ୍କାଏ ଥଣ୍ଡା ପବନ ଉତ୍ତରପଟ ଝରକା ଠେଲି ଦେଇ ଘର ଭିତରକୁ ଧସେଇ ପଶି ଆସି କମ୍ବଗଲା, ଜଠ ଝଠ, ଟୋକଣ ବାବୁ, କିନ୍ତୁ ସୁଦକ୍ଷିଣା ବେକ ପର୍ଯ୍ୟନ୍ତ ଟାଣି ନେଇ ପୂର୍ବପରି ପଡ଼ିରହି ଭାବି ଚାଲିଛନ୍ତି ।

ଭାବି ବସିଛନ୍ତି ଜୀବନର କଥା । ବହୁ ଅଭାବ ଅନାଟନ ମଧ୍ୟରେ ମଧ୍ୟ ମନଟି ତାଙ୍କର ପୁରୁଣା ଝଟ୍ଟେ ହେଲେ ମାତ୍ର ଛୁଡ଼ିନାହିଁ । ନବ ଗର୍ଭ ପିଡ଼ାରେ ତାଙ୍କର ପ୍ରଥମ ଚିନ୍ତା, ଦୁଶ୍ଚିନ୍ତା କଟିଯାଇନ୍ତି, ଆସନ୍ନପ୍ରସବା ପତ୍ନୀର ସ୍ୱାସ୍ଥ୍ୟ ଓ ପ୍ରସବ ସମସ୍ୟା । ଏଇଟି ତାଙ୍କର କେବଳ ପ୍ରଥମ ସନ୍ତାନ । ପ୍ରତ୍ୟେକ ଥର ପ୍ରସବ ପୂର୍ବରୁ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟରକ୍ଷା ପାଇଁ ସେ ଜାଣୁ ନା ଜାଣୁ ଔଷଧ ଦେଇଯାଉଥିଲେ । ଅବସ୍ଥା ସେତେବେଳେ ଥିଲା ଅନ୍ୟରୂପ । ସେତେବେଳେ ସେ ଥିଲେ ନିଜ ଘରେ ଏବଂ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଅନ୍ୟ ଦୁଇ ଭାଇଙ୍କ ସାଙ୍ଗରେ । ଗାଁ ତାଙ୍କର ନିକଟରେ ଥିବାରୁ ଗାଁ ଜମିରୁ ଚାଉଳ ମଧ୍ୟ କିଛି ଆସୁଥିଲା; କିନ୍ତୁ ବଦଳି ପରେ ଘରଭଡ଼ା ଚାକରାଣୀ ଦେଇ ଓ ଚାଉଳ କିଣି ଏକା ତାଙ୍କ ପକ୍ଷରେ ଖର୍ଚ୍ଚ ସମ୍ଭାଳିବା ଅସମ୍ଭବ ହୋଇପଡ଼ୁଛି । ତାଙ୍କର ଚିନ୍ତାଧାରା ଏଇ ସମସ୍ୟାରୁ ଶିଘ୍ର ଧରି ଆରମ୍ଭ ହୋଇଥିଲା; କିନ୍ତୁ ନିଜକୁ ନିଜେ ପ୍ରଶ୍ନ ପଚାରି ତାର ଉତ୍ତର ଦେଇ-ଦେଇ ସେ ବର୍ତ୍ତମାନ ଯେଉଁଠି ପହଞ୍ଚିଛନ୍ତି, ତାହା ମୂଳ ଚିନ୍ତାଠାରୁ ବହୁଦୂରରେ । ପ୍ରଥମ ଥର ସେ କ୍ଷୋଭ, ଦୁଃଖ, ଅନ୍ୟର ସୁଖ ପ୍ରତି ଈର୍ଷା ମଧ୍ୟ ନାହିଁ । ଆଜି ତାଙ୍କର ଜୀବାସ୍ତୁ ଓଁ ଛକ ଛକା । ସେ ନିଶ୍ୱାସ ଚାପି ମନେ ମନେ କହୁଛନ୍ତି, ସେଇ ମହାନ ପୁରୁଷଙ୍କୁ ଜାଣିବା ଜୀବନର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ମୁଁ ମାନୁଛି; କିନ୍ତୁ କାହିଁକି ବାରେ ବାରେ ଦୁଃଖ, ଈର୍ଷା, କ୍ରୋଧ, ହିଂସା, ଲୋଭ, କାମନା ଆସି ସେଇ ମୋହନରୂପ ସାମନାରେ ଛିଡ଼ାହୋଇ ଦୃଷ୍ଟିପଥରେ ବାଧା ଜନ୍ମାଉଛି ? କାହିଁକି ? କାହିଁକି ? ଛି, ଏ ଜୀବନକୁ ଧିକ୍ । କ୍ଷୁଦ୍ର କାମନା, ଅସମ୍ଭବ ଆଶା, ସମସ୍ତଙ୍କୁ ନିଜର ବାହାଦୁରୀ ଦେଖାଇବାର ଇଚ୍ଛା ହିଁ ବେଶି ଆକର୍ଷଣ କରି ନେଉଛି ଈର୍ଷା, ହିଂସା ଲୋଭ ଆଡ଼େ; ଅଥଚ ସବୁଠି ନିବିଡ଼ ଆନନ୍ଦ ପଡ଼ିରହିଛି ସେଆଡ଼େ ।

ମନ ହିଳଏ ବ ପାଉନାହିଁ । କଅଣ କରିବ ମୁଁ ? କଅଣ କରିପାରେ ମୁଁ ? କିଏ ତାର ଏ ସବୁ ଶୋଧ କହିବ ?···

ଡାକଘରେ ଦୁଇ ବିନ୍ଦୁ ଅଶ୍ରୁ ଗୋବିନ୍ଦ ବାବୁଙ୍କ ଆଖିରୁ ଗଡ଼ିପଡ଼ିଲା । ଭଗବାନଙ୍କ ପାଇଁ ମନରେ ସେ ଏକ ଅପୂର୍ବ ବେଦନାମୟ ବ୍ୟାକୁଳତା ଅନୁଭବ କଲେ । ମନରେ ତାଙ୍କର ଆଶାର ସଞ୍ଚାର ହେଲା; କିନ୍ତୁ ପ୍ରାପ୍ତିର ମନ କହିଲା, ଏହା ବ୍ୟାକୁଳତା ମାତ୍ର । ଏ ମୋହ ଏବଂ ମୋହରୁ ଜାତ କୌଣସି ଭାବ ଉପରେ ବିଶ୍ୱାସ ରଖିବା ଉଚିତ କି ? ଗୋବିନ୍ଦ ବାବୁଙ୍କ ଆଖିପତା କୁଞ୍ଚିତ ହେଲା । ସେ ଦୃଢ଼ବିଶ୍ୱାସ ଗ୍ରହଣ ପୁଣି ସଚେତନ ହୋଇ ଉଠିଲେ । ଭଗବାନଙ୍କ ବିଷୟ ଭାବୁ ଭାବୁ କାନ୍ଦିପାରୁଥିବା ଯୋଗୁଁ ମନରେ ଯେଉଁ ଗର୍ବ ଅନୁଭବ କରୁଥିଲେ, ସେ ଧୂଳିସାତ୍ ହୋଇଗଲେ । ସେ ପୁଣି ଚିନ୍ତା କରିବାକୁ ଲାଗିଲେ । ନିଜର ଗର୍ବ, ମୋହ, ଈର୍ଷା, ଲୋଭ ଆଦି ଦେଖିପାରି ବୁଝିପାରି ସେ ନିଜକୁ ଘୃଣା, ଖୁବ୍ ଘୃଣା କରିବାକୁ ଲାଗିଲେ ।

ଗୃହର ଭିତରେ ହାତ ଯୋଡ଼ି ସେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, ହେ ମହାନ୍, ହେ ଦୟାନିଧି, ତୁମେ ଦୟାକରି ଏସବୁ କଣ୍ଟକ ମୋ ମନରୁ କାଢ଼ିନିଅ, ଦେଖାଅ ମୋତେ ସେଇ ଆନନ୍ଦମୟ ରୂପ । ପୃଥିବୀର ସବୁ ସୁନ୍ଦର ବସ୍ତୁ ମୋତେ···

···ଶୁଣ, ବୃଦ୍ଧ, ମୋହଗ୍ରସ୍ତ ହୁଅନାହିଁ ଏ ପ୍ରାର୍ଥନାରେ ! ଭାବ ନାହିଁ ତୁମେ ଏହି ଭାବନା ପାଇଁ ଅନ୍ୟଠାରୁ ଅନେକ ଉପରେ । ଭାବିଦେଖ, ପୃଥିବୀର ସମସ୍ତ ପ୍ରାଣୀର ଭାବନା ତୁମ ଭିତରେ ସ୍ଥାନ ପାଇଛି । ଯାହାକୁ ତୁମେ ମହାନ୍ ଚିନ୍ତା ବୋଲି ଧରି ନେଇ ନିଜ ଭିତରେ ତାର ଉଦ୍ରେକ ଦେଖି ଆନନ୍ଦିତ ହେଉଛ, ଧନ୍ୟ ମନେ କରୁଛ ଏବଂ ଯାହାକୁ ତୁମେ କୁଚିନ୍ତା ବୋଲି ଧରିନେଇ ନିଜ ଭିତରେ ତାର ଅସ୍ତିତ୍ୱ ଦେଖି ନିଜକୁ ଘୃଣା କରୁଛ, ଏ ଦୁଇ ଭାବ ଗୋଟିଏ ସତ୍ତାର ସଙ୍ଗୀ । ଓତପ୍ରୋତ ଭାବରେ ଜଡ଼ିତ । ଶରୀର ଓ ମନର ସମଷ୍ଟିଗତ ଏ ଶରୀରକୁ ଯେତେବେଳେ ସ୍ୱୀକାର କରିନେଇଛ, ଏ ଦୁଇ ଭାବକୁ ସ୍ୱୀକାର କରି ନେବାର ସାହସ ଓ ବିନୟ ସଞ୍ଚୟ କର । ତୁମର ମହାନ୍ ଚିନ୍ତାରେ ତୁମେ ଯଦି ଗର୍ବିତ ବା ଆନନ୍ଦିତ ହୁଅ ଏବଂ କୁଚିନ୍ତାରେ ନିଜକୁ ଘୃଣା କର, ତେବେ ଅନ୍ୟ ସମସ୍ତଙ୍କ ପ୍ରତି ତୁମେ ସେମିତି ମୋହଯୁକ୍ତ ଏବଂ ଘୃଣାକାରୀ ହେବ । ଧୀରେ

ତୁମର ଅଜ୍ଞାତରେ ତୁମର ମନ ସଂକୁଚିତ ହୋଇଯିବ । ସେପରି ମନର ଭଗବାନ ପ୍ରତି ବିଶ୍ୱାସ କାହିଁ ? ସେ କେଉଁ ପାଇବ ମଣିଷର ଜଗତର ଆସ୍ୱାଦ ଯାହା ସେ ମନକୁ ବହିର୍ଜଗତକୁ ଟାଣି ଆଣି ନଜରବନ୍ଦ କରି ମୋହ ସୃଷ୍ଟି କରେ, ଦ୍ୱନ୍ଦ୍ୱାକୁ ହେଉ ବା ବାହ୍ୟ ରୂପ ଦେଉଛି କେଜାଣି !!

ଗୋବିନ୍ଦ ବାବୁ ପୁଣି ଗୋଟିଏ ଦୀର୍ଘ ନିଃଶ୍ୱାସ ଗ୍ରହଣ କଲେ, ଏତେ ଧନରେ ବୁଝିଲି ଡକ୍ଟର ଜେକିଲ୍ ଓ ମିଷ୍ଟର ହାଇଡ୍‌ଙ୍କର କରୁଣ କାହାଣୀ । ଭଲ ମନ ମିଶି ସାଧାରଣ ମଣିଷ ଡକ୍ଟର ଜେକିଲ୍ ପୂରା କୁମ୍ଭୀରଟିଏ ହେଇ ପାରନ୍ତେ ହିନ, ପୂରା ମୁନିଋଷିଟିଏ ଗଢ଼ି ପାରିଲେନାହିଁ । ତେବେ ଯାହା ଶେଷର ସତ୍ୟ ଥିବ, ସେ ଥାଉ, ମୁଁ ସେଥିପ୍ରତି ଦୃଷ୍ଟି ଦେଇ ସେମାନଙ୍କର ପ୍ରତିବାଦ ବଢ଼ାଇ ଲାଭ କଅଣ ? ବରଂ ସେ ସବୁର ଅସ୍ତିତ୍ୱ ହେତୁରୁ ମନର ନାନା ଭାବକୁ ମୁଁ ଚିହ୍ନେ ସତ୍ୟ ତାଇ ସେଇ ମହାନଙ୍କ ପରିଚୟ ଯଦି ପାଏ, ତେବେ ସେ ସବୁ କାମରେ ଲାଗିବ ତେବେ ତାହା ହିଁ ହେଉ, ତାହା ହିଁ ହେଉ···

···ହେ ଭଗବାନ୍, ତୁମେ ସତ୍ୟ । ଆଖିରୁ ତାଙ୍କର ପୁଣି ପାଣି ବହି ପଡ଼ିଲା ।

···ହଁ ହଁ, ଆଖି ପାଣି ଝରି ପଡ଼ିବାଟା ବଡ଼ କଥା ନୁହେଁ, ଯଦିଓ ପ୍ରଥମେ ଭଲ । ନିଜ ଭିତରେ ଦେଖ। ସମସ୍ତଙ୍କୁ ପ୍ରେମ କରି ପାରୁଛ ତ ? ସାମାନ୍ୟ ସୂକ୍ଷ୍ମ ଶିଅଧର ମନ ତାଙ୍କର ଗହନ ବନ ଭିତରେ ପ୍ରବେଶ କରିଛି ତାଙ୍କ ଅଜାଣତରେ !

ଗୋବିନ୍ଦ ବାବୁ ଟିକିଏ ହସି ମନେ ମନେ ହଉ ସାବଧାନ ହେଉଛି କହି ବହିଟା ଥୁଇ ଉଠିପଡ଼ିଲେ ।

ଙ୍କୀ ବାପୁ ଟେସେଟବେଳକୁ କୁକୁଡ଼ା ଅଣ୍ଡା ଓ ଛୁଆ ପାଳିବା ପ୍ରଣାଳୀ ପଢ଼ିସାରି କୁକୁଡ଼ା ଛୁଆ ଜନ୍ମ ପାଳନ ବଷପୂରେ ପଢ଼ିଛି ସମସ୍ତ ପଢ଼ାଟି ପ୍ରକମ୍ପିତ କରି । ବୋଉ ତାର ହେଡ ଗ୍ରନ୍ଥ ଉଠି ଆସି ତା ପାଖରେ ମୁଣ୍ଡରେ ହାତ ଦେଇ ବସିଲେ । ବାପୁ ଆଗ୍ରହଭରେ ବୋଉକୁ ତାର ବହି ମଲାଟ ଛବି ଦେଖାଇଲା । ଛବିଟି ସତେ ମନୋରମ ହୋଇଛି । ବିରଙ୍ଗ ଚିତ୍ର । ଗୋଲାର୍ଦ୍ଧର ଗୋଟିଏ ଚିତ୍ର । ଗୋଲାର୍ଦ୍ଧରେ ଭାରତ ଓ ଭାରତ ଉପରକୁ ଏସିଆ ଓ ଇଉରୋପର କିଛି ଅଂଶ । ଭାରତର ମାନଚିତ୍ରଟି ଗାଢ଼ର ନେଳା ଭଳି ଝୁଲୁଛି । ଗୋଲାର୍ଦ୍ଧର

ମଝିଖାନେ ଗୋଟିଏ ଭଦ୍ରମହିଳାର ଅଣ୍ଟା ପର୍ଯ୍ୟନ୍ତ ଚିତ୍ର, ଠିକ୍ ଯେମିତି ଗୋଲ୍ଡର୍ ଚଉକଠ୍ ଡେଇଁଆସୁଛି । ଓଷ୍ଠାଧରରେ ତା'ର ଦରଫୁଟା ହସ, ଆଖିରେ ଅପାର ଉତ୍କଣ୍ଠା । ବାଁ କାଖତଳେ ଗୋଟିଏ ଗଞ୍ଜା ସେ ଜାକି ଧରିଛି । ଗୋଟିଏ କୁକୁଡ଼ା ନେଉଳ ଉପରେ ଛୁଡ଼ା ହୋଇଛି । ତାର ପୁଚ୍ଛଟି ଝଲ୍ଲୀ ଉପରକୁ । ଭଦ୍ରମହିଳାଟିର ଡାହାଣ ହାତଟି ଅତି ଆଦରରେ କୁକୁଡ଼ାର ପିଠି ଉପରେ ଥୁଆ ହୋଇଛି । କୁକୁଡ଼ାଟିର ଠିକ୍ ପୁଚ୍ଛ ତଳକୁ ଗୋଟିଏ ନାଲି ଅଣ୍ଡା ଶୂନ୍ୟରେ ଏବଂ ଅନ୍ୟ ଗୋଟିଏ ଧଳା ଅଣ୍ଡା ଝଲ୍ଲୀ ଉପରେ । ଝଲ୍ଲୀ ଉପରେ ଥିବା ଅଣ୍ଡା ଫାଟିଯାଇଛି ଏବଂ ସେଥିରୁ ଅସଂଖ୍ୟ ଛୁଆ ବାହାରି ଇତସ୍ତତଃ ବ୍ୟାପି ଯାଉଛି ।

ବାପୁ ଚିତ୍ରଟି ଦେଖି ଦେଖି ଆଶ୍ଚର୍ଯ୍ୟ ଓ ଉତ୍ସାହ ଭରି କହିଲା—ଏ ମାଉସୀ, କୁହଁ ବୋଉ ? ମୋତେ ଅନେଇଛି ମାଉସୀ !!

ବୋଉ ତାର ଛବି ଆଡ଼କୁ ନ ଚାହିଁ ଉଦାସ ଦୃଷ୍ଟିରେ ଦୂରପର ଶୂନ୍ୟକୁ ଚାହିଁ କହିଲେ, ହୁଁ... । ସେ 'ହୁଁ' ବାପୁର ପ୍ରଶ୍ନର ଉତ୍ତର କିମ୍ବା ତାଙ୍କର ମନର କୌଣସି ପ୍ରଶ୍ନର ଉତ୍ତର କିମ୍ବା କୌଣସି ଜଟିଳ ସାଂସାରିକ ଅର୍ଥନୈତିକ ସମସ୍ୟାର ସମାଧାନଜ୍ଞାପକ, ତାହା ବୁଝିବା ଅସମ୍ଭବ ।

ଗୋବିନ୍ଦ ବାବୁ ଉଠି ଆସି ବସିଲେ ସ୍ତ୍ରୀଙ୍କୁ ଲାଗି ଓ ଛବି ଆଡ଼କୁ ଚାହିଁ । ଛବି ପାଇଁ ତାଙ୍କର ଆଗ୍ରହ ନାହିଁ । ସେଇ ସୂତ୍ରଧରି ସେ ତାଙ୍କର ବହୁଦିନର ଗୋଟିଏ ଆଶା ପୂରଣ କରାଇ ନେବାର ସୁଯୋଗ ପାଇ ମନେ ମନେ ଖୁସି । କଥାଟା ବାପୁ ମନ ଭିତରେ ପୂରାଇ ପାରିଲେ ହେଲା; କିନ୍ତୁ ସେ ଚେଷ୍ଟା କରିବା ଆଗରୁ ଥରେ ସ୍ତ୍ରୀଙ୍କର ମାନସିକ ପାଗ ବୁଝିନେବା ଉଚିତ । ତାଙ୍କର ଶୂନ୍ୟ, ଉଦାସ ଚାହାଣିରୁ ମାନସିକ ଉତ୍ତାପର ପରିମାପ ମିଳୁନାହିଁ [illegible] ବର୍ତ୍ତମାନ କାର୍ଯ୍ୟକାରୀ ଅଛି କି ନା ସେ ବିଷୟରେ ମଧ୍ୟ ଘୋର ସନ୍ଦେହ; କାରଣ ଗୋବିନ୍ଦ ବାବୁଙ୍କର ଏତେବଡ଼ ଦେହଟି ଯେ ତାଙ୍କ ଶରୀରକୁ ଲାଗି ଥୁଆହେଲା, ସେଥିରେ କୌଣସି ଶାରୀରିକ ବା ମାନସିକ ପ୍ରତିକ୍ରିୟା ଦୃଷ୍ଟହେଲାନାହିଁ । ଗୋବିନ୍ଦ ବାବୁ ଆଶ୍ଚର୍ଯ୍ୟ ହବାରେ ଥରେ ସ୍ତ୍ରୀଙ୍କ ଆଖିକୁ ସାମନାସାମନି ଚାହିଁ ଆଖି ସାମନାରେ ଆଙ୍ଗୁଳି ହଲାଇଲେ । ତଥାପି କୌଣସି ପ୍ରତିକ୍ରିୟା ନାହିଁ, ଆଖିପତା ଟିକିଏ ହଲିଲା ବି ନାହିଁ । ଆଖି ଖୋଲା ପୂର୍ବପରି ସ୍ଥିର । କେବଳ ମୁଣ୍ଡରେ ଥିବା

ଡାହାଣ ହାତର କଡ଼ି ଆଙ୍ଗୁଳିଟି ଟିକିଏ ହଲିଲା । ଗୋବର୍ଦ୍ଧନ ବାବୁ ଘାବରେଲେ, ସେଣ୍ଡକ ଡେର୍ । ଭାଲ ଠାଉ ନାନି ମା' ଜାଣେ !

ବାପୁର ଏଠି ଆଙ୍ଗୁଠି ନେଇ ଦେଖି କହିଲେ, କଅଣ ପଡ଼ିଲୁ କି ରେ ? ଏ କ୍ଷତଟି କଅଣ କି ରେ ?

ବାପୁ ହିଁ ଃସଲଖ କହିଲା, ବାପା, କୁକୁଡ଼ା କଣିଦିଅ ମୁଁ ରଖିବି । ମାଉସୀ ମୋତେ କହିଲା କୁକୁଡ଼ା ରଖିବାକୁ ।

ମାଉସୀ କେତେବେଳେ କହିଲା ?

ଏଇକ୍ଷଣି ତ ପରା !

ମାଉସୀ କାହିଁ ?

ଏଇପରା, ବାପୁ ଛବକୁ ସୂଚି କଲା । ତା'ପରେ ଜିଦ୍ ଲଗାଇ କହିଲା, ହିଁ ରଖିବି, ଝୁପ ଘରେ ଭାଲି କୁକୁଡ଼ା କଣିଛନ୍ତି ଦୁଇଟା । ମୋତେ ଆଜି କଣିଦିଅ ।

ଗୋବର୍ଦ୍ଧନ ବାବୁଙ୍କୁ ଆଉ ପରିଶ୍ରମ କରିବାକୁ ପଡ଼ିଲାନାହିଁ କହୁ । ବାପୁ ମନରେ କେତେକ ଆଗରୁ ସେହି ପ୍ରସ୍ତୁତ ଅଛି । ବୀଜ ପଡ଼ିବା ସାଥେସାଥ୍ ଗଛ । ଗୋବର୍ଦ୍ଧନ ବାବୁଙ୍କ ଅନେକ ଦିନର ଆଶା, ଆକାଂକ୍ଷା ସେ କୁକୁଡ଼ା ରଖିବେ । ମନେ ମନେ କେତେ କଳ୍ପନା କରନ୍ତି - ଅଣ୍ଡାର ପୋଚ୍, ଆମ୍ଲେଟ୍, ତରକାରି ଖାଇଛନ୍ତି, ତାଙ୍କର ଅନେକ କୁକୁଡ଼ା ହୋଇଛି । ଦିନେ ଦିନେ ରବିବାରରେ ସେଥିରୁ ଗୋଟିଏ ମାରି ରୋଷ୍ଟ କରି ମୁସଲମ କରି ଖାଉଛନ୍ତି ।

କିନ୍ତୁ ନେତ ସୁଯୋଗ ସୁବିଧା ଉଣ୍ଡି ସୁଦ୍ଧା ଇତେ ସ୍ତ୍ରୀଙ୍କର ମାନସିକ ଉତ୍ତାପ ସାଙ୍ଗେ ସାଙ୍ଗେ ବଢ଼ିଯାଏ ଚରମକୁ । ନାକ ଟେକି ଫାଁଏ କରି ସେ କହନ୍ତି, ପଠାଣ ଘର ଖୋଲିବାକୁ ବାହୁଁ ତମେ ! ଏ ଘରର କୁଳଦେବତା ଲକ୍ଷ୍ମୀନାରାୟଣଙ୍କର ପୂଜା ନଷ୍ଟ ହୁଏ ମନେରଖ ।

ଗୋବର୍ଦ୍ଧନ ବାବୁ ଚୈତନ୍ୟଦେବଙ୍କ ଠାଣିରେ ଡାହାଣ ହାତ ଆପୁଲି ଟେକି ମୁଣ୍ଡ ଟୁଙ୍ଗାଇ ବୁଝାଇବାକୁ ପାଟି ମେଲାକରିବା ମାତ୍ରକେ ସ୍ତ୍ରୀ ତାଙ୍କର ରଣରଙ୍ଗିଣୀ ମୂର୍ତ୍ତିରେ କହିଉଠନ୍ତି, ମୁଁ ଜାଣିଥିଲି ଯାଏ ତା କଦାପି କରିବ ଦେବନାହିଁ, ଦେବନାହିଁ, ଦେବନାହିଁ । ତିନିବାର ସତ୍ୟ କଲି ।

ଏହାପରେ ଗୋବନ୍ଦ ବାବୁଙ୍କର ହଠାତ୍ ଗୃହାଶ୍ରିତ ଘର୍ଘରଃଶ୍ବାସ ତ୍ୟାଗ ଓ ସନ୍ଦେହ ଗୃହତ୍ୟାଗ । ଏ ଏକାଙ୍କିକା ଅନେକବାର ଅଭିନୀତ ହୋଇ-ଯାଇଛି ।

ଆଜି କିନ୍ତୁ ଗୋବନ୍ଦ ବାବୁଙ୍କର ସବୁ କଳ୍ପନା ଫଳବନ୍ତ ହେବାର ସବୁ ଲକ୍ଷଣ ଦେଖାଦେଇଛି । ବାପୁ ଏବେ ଜିଦ୍ ଧଇଲେ ବାସ୍, ହର ବ୍ରହ୍ମା ତ ତୁଚ୍ଛ, କିବା ଗ୍ରହ ସେମାନେ, ବାପୁବୋଉ ବା ବାପୁକୁ ଟଳାଇ ପାରିବେନାହିଁ । ମନେ ମନେ ହେଲେଜି ଥରେ ଗୋବନ୍ଦବାବୁ ମାରିଦେଲେ ଓ କହିଲେ, ଭଗବାନ୍ ତୁମେ ଅଛ, ନିଶ୍ଚୟ ଅଛ, ମୋର କେତେ ଚାରିଜି ମନ ଯେତେ ମନାକଲ ତମର ଅସ୍ତିତ୍ୱକୁ ! ଅପାତ ଦୃଷ୍ଟିରେ ଅସାମଞ୍ଜସ୍ୟ ସମାନ୍ୟ ସାମାନ୍ୟ କଥାକୁ କାର୍ଯ୍ୟକାରଣ ସମ୍ବନ୍ଧରେ ବାନ୍ଧି କି ସୁନ୍ଦର ଭାବରେ ମୋର ଇଚ୍ଛା ପୂରଣ କରୁଛ ତମେ !! ବାପୁର ଛବ ବନ୍ଧ କରିବାର ଜିଦ୍ ଓ ମୋର କୌଣସି ଉଦ୍ଦେଶ୍ୟ ନ ରଖି, ନିଛକ ଛବ ବନ୍ଧ ହିସାବରେ, 'କୁକୁଡ଼ା ରକ୍ଷ' ବନ୍ଧ ଆସିବାକୁ ଯୋଖି ଦେଇ ଆଜି ସକାଳୁ ମୋର ଇଚ୍ଛା ପୂରଣରେ ସୁନ୍ଦର ପରିସ୍ଥିତି ସୃଷ୍ଟି କରୁଛ ତୁମେ !!!

ଚୁପ୍, ବାପୁ ! ବୋଉ ଗର୍ଜି ଉଠିଲେ ।

ଗୋବନ୍ଦ ବାବୁ ହଠାତ୍ ବୁଝିପାରିଲେ ନାହିଁ, ଗର୍ଜନ କାହାଉପରେ । ଚମକି ପଡ଼ିଲେ; କିନ୍ତୁ ନା, ବାପୁଆଡ଼େ ତରକି ବୁଲିଛନ୍ତି ସେ ।

କିନ୍ତୁ ବାପୁ କି ସେଥିରେ ଡରିଯିବା ମଣିଷ । ବୀର ପୁରୁଷର ପୁଅ ସେ ହେଁ...ହେଁ... । ଗୋବନ୍ଦ ବାବୁ ମନେ ମନେ ବାପୁକୁ ଉତ୍ସାହିତ କଲେ, ଲୁଉନା ବାପୁ, ତୁ ଚଳ ଜିଦ୍ ।

ବୋଉକୁ ଶକତ୍ ଠେଲାଥରେ ମାରିଦେଇ ବାପୁ ଉଠିଗଲା । ଗୋବନ୍ଦ ବାବୁ ହତାଶ ହେଲେ...ହ୍ୟାପ, ଶିଆଳକୁଆଁ କେବେ ସିଂହ ହେଲାଣି !

ହେଲଣି । ଏଇ ଯେ ବାପୁ ପ୍ରବେଶ କରୁଛି ଗୋଟିଏ କୁକୁଡ଼ାକୁ ବଗଲରେ ଟାଣି ଟାଣି ।

ଗୋବନ୍ଦ ବାବୁ ଓ ତାଙ୍କ ସ୍ତ୍ରୀ ଶୀତଳ ମୁଖ ଭୁଲିଯାଇ ଆଶ୍ଚର୍ଯ୍ୟ ଭାବରେ ସମସ୍ୱରେ ପଚାରିଲେ, କିରେ ଏଟା କଉଁଠୁ ଆଣିଲୁ ?

ମାଉସୀ ହେବ । କାଲି କିଣିଥିଲ ଅଣ୍ଡା ଦେବାକୁ । ଦୁହେଁ ବୁଝିଲେ ବାପୁ ଟୁପବୋଉକୁ କାଲି କିଣା କୁକୁଡ଼ାଟି ବାହେଗଇଛି । ଟୁପବୋଉ ଅନ୍ଧାର ଘୁଞ୍ଚ, ଥିଲାଘର କୋଣରୁ, ବାପୁ ବୋଉର ଅଣ୍ଟା ଦପ୍ କରି ଜଳିଉଠିଲା । ସେ କେମିତି ଜାଣିଲେ, ଏ ଠେକା ହେବୁଟି ମୋ ମୁଣ୍ଡ ତଳକୁ କରିଦେବ । ସେ ଫେରିଲ ଦେଇ ଆ ତାକୁ ।

ବାପୁ ହସି ହସି ତାକୁ ଟିକେ ଟୁଙ୍ଗା ଦେଇଛି ବୋଉର କଥାକୁ ଖାତିର ନ କରି । କୁକୁଡ଼ାଟି କାହାରି ପ୍ରତି ଭ୍ରୂକ୍ଷେପ ନ କରି ସେଇ ବନ୍ଧା ଅବସ୍ଥାରେ ମଝି ଚିମ୍ପି ଖାଉଥିବା କଣଟି ଖାଇବା ଯୋଗ୍ୟ କି ନୁହଁ ପରୀକ୍ଷା କରୁଛି । ବାପୁବୋଉ ଠାଏକଣା ଏକ ଝାମ୍ପୁଡ଼ା ମାରି ବାପୁ ହାତରୁ ଦୌଡ଼ିଟି ଛଡ଼ାଇନେଲେ । ବାପୁ ପ୍ରଥମେ କାନ୍ଦି ପକେଇଲା । ଏଥର ନିଆଁରୁ ଉଦ୍ଧାର ହୋଇ ଯାଇଥିବା ତାହା କଳ-ନାହିଁ । ସେ ତେଣୁ ଉଠି ନେଇଠା, ଚାଲିଟି ସବୁ ଅଗଣାକୁ ଫୋପାଡ଼ିବାକୁ ଲାଗିଲା । ସେ ସବୁ ପ୍ରତି ଭ୍ରୂକ୍ଷେପ ନ କରି ବାପୁବୋଉ ଯେତେବେଳେ କୁକୁଡ଼ାଟି ଟାଣି ଟାଣି ଫେରାଇ ଦେବାକୁ ବାହାରିଲେ, ବାପୁ ଅନ୍ୟ ପନ୍ଥା ଧରିଲା । ବୋଉର ପାଦ ଦୁଇଟି ଧରି କରୁଣ ସ୍ୱରରେ କହିଲା ।

ବାପୁବୋଉ ହସି ପକାଇ କହିଲେ, ହଉ ଯା ରଖ । ବାପୁ ଆନନ୍ଦରେ ନାଚି ନାଚି ଚାଲିଗଲା କୁକୁଡ଼ାକୁ ବାନ୍ଧିବାକୁ । ବାପୁବୋଉ ଟୁପବୋଉ ଘରକୁ ଗଲେ ବାପୁର ଆଚରଣ ପାଇଁ କ୍ଷମା ମାଗି କୁକୁଡ଼ାର ଦାମ ଦେଇଦେବାକୁ । ଏହାପରେ କୁକୁଡ଼ାର ଗୋଟିଏ ସାନ ଘର ହୋଇଛି । ତା ପାଇଁ ଧାନ କିଣା ହେଉଛି । ତାକୁ ଏକା ଲାଗୁଛି ବୋଲି ଆଉ ଗୋଟିଏ କୁକୁଡ଼ା କିଣା ହୋଇବ ।

କିନ୍ତୁ ଅଣ୍ଡା କାହିଁ ! ମାସେ ହୋଇଗଲା ଅଣ୍ଡା କାହିଁ !! ରୋଷେଇ ବାବୁ ଦିନେ ଚିଡ଼ିଯାଇ କୁକୁଡ଼ାର ଚରିତ୍ର ବିଷୟରେ ଖରାପ ମନ୍ତବ୍ୟ କଲେ, କୁକୁଡ଼ା କୁଳରେ ଏ ଦୁଇଟା ଷଣ୍ଢ ଆସିଲେ ହ୍ୟାଠ୍ ଆମ ଘରକୁ ।

କିନ୍ତୁ ନା, କୁକୁଡ଼ାମାନଙ୍କ ଦୋଷ ନୁହଁ, ଏକଥା ଦିନେ ବୁଝି ପାରିଲେ ସେ । ବାପୁ ଯେ ତାଙ୍କୁ ଗୋଟେ ଚୋଟେ ଜଗିଛି ! ଗଞ୍ଜା ଗୋଡ଼ାଇବା ମାତ୍ରକେ ବାପୁ ତାକୁ ଘଉଡ଼ାଇ ଦେଉଛି । ଏଣିକି ଉପାୟ ! ବାପୁକୁ ଏ ବିଷୟରେ କିଏ ବୁଝାଇବ, କେମିତି ବୁଝାଇବ, ବାପୁ ବୁଝିଲେ ତ ?

ଗୋବର୍ଦ୍ଧନ ହତାଶରେ ହସ ହସି ସ୍ତ୍ରୀଙ୍କୁ କହିଲେ । ବାପୁବୋଉ ମୁହଁରୁ ଧରି କହିଲେ, ଠିକ୍ ହୋଇଛି, ଅଣ୍ଡାଟିଏ ବାହାରିଗଲା ଏଥର । ତାପରେ ଗମ୍ଭୀର ହୋଇ କହିଲେ, ଭଲ ହୋଇଛି, ଦିନରାତି ଘରେ ପିଣ୍ଡାରେ ହଗୁଥିଲା, ମୋର ନାକ ମୁଁ ଟେକିବି ହେଲାଣି ।

ଏହି ସମୟରେ ଟୋଟିଏ ଗଞ୍ଜା ବାପୁର କୁକୁଡ଼ାକୁ ଗୋଡ଼ାଇ ଗୋଡ଼ାଇ ମାଡ଼ିଆସିଲା ବରଣ୍ଡାଉପରକୁ । ବାପୁ ଗୋଡ଼ାଉଛି ଗଞ୍ଜା ପଛରେ ଠେଙ୍ଗା ମାରୁ ମାରୁ । ଗଞ୍ଜାର ସେଥି ପ୍ରତି ଭ୍ରୂକ୍ଷେପ ନାହିଁ । ବାପୁବୋଉ ବାପୁକୁ କୋଳକୁ ନେଇ କହିଲେ କି ହେଲା । ବାପୁ ବୋଉକୋଳରେ ଗୁଟିପିଟି ହୋଇ କହିଲା, ଛୁଆଟେ ମୋତେ, ମୋ କୁକୁଡ଼ାକୁ କାମୁଡ଼ିଦେବ ସେଠା ।

ବାପୁବୋଉ କହିଲେ, ଆରେ ଶୁଣୁଣୁ ! ସେ ବଡ଼ କୁକୁଡ଼ା ହେବାରେ ଅନେକ ଛୁଆକୁକୁଡ଼ାର ନେତା ଅଛି । ସେ ନ ମୁଣ୍ଡ ତୋ କୁକୁଡ଼ା ଧଇଲେ...ଏଁ ...ଏଁ ବୁଝିଲୁ..(ଅପାଙ୍ଗରେ ଗୋବର୍ଦ୍ଧନ ବାବୁଙ୍କ ଆଡ଼େ ଟିକିଏ ଚାହିଁ) ବୁଝିଲୁ ତୋ କୁକୁଡ଼ାଟିକୁ ସେ ସୋନସବୁ ଶିଖାଇବ । ତୋ କୁକୁଡ଼ା ହେଉଚି ନିଶ୍ଚିତ ଗୋଟାଏ ଅଣ୍ଡାଦେବ, ଆଉ ସେ ଅଣ୍ଡାଟିରୁ କେତେ କୁନିଛୁଆ ହେବେ ।

ବାପୁ ଗୁଟିପିଟି ହବା ବନ୍ଦକରି କାନ ଡେରି ଶୁଣିଲା । କୋଳରୁ ଓହ୍ଲାଇ କୁକୁଡ଼ା ଆଡ଼େ ଚାହିଁଲା । ସେତେବେଳକୁ ଗଞ୍ଜା ଚାଲିଗଲାଣି ତାର ନିୟମ-ପାଳି ।

ବାପୁ ଯେତେବେଳେ ଦେଖିଲା ସତକୁସତ ଏଥର କଣ୍ଢଦାନାଗାରେ ତା'ର କୁକୁଡ଼ା ଅଣ୍ଡା ଦେଇ, ଭାରି ଖୁସିହୋଇ ସେ ବୋଉକୁ ଦେଖାଇଲା । ଏହାପରେ ସେ ଗଞ୍ଜାକୁ ଆଉ ବାଧା ଦେଲାନାହିଁ ।

ଗୋବର୍ଦ୍ଧନ ବାବୁଙ୍କର ବର୍ତ୍ତମାନ ଅନେକ ଗୁଡ଼ିଏ କୁକୁଡ଼ା । ପ୍ରତିଦିନ ଅଣ୍ଡା ମଧ୍ୟ ଦୁଇ ଚାରିଟାରୁ କମ ନୁହେଁ । ଗୋବର୍ଦ୍ଧନବାବୁ ଆନନ୍ଦରେ ଆମଲେଟ୍ ପୋଚ ଖାଉଛନ୍ତି; କିନ୍ତୁ କୁକୁଡ଼ା ରୋଷ୍ଟ ବା ତରକାରି ଖାଇପାରି ନାହାନ୍ତି । ବାପୁବୋଉର ସେଥିରେ ଘୋର ଆପତ୍ତି, ଯାହାକୁ ପାଳିଚ ମୁଁ ତାକୁ ମାରିବ ନା ! ରାକ୍ଷସୀ ହେବ କି !!

ସେ ଦିନ ବଡ଼ କୁକୁଡ଼ା ଆଜ୍ଞେ କୁହାଁ କହିଲେ, ଆଜ୍ଞ ଏ ଜାଣିନ ଏଠି କିମିତି ?

—ହଁ, ଶୁଣ ହେ, ଏକ ଛୁଟିକା ଗୃହଆଜ୍ଞ ନାହିଁକରି କମାଉଥିବ ସେ । ଆଜି ଯେମିତି କରୁଥିଲା, ଇଚ୍ଛା ଦେବା ଜଗା ଦେଖେଁଚି ଯାଅ କେମିତି ଯେମିତି ଅଣ୍ଡା ଦେବ ସେ ରକମ ଦେଖେଁ ପୁଣି ଟାଙ୍ଗିବ ଗାମଛ କରିବ, ଇଚ୍ଛା ଦେଲ ମାରିକି, ଇଚ୍ଛା ନେଇ ଯା ଖାଇବ ! କି ଆଶ୍ଚର୍ଯ୍ୟ ସତେ !

ସେ ଦିନ ବାପୁଙ୍କ ଆଖି ବି ଛଳ ଛଳ ହୋଇଗଲା । ସେ କହିଲେ, ପ୍ରକୃତି କି ଅଦ୍ଭୁତ ସୃଷ୍ଟି ଏମାନେ । ସକାଳୁ ଉଠିଲେ, କୁଳେଚଳେ ବାହାରିକି ଖାଦ୍ୟ ଖୋଜିବା ପାଇଁ । ଦିନସାରା ବାହାରେ ଖାଇ ସନ୍ଧ୍ୟାବେଳକୁ ଫେରନ୍ତି ଆସିଲେ, ଘରେ ନିଜକାଠ ପାଇଁ ଟଙ୍କାଟିଏ ବି ଝଡ଼ ନାହିଁ । ବରଂ ପୁଷ୍ଟିକର ଖାଦ୍ୟ ମୋତେ ଯୋଗାଉଛନ୍ତି; କିନ୍ତୁ ଅଣ୍ଡା ଦେବାପରେ ତାକୁ କିଏ ନେଲା କି ଖାଇଲା ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଯଦି ଆଅନ୍ତା ତେବେ ଅମ ପରିରେ କେତେ ଅସୁବିଧା ହୁଅନ୍ତା କହ ତ ?

କୁଣୀ ଦେଖ ସବୁଠାରୁ ବଳକାରକ ଖାଦ୍ୟ ଯୋଗାଉ ଥିଲେ ବି ଏମାନେ କେତେ ଶୁଦ୍ଧ !!

—ଅଦ୍ଭୁତ ସତେ ! ଠିକ୍ ଗତ ଭୋରଠାବେଳେ ବ୍ରାହ୍ମମୁହୂର୍ତ୍ତରେ ସବୁ କୁକୁଡ଼ାଙ୍କ ଡାକଉଠିଲେ, ଚନ୍ଦ୍ର ଧ...ଅ...ର, ଭଷା କ...ଅ...ର ! ବାପୁ ବେଶ ହାତଯୋଡ଼ି ନମସ୍କାର କରି କହିଲେ ।

ଗୋବିନ୍ଦ ଛଳ ଛଳ ଆଖିରେ ଫେରି ଆସି ଖଟ ଉପରେ ଶୋଇ ଭାବିବାକୁ ଲାଗିଲେ ସୃଷ୍ଟିର ଅଦ୍ଭୁତ ନିୟମ । କିଛି ଚାଇଁ କଳନା ପାଇଲେ ନାହିଁ । ଉପନିଷଦର ଗୋଟିଏ ଶ୍ଳୋକ ତାଙ୍କର ମନେପଡ଼ିଲା, "ଯସ୍ୟାମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ, ଅବିଜ୍ଞାତଂ ବିଜାନତାଂ ବିଜ୍ଞାତମବିଜାନତାମ୍ ।" ଯେଉଁମାନେ ସମ୍ୟକ୍ ଜ୍ଞାନବାନ୍ ସେମାନେ ବ୍ରହ୍ମଙ୍କୁ ଜ୍ଞାତ ବୋଲି ମନେକରନ୍ତି-ନାହିଁ, ଯେଉଁମାନେ ସମ୍ୟକ୍ ଜ୍ଞାନବାନ୍ ନୁହନ୍ତି, ସେମାନେ ମନେକରନ୍ତି ବ୍ରହ୍ମ ଜ୍ଞାତ ।

ସେଦିନ ଠିକ୍ ସକାଳୁ ଗୋବିନ୍ଦବାବୁଙ୍କ ନାତି ବଗିଚାକୁ ଚାଲିଲା । ଦେଖିବା ପାଇଁ ଦୁଇଟି ସାଥୀରେ କୁକୁଡ଼ାମାନଙ୍କର ଶୋଇବା ସ୍ଥାନରେ । ପ୍ରତିଦିନ ଯେଉଁ ଶୁଣନ୍ତି; କିନ୍ତୁ ଆଜି ତାଙ୍କ ଭାଷା ସେ ସ୍ପଷ୍ଟ ବୁଝି ପାରିଲେ, ବାପୁବୋଉଙ୍କୁ ଆଉ ଥରେ ଜୋରରେ ଡାକି କହିଲେ, ଶୁଣୁନ, କୁକୁଡ଼ାମାନେ କହୁଛନ୍ତି, ବାଡ଼ି କବାଟ ଫିଟାଇ ଦିଅ, ଆମେ ବାହାରକୁ ଯିବୁ ନିଜ ନିଜ ଧନ୍ଦାରେ ।

ବାପୁବୋଉ ଜୋରରେ କହିଲେ, ସତେ ମ !!

ତୁମେ କେତେ ଫିଟାଇ ବାହାରକୁ ଆସିଲେ ବାଡ଼ିକବାଟ ଫିଟାଇ ଦେବାକୁ କୁକୁଡ଼ାଗୁଡ଼ିକ ସେମାନଙ୍କ ପଛେ ପଛେ ଦୌଡ଼ିଲେ । ଯେମିତି ବାଡ଼ି କବାଟ ଫିଟାହୋଇଛି, ଗିଡ଼ଗିଡ଼ା ମାରି ସମସ୍ତେ ଦୌଡ଼ିଗଲେ ବାହାରକୁ ।

ଗୋବିନ୍ଦବାବୁ ଓ ବାପୁବୋଉ ମୁଗ୍ଧ ଭାବରେ ଚାହିଁ ରହିଲେ ସେମାନଙ୍କୁ । ବାପୁବୋଉ ଆକାଶକୁ ଚାହିଁ ନମସ୍କାର କରି କହିଲେ, ହେ ଭଗବାନ୍ ..

ଗୋବିନ୍ଦବାବୁ କହିଲେ, ଉପରକୁ ଚାହଁ । ଘାସକୁ ଦେଖ, କୁକୁଡ଼ାକୁ ଦେଖ । ଦେଇ ଦେଇ ଦେଖ ! ପିମ୍ପୁଡ଼ି ଧାଡ଼ି ଲାଗିଛି କାନ୍ଥରେ । ମା’ ପିମ୍ପୁଡ଼ିମାନେ ମୁହଁରେ ଅଣ୍ଡାଟିମାନ ଧରି ତରତରହୋଇ ଧାଇଁଛନ୍ତି । ଦେଖ ମ, ଗୋଟାଏ ସାନ ବୁଢ଼ୀଆଣୀ ସେ ଧାଡ଼ି ପାଖରେ ଛକି ବସିଛି, ଆଉ ସୁବିଧା ପାଇବା ମାତ୍ରକେ ପିମ୍ପୁଡ଼ି ମୁହଁରୁ ଅଣ୍ଡାଟିଏ ଛଡ଼ାଇନେଇ ପଳେଇଯାଉଛି !! ଏ ସବୁ ତେବେ ଭଗବାନଙ୍କ ଲୀଳା । ହେଲା ମୁସ୍କିଲିଆ କଥା !!

# ଛାଡ଼ପତ୍ର

ଦିନଟା ଆଷାଢ଼ର ପ୍ରଥମ ଦିନ ନୁହେଁ । ରମାରଞ୍ଜନ ମଧ୍ୟ ଠିକ୍ କାନ୍ତ ନୁହନ୍ତି, ବୟସ ତାଙ୍କର ପଚାଶ । ଦୂର ବିରହର ଯନ୍ତ୍ରଣା ମଧ୍ୟ ସେ ଅନୁଭବ କରୁ-ନାହାନ୍ତି । ପୁନର୍ମିଳନର ଯନ୍ତ୍ରଣା ସେ ବର୍ତ୍ତମାନ ଅଙ୍ଗେ ଅଙ୍ଗେ ଅନୁଭବ କରୁଥିଲେ । ରମାରଞ୍ଜନଙ୍କ ପିତା ଯେ କେଉଁ ଭାବ ବୁଝି ନାଁ ରଖିଥିଲେ 'ରମାରଞ୍ଜନ' ସେ କଥା ସେଇ ଜାଣନ୍ତି; କିନ୍ତୁ ବିବାହ ପରେ ତାଙ୍କର ବନ୍ଧୁମାନେ କହିଲେ, ନାଁଟି ତାଙ୍କର ସାର୍ଥକ ହେଲା । ବନ୍ଧୁମାନେ ହୁଏତ ତାଙ୍କର ମତ ଏ ପର୍ଯ୍ୟନ୍ତ ବଦଳାଇ ନାହାନ୍ତି, ରମାରଞ୍ଜନ ବିବାହ କରିବାର ଦୁଇବର୍ଷ ଭିତରେ—ଠିକ୍ କହିବାକୁ ଗଲେ ତାଙ୍କର ପ୍ରଥମ ସନ୍ତାନ ଜନ୍ମପରେ—ଅନୁଭବ କଲେ, ତାଙ୍କର ସେ ନାଁ'ଆଜି ତାଙ୍କୁ ଉପହାସ କରୁଛି । ତଥାପି ଘଡ଼ଘଡ଼ିର କଡ଼ କଡ଼ ଶବ୍ଦ, ବିଜୁଳିର ମୁହୂର୍ମୁହୁ ଝଲକ ଏବଂ ବରଷାର ଅବିରାମ ଝର ଝର ଝମ୍ ଝମ୍ ସଙ୍ଗୀତ ଆଜି ଟିକିଏ କାନ୍ତଭାବ ଆଣିଦେଲା । ପଡ଼ୋଶୀ ଘରର ଯୁବତୀ ବଧୂ ଗ୍ରାମୋଫୋନ୍‌ରେ ରେକର୍ଡ ଲଗାଇଦେଲେ—'ଏମନ ଦିନେ ତାରେ ବଲା ଯାୟ, ଏମନ ଘନ ଘୋର ବରଷାୟ' । ଏପରି ଦିନରେ କାହାକୁ କିଏ କଅଣ କୁହେ, ଜାଣିବାକୁ ଆଗ୍ରହାନ୍ୱିତ ହୋଇ ରମାରଞ୍ଜନ ପଡ଼ୋଶୀ ଘରଆଡ଼ ଝରକା ଖୋଲିଦେଇ ଛିଡ଼ାହୋଇଛନ୍ତି କି ନାହିଁ ପଛଆଡ଼ୁ ଶୁଭିଲା, ଶୁଣୁଚ ହୋ, ଏ ବରଷାରେ ମନ ଇସ୍କୁଲରୁ ଆସି ମନା କରୁକରୁ ଖେଳିବାକୁ ପଳେଇଚି, ତୁମେ ତ କିଛି କହିବନି । ବୁକର ଠୋକାଚ ବାଇଗଣ ସେର ପାଞ୍ଚ'ଣା ଜାଗାରେ ଛ'ଅଣା ଦେଇ ଆଣୁଛି । ମଲା ! କୁଆଡ଼େ ଅକାଶଟାକୁ ଚାହିଁଚ ମ ? ହା ମୋ କପାଳ···?

କପାଳରେ କରାଘାତର ପ୍ରଚଣ୍ଡ ଶବ୍ଦ ଶୁଣି ରମାରଞ୍ଜନ ବାବୁ କିଛିକ୍ଷଣ ଆଖି ବୁଜି ଛିଡ଼ା ହେଲେ ଏବଂ ମନେ ମନେ କହିଲେ ହାୟ ଭଗବାନ୍ ! ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଶାନ୍ତସ୍ୱରରେ ପଚାରିଲେ, କଅଣ କହୁଥିଲ ରମା ?

ନିରୁପମୟୀ ହସି କହିଲେ, ଓଃ ତୋ ବୁଦ୍ଧିକି, ସ୍ତ୍ରୀ ସହିତ କଳିଆକର ଅଛିଟି···

ରମାକାନ୍ତ ଜନ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲେ, ନା ପ୍ରେମ ! ଆଉ ଥଳିକନାହିଁ । ସବୁକଥା ବୃଥା ହୋଇଗଲା । ଟିକିଏ ବି ସହଯୋଗ ପାଇଲି ନାହିଁ ମୋ ସହାନୁଭୂତି ଜଣିକରେ । ଯଦି ବନ୍ଧୁ ବା ବୃଦ୍ଧୀଧା ଥାଆନ୍ତି, ସତ କହୁଛି, ଯୁଗଜଗତ ହୋଇ ଆଜ ଗୋଟିଏ···ନାକେ, ଆଜ ଗୋଟିଏ··· । ଯବୁବେଳେ ତାଙ୍କ ଗଳାର ଗହଣ, ମହିଷ ଆଉ କେତେ ସହିବ କହିଲୁ··· ?

ନିରୁପମୟୀ ହସି କହିଲେ, ଯୁଗଜଗତ ହେବ୍ରୁ, ନା ? ସେଭଳି ଗୋଟାଏ କଥା କହୁଛି ଶୁଣ । ଜଣେ ଧନୀ ଭଦ୍ରଲୋକ ଥରେ ତୀର୍ଥଯାତ୍ରା କରିବାକୁ ଦୂର ଦେଶକୁ ବାହାରିଲେ । ଯିବାବେଳେ ତାଙ୍କ ସ୍ତ୍ରୀଙ୍କୁ କହିଲେ, ଦେଖ, ମୁଁ ଯେତେ ବିଦେଶକୁ ବୁଲି ଯାଉଛି । କେବେ ଫେରିବି, ଫେରିବି କି ନାହିଁ, କିଏ କହିବ । ମୋର ବସ୍ତୁ ସ ମୋର ଅନୁପସ୍ଥିତିରେ ତୁମେ ନିଜକୁ ଚଳାଇ ନେଇପାରିବ । ଯଦି ନପାର, ତେବେ ଗୋଟିଏ ଉପାୟ ମୁଁ କହିଯାଉଛି, ତାହା ପାଳନ କରିବ । ଏଇ ଯେ ସାମନାରେ ସର୍ବସାଧାରଣ ପାଇଖାନା ଦେଖୁଛ, ସେଠିକି ଯେତେ ଲୋକ ଯାଆନ୍ତି, ତାଙ୍କ ଭିତରେ ଯାହାର ସବୁଠୁଁ ପୁରୁଣା ଚଟି ଦେଖିବ, ତାହାର ସାହାଯ୍ୟ ନେବ । ଏହା କହି ଭଦ୍ରଲୋକଟି ତୀର୍ଥଯାତ୍ରାରେ ଗଲେ । ଅନେକ ଦିନ ବିତିଗଲା । ସ୍ତ୍ରୀ ଆଉ ନିଜକୁ ଚଳାଇ ପାରିଲେ ନାହିଁ । ସ୍ୱାମୀଙ୍କ ନିର୍ଦ୍ଦେଶ ମାନି ସେ ଦିନେ ସକାଳେ ଝରକା ପାଖରେ ବସି ପାଇଖାନା ଯାଉଥିବା ଲୋକମାନଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ସେମାନଙ୍କ ଭିତରେ ଜଣକର ଚଟିଟି ଅତି ପୁରୁଣା, ତିନି ଚାରି ଜାଗା କଣା ହୋଇ ପାଣି ଝରୁଛି, ଚମଡ଼ା ଫାଟି ଅନେକ ଜାଗାରେ ତେପା ହୋଇଯାଇଛି । ତାଙ୍କୁ ହିଁ ମନେ ମନେ ମନୋନୀତ କରି ସେ ଚାକର ପଠାଇ ତାଙ୍କୁ ଡକାଇଲେ ଏବଂ ତାଙ୍କୁ ନାନା ସୁଖାଦ୍ୟ ଦେଇ ଆପ୍ୟାୟିତ କରି ପ୍ରକାରାନ୍ତରେ ସ୍ୱାମୀଙ୍କ ନିର୍ଦ୍ଦେଶ ଓ ନିଜର ମନୋଭାବ ପ୍ରକାଶ କରିବାକୁ ମନସ୍ଥ କଲେ; କିନ୍ତୁ ନିଜର କୌତୂହଳ ଦମନ କରି ନ ପାରି ସେ ପ୍ରଥମେ ହିଁ ପଚାରିଲେ ମହାଶୟ, ଗୋଟିଏ କଥା ଜାଣିବାକୁ ମୋର ଭାରି ଆଗ୍ରହ ହେଉଛି । ଯଦି କିଛି ମନେ ନ କରିବେ ତ ପଚାରିବି ।

ଭଦ୍ରଲୋକ ଅଭୟ ଦେବାରୁ ସେ କହିଲେ, ଆଜ୍ଞା, କହିବେ ନା, ଆପଣଙ୍କ ଚଉକି ଖଣ୍ଡ ଘରର ଜାଗା କଣା ଓ ଅନେକ ଜାଗା ଚେପା ହୋଇଯାଇଛି କି ତାକୁ ବଦଳାଇ ଆଉ ଗୋଟିଏ ନୂଆ କଣ୍ଢେଇ ବ୍ୟବହାର କରୁନାହାନ୍ତି ?

ଭଦ୍ରଲୋକ କିଛିକ୍ଷଣ ନୀରବ ରହି ଟିକିଏ ହସିଲେ ଏବଂ କହିଲେ, ବୁଝିଲ, ମୋ' ଆଜିକି ପନ୍ଦର ବର୍ଷ ହେବ ଏଇ ଚଉକି ଉପରେ ନିଜର ଦେହଟା ଭରଣା କରି ଆସୁଛି । ଫେର ଗୋଟାଏ ଚଉକି ଉପରେ ନିଜର ଦେହଟା ଭରଣା କରିବାକୁ ପ୍ରୀତି ହେଉନାହିଁ ।

ଏଥର ଷୋଡ଼ଶ ଆତୁରୀ ସ୍ତ୍ରୀ ସ୍ୱାମୀଙ୍କ ନାଁ [illegible] ଦୃଷ୍ଟି [illegible] ଚଉକିକୁ ମୁହଁ ପୋତିଲେ ।

ପ୍ରେମମୟ ବନ୍ଧୁ ରମାରଞ୍ଜନଙ୍କ ମନ ଉପରେ ଅଧିକ [illegible] ପାଇଁ ଟିକିଏ ଭାବବିହ୍ୱଳ ହୋଇ କହିଲେ, ରମାରଞ୍ଜନ ଆଜିକି [illegible] ବର୍ଷ ହେବ ତୁ ଯାହା ସାମନାରେ ନିଜର ନଗ୍ନ ପରିଚୟ ଦେଇଆସିଛୁ, ଆଜି ତା' ଛଡ଼ା ଆଉ କଣ ନୂଆ ଲୋକ ତୋର ପ୍ରକୃତ ପରିଚୟ ପାଇ ପାରିବ କି ? ଆଜି କାହାର ସାମନାରେ ତୁ ତୋର ସ୍ୱରୂପକୁ ଆବୃତ କରି ରଖୁଛୁ······

ରମାରଞ୍ଜନ ଏଥର ତୀବ୍ର ପ୍ରତିବାଦ କରି କହିଲେ, ନା, ନା, ପ୍ରେମ ! ଏ ବନ୍ଧନ ଅସହ୍ୟ । ଯାହା ସହିତ ମନର ପ୍ରେମ ନାହିଁ, ତାହା ସହିତ ଚିରଜୀବନ ବନ୍ଧା ହୋଇ ରହିବା ଯେ କି ବିଡ଼ମ୍ବନା, କି ଦାରୁଣ ଯନ୍ତ୍ରଣା, ତୁ ବୁଝି ପାରିବୁନାହିଁ ।

ପ୍ରେମମୟ ହେଉଁପରି ହସି ହସି କହିଲେ, ମନ, ମନ, ମନ । ବୁଝିଲୁ ରମା ! ମନଭଳି ଏପରି ପିଚ୍ଛିଳ ଜିନିଷ ନାହିଁ । ସ୍ୱାମୀ ସ୍ତ୍ରୀର ବନ୍ଧନକୁ ମନ ଉପରେ ଛାଡ଼ିଦେବା ଆଦୌ ଉଚିତ ନୁହେଁ । ମନ ତ ଅନେକ କିଛି ଚାହେଁ । ମନ ଯେମିତି ଗୋଟିଏ ଜିନିଷକୁ ଆଗ୍ରହରେ ଚାହେଁ, ସେମିତି ପାଇବା ପରେ ଅନାଗ୍ରହରେ ତାକୁ ଫିଙ୍ଗିଦେଇପାରେ । ତୁ କଅଣ କହୁଚୁ, ସ୍ୱାମୀ ସ୍ତ୍ରୀର ଯେଉଁ ସମ୍ବନ୍ଧ ଉପରେ ସମସ୍ତ ସମାଜ, ସନ୍ତାନ ସନ୍ତତିର ଶିକ୍ଷା ସଂସ୍କୃତି ସବୁ ନିର୍ଭରକରେ ତାକୁ ମନର ଭଲପାଇବାପରି ପିଚ୍ଛିଳ କଥାଟା ଉପରେ ଛାଡ଼ିଦେବା ଉଚିତ ? ତୁ ମୋତେ ମରହଟ୍ଟୀ ବା ଅନ୍ୟ ଯାହାଙ୍କରୁ କହ, ମୁଣ୍ଡରେ ଟୋପି ପିନ୍ଧିବା ଓ ଦାଢ଼ିବା ଭଳି ବିବାହ ଗୁଡ଼ପନର ସୁଆଙ୍ଗକୁ ମୁଁ ଆଦୌ ପସନ୍ଦ କରେନାହିଁ । ଆରେ ଏ

ହେଉଛି ସ୍ୱାମୀ ସ୍ତ୍ରୀର ତିନିଗୋଡ଼ିଆ ଦୌଡ଼, ଥ୍ରି ଲେଗେଡ୍ ରେସ୍, ବୁଝିଲୁ ? ଗୋଟିଏ ଗୋଡ଼ ସ୍ୱାମୀର ଓ ଗୋଡ ସ୍ତ୍ରୀର ଅଲଗା ଅର୍ଥାତ ସ୍ୱାଧୀନ; କିନ୍ତୁ ଦୁଇ-ଜଣଙ୍କର ଆଉ ଦୁଇଟା ଗୋଡ଼ ଏକତ୍ର ଭାବରେ ଛନ୍ଦା ଯେ ଆଉ ଅଲଗା ହୋଇ ପାରିବେନାହିଁ । ଏହି ଛନ୍ଦା ଗୋଡ଼ ଦୁଇଟି ସମାଜ କୁହ, ଶିକ୍ଷା କୁହ, ଯାହା କୁହ, ଏହି ଛନ୍ଦା ଗୋଡ଼କୁ ଯିଏ ଯେତିକି ଭଲ ଭାବରେ ଚଳାଇ ପାରିବ, ତାର ସୁଖ ସେତିକି ।

ରମାରଞ୍ଜନ ତଥାପି ମୁଣ୍ଡ ହଲାଇ କହିଲେ, ନା, ନା, ପ୍ରେମ, ମୁଁ ତୋର ଯୁକ୍ତି ବୁଝିଛି । ତଥାପି ମନ ମାନୁନାହିଁ ।

ପ୍ରେମମୟ ଏଥର ଗମ୍ଭୀର ହୋଇଗଲେ ଏବଂ କିଛିକ୍ଷଣ ପରେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲେ, "ତେବେ ତୋତେ ଆଜି ଗୋଟିଏ କଥା କହୁଛି ଶୁଣ । ଏଟା ଆଗପରି ଗଳ୍ପ ନୁହେଁ । ଏକଦମ୍ ଏକ ଘଟଣା । ତୁ ଇସ୍ ବାବୁଙ୍କ ନା ଶୁଣିଚୁ ?"

ଆଶ୍ଚର୍ଯ୍ୟ ହୋଇ ରମାରଞ୍ଜନ କହିଲେ, "'ଇସ୍' କଅଣ ଜଣକ ନା ?"

—"ଓହୋ, ତୁ ତେବେ ଆମ ମିହିର କଥା ଶୁଣିନୁ । ଆରେ, ଆମ ମିହିର ମ । ଯିଏ ଇତିହାସରେ ଏମ. ଏ. ପାଶ କରିବାପରେ ସେକ୍ରେଟେରିଏଟରେ କିରାଣୀ କାମ କରୁଛି ।"

—ଆରେ ମିହିର ! ଆମ ସାଙ୍ଗରେ ଯିଏ ପଢୁଥିଲା ପାଠଶାଳେ ? ତାର ନା, ଇସ୍ କେବେଠୁଁ ହେଲା ? କାହିଁକି ହେଲା ?

—ସେ ଗୋଟାଏ ଇତିହାସ । ସେହି କଥା ତ କହିବାକୁ ଯାଉଛି । ତାକୁ ଆଜିକାଲି ସମସ୍ତେ ଇସ୍ ବାବୁ ବୋଲି ଡାକନ୍ତି; କାରଣ ଅଙ୍କ ଛ'ସାତ ବର୍ଷ ହେବ ତାର ଗୋଟିଏ ମୁଦ୍ରାଦୋଷ ହୋଇଛି କଥାରେ କଥାରେ ଇସ୍ କହିବା—ସେ ଫାଇଲଟା ତ ସାର୍ ଇସ୍ ମୁଁ ସ୍ୱଚ୍ଛନ୍ଦ ହେବ ହେଇ ସାରିଛି ଇସ୍ ?···ଏମିତି ।

ଆଶ୍ଚର୍ଯ୍ୟ ହୋଇ ରମାରଞ୍ଜନ ପଚାରିଲେ, "ପଢ଼ିଲାବେଳେ ତ ଏ ମୁଦ୍ରାଦୋଷ ତାର ନ ଥିଲା ? ହଠାତ୍··· ଏମିତି ହୁଏନା କଅଣ ? ତୋର ମନସ୍ତତ୍ତ୍ୱ ଏ ସମ୍ପର୍କରେ କଅଣ କହେ ?"

—ବହୁ ବର୍ଷପରେ ଆଜ ସନ୍ଧ୍ୟାରେ ହଠାତ୍ ତା ସହିତ ମୋର ଦେଖା । ମୁଁ କଲେଜରୁ ଫେରୁଥିଲି ସେତେବେଳେ । ତୁ ଆଶ୍ଚର୍ଯ୍ୟ ହେବୁ ଶୁଣି, ଯେଉଁ ମିହିର ଟ୍ରେନ୍‌ରେ ବେଳେ ହଟ୍ଟକେଲେ ହସ ହସ, ଫୁର୍ତ୍ତି, ଫାଜିଲ୍, ବେପରୁଆ, ସେ ଆଜି ହଠାତ୍‌ବେଳେ ଗମ୍ଭୀର, ଚିନ୍ତିତ । ମୋତେ ଦେଖି ଟିକିଏ ହସି ସେ କହିଲା, କେମିତି କରୁଛ ? ଇସ୍ । ତା ର କଥା ଶୁଣି ମୁଁ ସ୍ତମ୍ଭିତ ହୋଇଯାଇ କହିଲି, କାରେ ମୋତେ ଦେଖି ଏତେ ବିରକ୍ତ କାହିଁକି ? ତାର ମୁହଁରେ ବ୍ୟଥା ଫୁଟିଉଠିଲା । ସେ ବ୍ୟଥିତ ସ୍ୱରରେ କହିଲା, ନା ଭାଇ ଅନେକ ଦିନ ପରେ ତୋତେ ଦେଖି କେତେ ଆନନ୍ଦ, ମୁଁ କହିଣ କହିବି । ବୁଝିଲି ତେବେ 'ଇସ୍' କାହିଁକି କହିଲୁ ? ସେ କଥାକୁ ଟାଳି ମାରି କହିଲା, 'ଇସ୍' କହିଲି ନା କହିଲି ? ଭାଇ ଛ' ସାତ ବର୍ଷ ହେବ ଏ କେତେଟି ମୁଦ୍ରାଦୋଷ ହୋଇଛି । ଟିକିଏ ବ୍ୟଥିତ ସ୍ୱରରେ ହସି ସେ ପୁଣି କହିଲା, "ତୁ ଜାଣୁନା ବୋଧେ ମୋର ନା ଆଜିକାଲି 'ଇସ୍ ବାବୁ' । ମୋର ମନସ୍ତାତ୍ତ୍ୱିକ କୌତୂହଳ ଜାଗିଲା ; ସବୁକୁ ଡାକି ନେଇ ମିହିରକୁ ନାନା ପ୍ରଶ୍ନ ପଚାରି ଯେଉଁ ଉତ୍ତରଗୁଡ଼ାକ ପାଇଲି, ତାହାହିଁ କହୁଛି । ନଦୀ ଯେତେବେଳେ ପାର୍ବତ୍ୟ ଦେଶରେ ବହୁଥାଏ, ସେତେବେଳେ ସେ ଥାଏ ଚଞ୍ଚଳ, ଆବେଗମୟ । ପାହାଡ଼ ପର୍ବତ ଡେଇଁ ସେ ବହି ଚାଲେ ସମତଳଭୂମି ପାଇଁ । ନଦୀ ଯେତେବେଳେ ସମତଳଭୂମିରେ କେବଳ ତାକୁ ଉର୍ବର କରେ, ଆମେ ନଦୀର ସେହି ଅବସ୍ଥାକୁ ପ୍ରାଧାନ୍ୟ ଦେଉ, କିନ୍ତୁ ଭାବି ଦେଖିଲେ, ନଦୀର ଆବେଗମୟ ପ୍ରଥମ ଜୀବନ ଉପରେ ସବୁ ନିର୍ଭର କରେନାହିଁକି ? ସବୁ ନିର୍ଭର କରେ ନଦୀ ପାର୍ବତ୍ୟ ଦେଶରୁ କେତେ ପାଣି ଓ ଉର୍ବର ମାଟି ତା ସହିତ ସମତଳ ଭୂମିକୁ ଆଣୁଛି । ମିହିରର ଯୌବନର ତା ଆବେଗମୟ ଜୀବନ କେବଳ କଠିନ ପଥର ଉପରେ ବହିଛି । ସମତଳ ଭୂମିକୁ ଓହ୍ଲାଇବା ପରେ, ଅର୍ଥାତ ଦାମ୍ପତ୍ୟ ଜୀବନ ତାଙ୍କ ନିଷ୍ଫଳ ହୋଇଛି ।

—ମିହିରର ସ୍ତ୍ରୀ ଲବଙ୍ଗ ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ ହେଲେ କଣ ହେବ ମିହିର ତାକୁ ଭଲ ପାଇପାରିଲା ନାହିଁ; କିନ୍ତୁ ବୁଝନା ଯେ ମିହିର ଆଉ କାହାକୁ ଭଲପାଏ; କିନ୍ତୁ ଭଲ ପାଇବାପାଇଁ ଯେଉଁ ଆବେଗ, ସେ ଆବେଗ ହିଁ ତାର ମରି ଯାଇଛି । ଇସ୍ । ବୋଲି ମିହିର ତାର ସ୍ତ୍ରୀ ପ୍ରତି କୌଣସି ତ୍ରୁଟି କରନାହିଁ । ସେ ପଛା ହେଉ ଏ ମୁଦ୍ରାଦୋଷଟି ତାର କିପରି ହେଲା ସେଇ କଥା ହିଁ କହୁଛି—

"ଛ’ ସାତ ବର୍ଷ ତଳେ ମିହିର ତାର ଝିଅକୁ ବାହା ଦେଇ ବିଦାୟ ଦେଲା-ବେଳେ ଭାବନା ଛୁଟିଲା ଅନ୍ତର ମାଝେ ଅଛି, ଟିକିଏ ଭୁଲି ଆସିଲେ ହୁଅନ୍ତା । ଲବଙ୍ଗ

ମିଶ୍ରର ପାଖରେ ଛିଡ଼ାହୋଇ କହିଲା, ଶୁଣୁଚ, ତୁମି ତ ଆଜ ମାସେ ଅଛ । ତୁମେ ଟାଣ୍ଡି ଟିକିଏ ବାହାରେ ବୁଲିଆସ । ଶଶୁରଙ୍କ ଅସ୍ଥି ଅନେକ ଦିନରୁ ତ ରହିଛି, ଗୟାରେ ଦେଇଆସିବ । ଆଉ କଲିକତା ପାଟନା ଆଦି ଟିକିଏ ବୁଲି ଆସିବ । ତୁମ ଦେହ ବି ଭଲ ରହୁନାହିଁ ।

ମିଶ୍ରର ଦୀର୍ଘନିଃଶ୍ୱାସ ପକାଇ କହିଲା, 'ମନ ଲାଗୁନାହିଁ ଲବଙ୍ଗ; କିନ୍ତୁ ମୁଁ ଏକା ଯିବି ବା କିପରି, ଆଉ ଗଲେ ବା ଟଙ୍କା କାହିଁ ?'

ଲବଙ୍ଗ ଟିକିଏ ହସି କହିଲା, ମୋ କଥା ଶୁଣନା । ମୁଁ ଯିବି ବା କେଉଁଠି ? ଝୁଅ ଶ୍ୱଶୁରଘରୁ ଫେରିବ । କେତେ କାମ ଅଛି । ମୋ ଯିବା କଥା ଛାଡ଼ । ଟଙ୍କା କଥା ଶୁଣନାହିଁ । ବାହାଘର ଖର୍ଚ୍ଚରୁ କିଛି ଟଙ୍କା ବଳିଛି, ତାକୁ ନେଇ ଯାଅ' ମୋ ରାଣ ।

ମିଶ୍ରର ଲବଙ୍ଗର ଏ ପ୍ରସ୍ତାବରେ ଆଉ ଆପତ୍ତି କଲାନାହିଁ । ତିନି ଚାରି ବର୍ଷ ହେବ ତାର ମନ ଓ ଶରୀର ବିଶେଷ ଭାବରେ ଭାଙ୍ଗି ପଡ଼ିଥିଲା । କିଛି ଦିନ ପାଇଁ ସ୍ଥାନ ପରିବର୍ତ୍ତନ ତାର ବିଶେଷ ଦରକାର ହୋଇପଡ଼ିଥିଲା; କିନ୍ତୁ ସେଥିପାଇଁ ସାମର୍ଥ୍ୟ ତ ଦରକାର, ଦୁଇଟାର ମିଳନ ଘଟାଇବା ଅସମ୍ଭବ ।

ମିଶ୍ରର ନିଜର କପାଳକୁ ନିନ୍ଦା ମାରିବ ଥିଲା । ଲବଙ୍ଗର ଏ ପ୍ରସ୍ତାବରେ ଆପତ୍ତି ନ କରି ସେ ଯିବା ପାଇଁ ପ୍ରସ୍ତୁତ ହୋଇଗଲା ।

ମିଶ୍ରର ସିଧା ଟିକଟ କାଟିଲା ପାଟନା । ତାର ନୀରସ ଜୀବନରେ ଯେତେ ଟିକିଏ ସୁଖ ସେ ପାଇଛି, ତାହା ଏଇ ପାଟନାରେ କି ନା, ତେଣୁ ପ୍ରଥମେ ପାଟନା ଯିବାକୁ ତାର ଭାରି ଇଚ୍ଛାହେଲା ।

ପାଟନାରେ ପହଞ୍ଚି ଦିନେ ଗଙ୍ଗାକୂଳରେ ବୁଲି ବୁଲି ସେ ଭାବୁଥିଲା, ଏଇ ସେ ଗଙ୍ଗା ନଦୀ ! ଆର୍ଯ୍ୟ ସଭ୍ୟତା ଦିନରୁ କେତେ ସ୍ମୃତି ଏହା ସହିତ ଜଡ଼ିତ । ଆର୍ଯ୍ୟ ସଭ୍ୟତାର, ଭାରତ ଇତିହାସର ନଦୀ କହିଲେ ଚଳେ । ଭାରତ ଇତିହାସରେ ଏହାର ସ୍ଥାନ କେତେ ଉଚ୍ଚରେ, କେତେ ପବିତ୍ର ଏଇ ନଦୀ ତେଣୁ । ସାମାନ୍ୟ ହେଲେହେଁ ମୋ ଜୀବନର ସୁଖ ସ୍ମୃତି ସହିତ ଏ ନଦୀ ମଧ୍ୟ ଜଡ଼ିତ । ଏଇ ସେ ରାଣୀଘାଟ । ଯେଉଁଠି···

ମିହିରର ବୁଲ୍‌ବୁଲ୍ ଘଣ୍ଟିଘାଟ ପାଖରେ ପହଞ୍ଚି ଚମକ ଛୁଡ଼ାଇଦେଲା । କିଛିକ୍ଷଣ ଗଙ୍ଗା ବକ୍ଷକୁ ଅନାଇ ସେ ଟିକିଏ ହସିଲା । ଫେରିବା ଉତ୍ତାରେ ସେ ଘଣ୍ଟା ଟାଣି ଭିତରକୁ ଯାଇ ବସିଗଲା ।

—ସନ୍ଧ୍ୟାବେଳେ ! ଏ ତଟେ ନା କଟକ ! ହିମାନ୍ଦ୍ରି ପଚାରିଲେ ।

—ନା, ନାରେ । ତୋର ଅଞ୍ଜୁ ବର୍ମା କଥା ମନେ ନାହିଁ ?

—ହଁ, ଇତିହାସ ଛାତ୍ରୀ । ମିଷ୍ଟର୍ ବର୍ମାଙ୍କ ଝିଅ । ସେ ତ ଅପୂର୍ବ ସୁନ୍ଦରୀ ହୋଇଥିଲା । ବର୍ତ୍ତମାନ କୁଆଡ଼େ ସେ ପାଟନା କଲେଜରେ ଇତିହାସ ଅଧ୍ୟାପିକା ହୋଇଛି ?

—ହଁ । ପଢ଼ିବାବେଳେ ସେ ଥରେ ଗଙ୍ଗାରେ ବୁଡ଼ୁ ବୁଡ଼ୁ ଏଇ ବଣୀଘାଟ ପାଖରେ ବୁଡ଼ି ଯାଉଥିଲା । ମିହିର ତାକୁ ରକ୍ଷା କରିଥିଲା, ମନେ ନାହିଁ ତୋର ?

—ଆରେ, ହଁ, ହଁ ।

—ସେଇ କଥା ତାର ମନେ ପଡ଼ିଗଲା । ତାର ଖିଆଲ ରହିଲାନାହିଁ ସେ କଣ କରୁଛି ।

—ଆମେ ସମସ୍ତେ ଭାବୁଥିଲୁ ଏ ସୌଭାଗ୍ୟ ଖୁବ କମ୍ ଯୁବକଙ୍କ ଭାଗ୍ୟରେ ଘଟେ । ଏହାପରେ ନିଶ୍ଚୟ ଦୁହେଁ ପ୍ରେମରେ ପଡ଼ିବେ; କିନ୍ତୁ ସେ ବଡ଼ଲୋକ ଝିଅ, ସେ କାହିଁକି ମିହିରକୁ ଚାହିଁବ ।

— ତାପରେ କଣ ହେଲା ଶୁଣ । ତା ପରଦିନ ମିହିର ଯାଇଥିଲା କଲେଜ ଆଡ଼େ ବୁଲି ଦେଖିବାକୁ ଓ ନିଜର ଅଧ୍ୟାପକମାନଙ୍କ ସହିତ ଦେଖା କରିବାକୁ । ଅନେକ ସମୟର ସମସ୍ତେ ପ୍ରାପ୍ତ ଅବସର ଗ୍ରହଣ କଲେଣି । ତାହାଙ୍କୁ ଦେଖା ନ ପାଇ ମିହିର ଫେରୁଥିଲା । ଏହି ସମୟରେ ଅଧ୍ୟାପକଙ୍କ କମନରୁମରୁ ଜଣେ ଅଧ୍ୟାପିକା ମିହିରକୁ ଡାକିଲେ । ମିହିର ଆଦୌ ତାକୁ ଚିହ୍ନି ପାରିଲା ନାହିଁ । ମିହିର ଆଶ୍ଚର୍ଯ୍ୟ ହୋଇ ଚାହିଁ ରହି ପଚାରିଲା, ମୋତେ ଡାକୁଛନ୍ତି ?

ଭଦ୍ର ମହିଳା ହସି କହିଲେ, ହିଁ, ଆଶ୍ଚର୍ଯ୍ୟ ହେଉଛନ୍ତି ?

ମିହିର ଅଧିକ ଆଶ୍ଚର୍ଯ୍ୟ ଓ ଅପ୍ରସ୍ତୁତ ହୋଇ କହିଲା, "ନା, ମୁଁ··· ଆପଣଙ୍କୁ···"

ଭଦ୍ର ମହିଳା କେବଳ କହିଲେ, 'ଆସନ୍ତୁ ମୋ ସହିତ ।'

ଯନ୍ତ୍ରଚାଳିତ ପରି ମିହିର ଭଦ୍ର ମହିଳାଙ୍କ ଅନୁଗମନ କଲା । ଭଦ୍ର ମହିଳା ନିଜ ମଟର ପାଖରେ ଛିଡ଼ାହୋଇ ଦୁଆର ଖୋଲି ଦେଇ ଅନୁରୋଧ କଲେ, ବସନ୍ତୁ । ମିହିର ସେଇପରି ଆଶ୍ଚର୍ଯ୍ୟ ଭାବରେ ବସି ବାହାରକୁ ଅନାଇ ରହିଲା ।

ମଟର ବାଣୀଘାଟ ପାଖରେ ପହଞ୍ଚିଲା । ମଟରରୁ ଓହ୍ଲାଇ ଭଦ୍ର ମହିଳା ପଚାରିଲେ, ଏ ସ୍ଥାନ ମନେପଡ଼ୁଛି ଆପଣଙ୍କର ?

ମିହିର ଏଥର ଚିହ୍ନି ପାରିଲା ଭଦ୍ରମହିଳା କିଏ । ସେ କଥାର କୌଣସି ଉତ୍ତର ଦେଇପାରିଲା ନାହିଁ । ଗୋଟିଏ ଅପୂର୍ବ ଆନନ୍ଦ ତାର ମନରେ ଖେଳି-ଗଲା । ତାର ଓଠ ଟିକିଏ ଥରିଉଠିଲା । ମୁହଁକୁ ତଳକୁ ପୋତି ସେ ଛିଡ଼ା ହେଲା । ପଦ୍ମା ଦେଖିଲା, ଦୁଇ ବୁନ୍ଦା ପାଣି କେବଳ ଝରିପଡ଼ିଲା । ଆଉ କିଛି ନ କହି ପଦ୍ମା କହିଲା, ମୋ ଘରକୁ ଚାଲ ।

ମିହିର ବ୍ୟଥିତ ସ୍ୱରରେ କହିଲା, ନା; ନା, ମି···ମି···

ପଦ୍ମା ହସି କହିଲା, ନା, ମିସେସ୍ ଏ ପର୍ଯ୍ୟନ୍ତ ହୋଇନାହିଁ । ମିସ୍ ପଦ୍ମା ଅଛି । ତେବେ ତୁମକୁ ମିସ୍ ପଦ୍ମା କହିବାକୁ ଦେଉନାହିଁ । ପଦ୍ମା ବୋଲି ଡାକ ।

— ଆପଣ···

— ଆପଣ ନୁହେଁ, 'ତୁମେ' ପଦ୍ମା କହିଲା ।

ମିହିର ଛିଡ଼ା ହୋଇ ରହିଲା ସେମିତି । ପଦ୍ମା ମିହିରର ହାତ ଧରି ଉଠାଇ ତାକୁ ମଟରରେ ବସାଇ ନିଜ ଘରକୁ ଗଲା । ମଟରରେ ଅତୀତ ଜୀବନର ନାନା କଥା, ନାନା ଘଟଣା ବିଷୟ ଦୁହେଁ କହିଲେ । ପଦ୍ମା ପଚାରିଲା, ବିବାହ କଲେଣି ?

— ହଁ, ମୁଁ ବର୍ତ୍ତମାନ ଦୁଇଟି ସନ୍ତାନର ପିତା । ବଡ଼ ଝିଅକୁ ବାହା ଦେଇ ଖର୍ଚ୍ଚ କରି ବାହାରିଛି । ତୁମେ କାହିଁକି ବାହା ହୋଇ ନା ?

ଏ ପ୍ରଶ୍ନରେ ପଦ୍ମା ଗୋଟିଏ ଦୀର୍ଘ ନିଃଶ୍ୱାସ କେବଳ ପକାଇଲା ।

ମିହିର ବିସ୍ମିତ ଭାବରେ କହିଲା, କ୍ଷମା କରିବ, ମୁଁ ଅଜାଣତରେ ଆପଣଙ୍କୁ···ତୁମକୁ ବ୍ୟଥା ଦେଇଛି।

ପଦ୍ମା କରୁଣ ସ୍ୱରରେ କହିଲେ, "ତୁମର କିଛି ଦୋଷ ନାହିଁ, ସବୁ ଦୋଷ ମୋର। ମୋର ଜୀବନଟା ହିଁ ବୃଥା। ବୃଥା ଏ ଜ୍ଞାନ, ବୃଥା ମୋର ଧନ, ବୃଥା ଏ ମାନ ସମ୍ଭ୍ରମ···ଛିଃ···

ଘର ଛାଡ଼ିବାକୁ ଯାଇଁ ଯାଇଁ····· ମିହିର ପଚାରିଲା, କିନ୍ତୁ ବିବାହ କରିବାରେ ବାଧା କ'ଣ ଥିଲା ତୁମର ?

ପଦ୍ମା ମିହିରର ହାତ ଧରି କହିଲେ, "ମୋର ଅଭିଜାତ୍ୟର ଅଭିମାନ, ମୋର ଧନ। ସେଇ [illegible], ମୋର ସର୍ବଘାତୀ। ସେ କିଏ ଜାଣ ?

—ନା, ନୀଳାଦ୍ରିପ୍ରସାଦ ପଣ୍ଡିତ ସେତେବେଳେ···

—ତୁମେ ଆଦୌ ଅନୁମାନ କରିପାରିବ ନାହିଁ ସେ କିଏ ସେ। ସେ ତୁମେ···

ମିହିରର ଦେହ ଥରିଉଠିଲା।

ପଦ୍ମା କହିଲା, ଖାଲି ସେତେବେଳେ ତୁମେ ଯଦି ଅଧିକ ସାହସ କରି କହିଥାଆନ୍ତ, ତା'ହେଲେ ବୋଧହୁଏ ମୋର ଅଭି···। ପଦ୍ମା ଆଉ କହିପାରିଲା ନାହିଁ।

ମିହିର ନିଶ୍ୱାସ ଛାଡ଼ି ପକାଇଲା। ତାର ମନେ ହେଲା 'ଇସ୍' ଟିକକ ପାଇଁ ସେ କି ସୁଖରୁ ବଞ୍ଚିତ ହୋଇଛି।' ତା' ମୁହଁରୁ କେବଳ ପଦେ କଥାରେ ଫୁଟିଉଠିଲା ସମସ୍ତ ଅନୁତାପ 'ଇସ !'

ଦୁହେଁ ଅନେକ କ୍ଷଣ ତଳକୁ ମୁହଁ ପୋତି କାଟିଲେ। ପଦ୍ମା ଅନେକ କ୍ଷଣ ପରେ ମୁହଁ ଟେକି କରୁଣ ସ୍ୱରରେ ହସି କହିଲା, 'ପୁଣି ନୂତନ ଭାବରେ ଜୀବନ ଯାତ୍ରା ଆରମ୍ଭ କଲେ ହୁଅନ୍ତା ନି ? ତୁମେ ଭାବିବ ଯେ ମୁଁ କେଉଁ ନିଷ୍ଠୁର, ତୁମର ଏତେ ଦିନର ସଂସାର ଭାଙ୍ଗିଦେବାକୁ ବସିଛି; କିନ୍ତୁ ସେ ଅର୍ଥରେ ତୁମେ ଭାବନାହିଁ। ମୋର ସମସ୍ତ ଧନ ମୁଁ ତୁମର ସ୍ତ୍ରୀ ପରିବାର ପାଇଁ ଦେବି···ବିବାହ କରିବାକୁ ମଧ୍ୟ କହୁନାହିଁ ତୁମକୁ···କେବଳ···କେବଳ···'

ମିହିର ହଁ କରିବାକୁ ଯାଉଥିଲା; କିନ୍ତୁ ତାର ମନେ ପଡ଼ିଗଲା ଲବଙ୍ଗର ସେହି କରୁଣ ମୁହଁ । ସେ ତାକୁ ଭଲ ପାଇପାରିନି ବୋଲି ଲବଙ୍ଗ କେବେହେଁ ଆକ୍ଷେପ କରିନାହିଁ । ଉପରନ୍ତୁ ସେ ନିଜର ସମସ୍ତ ସୁଖ ତ୍ୟାଗ କରି ଲାଗିପଡ଼ିଛି ମିହିରର ସୁଖଶାନ୍ତି ପାଇଁ ।

ମିହିରର ଲବଙ୍ଗ ପ୍ରତି ହଠାତ୍ ଅପୂର୍ବ ଆବେଗ ଜାତହେଲା । ତାର ମନେହେଲା ସେ ଯଦି ଚଢ଼େଇଟିଏ ଉଡ଼ି ଲବଙ୍ଗ ପାଖରେ ପହଞ୍ଚିଯାଇ ପାରନ୍ତା, ନିଜେ ତ ଅଶ୍ରୁସ୍ନାତ ହୁଅନ୍ତା ସେ··· ମୋତେ ଦେଖି ନିଶ୍ଚୟ ହସି ପକାନ୍ତା ।

ମିହିର କହିଲା, 'ନା, ତା ଅସମ୍ଭବ ମିସ୍ ପଦ୍ମା । ଯା ଯାଇଛି, ତା ଯାଉ । ଜୀବନର ପ୍ରବାହରେ ତା ଗୋଟିଏ କୁଟା ସଙ୍ଗେ ସମାନ । ନିଜର ସୁଖପାଇଁ ମୁଁ ସବୁ ତ୍ୟାଗ କରିପାରିବି ନାହିଁ । ଯାହା ଯାଇଛି ତାହା ଖୁବ୍ କାମ୍ୟ, ମାନୁଛି; କିନ୍ତୁ ଯାହା ପାଇଛି ସେ ମଧ୍ୟ କମ୍ ନୁହେଁ ।'

ମିହିର ଏତିକି କହି ଘରୁ ବାହାରିଆସିଲା । ସେଇଦିନ ସେ ଫେରିଲା ଘରକୁ । କଲିକତାରୁ ଲବଙ୍ଗ ପାଇଁ ଭଲ ଶାଢ଼ୀ, ସୁନ୍ଦର ଗହଣା କିଣି ଘରକୁ ଫେରିଲା । ଘରେ ପହଞ୍ଚି ଲବଙ୍ଗକୁ ଦୃଢ଼ ଆଲିଙ୍ଗନ କରି କାନ୍ଦି ପକାଇଲା ସେ ।

କିନ୍ତୁ ସେଇ ଦିନରୁ ତାର ଗୋଟାଏ ମୁଦ୍ରାଦୋଷ ରହିଗଲା, କଥାରେ କହେ 'ଇସ୍' ।

ଘଡ଼ିକୁ ଅନାଇ ରମାରଞ୍ଜନ କହିଲେ, 'ଇସ୍ ଅନେକବେଳ ହୋଇଗଲାଣି, ମନବୋଉ ନିଶ୍ଚୟ ଚିନ୍ତାରେ ପଡ଼ିଥିବ । ଯାଏଁ ଭାଇ !'



# ଇଚ୍ଛା ପୂରଣ

ଭଗବାନଙ୍କ ଦପ୍ତରରେ "ଇଚ୍ଛାପୂରଣ" ବିଭାଗ ପ୍ରଥମେ ଅଛି ଗ୍ରହ ଉପଗ୍ରହ ସୃଷ୍ଟି ବିଭାଗ।

ତା'ପରେ ଜୀବସୃଷ୍ଟି ବିଭାଗ। ହଜାର ହଜାର ଚିତ୍ରକର ବସି ନାନା ପ୍ରକାରର ଜୀବମାନଙ୍କର ଚିତ୍ର ଅଙ୍କନ କରୁଛନ୍ତି। ସେଗୁଡ଼ିକ ସେ ବିଭାଗର କର୍ତ୍ତା ଅନୁମୋଦନ କରିବା ପରେ ଭଗବାନଙ୍କ ପାଖରେ ପେଶ୍ କରାଯାଉଛି ତାଙ୍କର ଶେଷ ଅନୁମୋଦନ ପାଇଁ।

ଜୀବସୃଷ୍ଟି ବିଭାଗ ପରେ ଜୀବ ଲୋପ ବୃଦ୍ଧି-ସ୍ଥିତି-ବିଭାଗ। ଏଠି ମଧ୍ୟ ହଜାର ହଜାର ଦେବତାମାନେ ବସି କେଉଁ କେଉଁ ଶ୍ରେଣୀର ଜୀବ କିପରି ଭାବରେ ଲୋପ କରାଯିବ ବା ବୃଦ୍ଧି କରାଯିବ ତାହା ସ୍ଥିର କରି ଭଗବାନଙ୍କୁ ଜଣାଉଛନ୍ତି।

ଶେଷୋକ୍ତ ବିଭାଗ ପରେ ପଡ଼ିବ ଇଚ୍ଛାପୂରଣ ବିଭାଗ। ଏମାନଙ୍କ ଛଡ଼ା ଆହୁରି ହଜାର ହଜାର ବିଭାଗର ଉପବିଭାଗ ଅଛି।

ଦପ୍ତରର ଅନ୍ୟାନ୍ୟ ବିଭାଗଗୁଡ଼ିକ ତୁଳନାରେ ଇଚ୍ଛାପୂରଣ ବିଭାଗଟିର ପ୍ରାଧାନ୍ୟ କମ୍। ହେଲେ ଏ ବିଭାଗର କର୍ମଚାରୀମାନେ ସର୍ବଦା କାର୍ଯ୍ୟବ୍ୟସ୍ତ ଏବଂ ବିଭାଗଟି ମଧ୍ୟ ଜନସଙ୍କୁଳ ଦେଖାଯାଏ। ଏ ବିଭାଗର ଗୋଟିଏ ଉପବିଭାଗରେ କେବଳ ମନୁଷ୍ୟମାନଙ୍କର ଇଚ୍ଛାପୂରଣ ବିଷୟ ବିଚାର କରାଯାଏ। ଏ ଉପବିଭାଗର କାର୍ଯ୍ୟବିଧି ନିୟମ ଅନୁସାରେ ପ୍ରତ୍ୟେକ ମନୁଷ୍ୟ ପ୍ରତ୍ୟେକ ଦିନର ଇଚ୍ଛାଗୁଡ଼ିକ ଉକ୍ତ ଉପବିଭାଗର କର୍ମକର୍ତ୍ତା ନିଜର ମତାନୁଯାୟୀ ଆବଶ୍ୟକତାନୁସାରେ ସଜାଇ ଭଗବାନଙ୍କଠାରେ ପ୍ରତ୍ୟେକ ମୁହୂର୍ତ୍ତରେ ପେଶ୍ କରନ୍ତି। ଭଗବାନ୍ ଉକ୍ତ ପର୍ଯ୍ୟାୟକୁ ଅନୁମୋଦନ କଲେ କେଉଁ ଇଚ୍ଛା କେବେ ଏବଂ କିପରି ଭାବରେ ପୂରଣ କରିବାକୁ ହେବ ଆଦେଶ ଦିଅନ୍ତି। ଉପବିଭାଗୀୟ କର୍ମକର୍ତ୍ତାଙ୍କ ଇଚ୍ଛାଗୁଡ଼ିକର

ଅନ୍ତର୍ଜଗତାନୁସାରେ ପର୍ଯ୍ୟାପ୍ତ କରିବାକୁ ଭଗବାନ୍ ଯେ ଇଚ୍ଛାକଲେ ଅନୁମୋଦନ କରନ୍ତି ବା ନାହିଁ । ସେତେବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶି ଆନ୍ତରିକ ହୋଇ ମୁଖ୍ୟକର୍ତ୍ତା ମତ ନେଲେହେଁ ଭଗବାନ୍ ତାହା ଅନୁମୋଦନ ନ କରି ଅନ୍ୟ ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶି ଆନ୍ତରିକ ହୋଇ କହୁ ତାହା ପ୍ରଥମେ ପୂରଣ କରାଯିବାର ଆଦେଶ ଦିଅନ୍ତି । ପୁଣି ସେତେବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଭଗବାନ ଆଦେଶ ଦିଅନ୍ତି ଯେ ତାହାର ପୂରଣ ମନୁଷ୍ୟର ସ୍ୱତନ୍ତ୍ର ଇଚ୍ଛାଶକ୍ତି ଦ୍ୱାରା ହିଁ ହେବ ନିଜେ ତାହାର ପୂରଣ ପାଇଁ ଚେଷ୍ଟାକରିବା ଉଚିତ । ଏପରିକି ଭଗବାନଙ୍କ ଅନ୍ତରରୁ ତାହା ପାଇଁ କୌଣସି ସାହାଯ୍ୟ ମିଳିବା ଉଚିତ ନୁହେଁ । ଭଗବାନଙ୍କ ଏହିପରି ମନୋନୀତ ବୃତ୍ତି ଇଚ୍ଛା ଗୁଡ଼ିକୁ ଧ୍ୟାନପୂର୍ବକ ସଜାଇବାରେ ଦକ୍ଷତା ଆଣିବାକୁ ବହିର୍ଗାମୀ କର୍ମକର୍ତ୍ତାଙ୍କୁ ଅନେକ କାଳ ଲାଗେ । ତେଣୁ କୌଣସି କର୍ମକର୍ତ୍ତା ନୂତନ ନିଯୁକ୍ତ ହେଲେ ସେ କାର୍ଯ୍ୟରେ ବିଭ୍ରାଟ ଘଟିବା ସ୍ୱାଭାବିକ ।

ମନୁଷ୍ୟର ଇଚ୍ଛାପୂରଣ ଜଗତଯନ୍ତ୍ରଗଠିତ ପୁରାତନ ମୁଖ୍ୟକର୍ତ୍ତା ଅବସର ନେବାପରେ ବର୍ତ୍ତମାନ ଶ୍ରୀକୃଷ୍ଣ ସେ ପଦରେ ନୂତନ ନିଯୁକ୍ତ ହୋଇଛନ୍ତି । ଅନ୍ତର୍ଯ୍ୟାମୀ କ୍ଷମତା ମଧ୍ୟ ତାଙ୍କୁ ଦିଆହୋଇଯାଇଛି ।

ଭଗବାନ୍ ତାଙ୍କ ବର୍ଣ୍ଣ ଅଫିସ ଘରେ ଅନନ୍ତ-ଚୌକିରେ ବସି ଜୀବ ସୃଷ୍ଟି-ଯନ୍ତ୍ରର ଡିଜାଇନଗୁଡ଼ିକୁ ତନଖି ଦେଖୁଛନ୍ତି । ମନୁଷ୍ୟମାନେ ମେଲେରିଆ ମଶା ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବାପରେ ଉକ୍ତ ମଶାମାନଙ୍କର ଡିଜାଇନ ସାମାନ୍ୟ ବଦଳାଇ ଯେଉଁ ନୂଆ ଡିଜାଇନ ତିଆରି ହୋଇଛି, ତାହା ବର୍ତ୍ତମାନ କାର୍ଯ୍ୟକାରୀ କରାଯିବ କି ନା ସେ ବିଷୟରେ ଭଗବାନ୍ ଚିନ୍ତା କରୁଛନ୍ତି । ଜୀବ ଲୋପ ଓ ବୃଦ୍ଧି-ଯନ୍ତ୍ରର ଜୀବ ସ୍ଥିତି ବହିର୍ଗାମୀ କର୍ତ୍ତାଙ୍କ ମତ ଯେ ମଶାର ବିଲୋପ ସାଧନ କରିବା ମାନେ ମନୁଷ୍ୟଦ୍ୱାରା ଭଗବାନଙ୍କ ପରାଜୟ । ତେଣୁ ମଶାର ବିଲୋପ ସାଧନ କଦାପି ଉଚିତ ନୁହେଁ । ଭଗବାନ୍ ଉକ୍ତ ମତ ପଢ଼ି ସ୍ମିତହାସ୍ୟ କଲେ । ସେ ହାସ୍ୟଦ୍ୱାରା କହିଦେଲେ, ପରାଜୟ ହିଁ ମୋର ଜୟ । ମୁଖ୍ୟକର୍ତ୍ତା ମତ ଦେଇଛନ୍ତି ଯେ, ଉକ୍ତ ଶ୍ରେଣୀର ମଶାର କେବଳ ମନୁଷ୍ୟର ରକ୍ତଶୋଷଣକାରୀ ଅନ୍ୟାନ୍ୟ ଜୀବର ନୂତନ ସୃଷ୍ଟି ହେଉ ଅଥବା ସେପରି

ହେଉଛି ଜୀବ ଯନ୍ତ୍ର ସେଗୁଡ଼ିକର ବୃଦ୍ଧି କରାଯାଉ ଏବଂ ସେମାନଙ୍କୁ ସଙ୍ଗେ ସଙ୍ଗେ ଯଥେଷ୍ଟ ମାତ୍ରାରେ ଦିଆଯାଉ ।

ଏହି ସମ୍ପର୍କରେ ଦିଲ୍ଲୀ ପାର୍ଲାମେଣ୍ଟର ଡି. ଡି. ଟି. ଓ ପ୍ରଚାରଯୋଗ ବିଷୟରେ ହୋଇଥିବା ବାଦାନୁବାଦ ଭଗବାନଙ୍କ କର୍ଣ୍ଣଗୋଚର ହେଲା । ଭଗବାନ ନିଜଦାସ୍ୟ କରି ଫାଇଲ୍‌ଗୁଡ଼ିକ ରଖିଦେଇ ଆଦେଶଦେଲେ ଯେ ମନୁଷ୍ୟ-ମାନଙ୍କର ଏହି ବିଷୟରେ ଶେଷ ନିଷ୍ପତ୍ତି ପର୍ଯ୍ୟନ୍ତ ଅପେକ୍ଷା କରାଯାଉ ଏବଂ ସମୟ ସୃଷ୍ଟିରୁ ଜାତିକରେ ମନୁଷ୍ୟର ବୃଦ୍ଧି ଆଜି ପର୍ଯ୍ୟନ୍ତ କେତେ ଅଗ୍ରଗତି ହୋଇଛି ସେ ବିଷୟରେ ଗୋଟିଏ ସବିଶେଷ ବିବରଣୀ ଦିଆଯାଉ ।

ଜୀବ ସୃଷ୍ଟି ଓ ଜୀବ ଲୋପ ଏବଂ ବୃଦ୍ଧି ବିଭାଗର କର୍ତ୍ତାମାନେ ସେମାନଙ୍କ ଫାଇଲ୍ ଅଧ ନେଇ ଖୋଲିପିବା ପରେ ଝିଣ୍ଟିକ ତାଙ୍କର ଫାଇଲ୍ ଅଧ ଦାଖଲ କଲେ । ପ୍ରଥମେ ନଜର ଦୁର୍ଗାଚରଣବାବୁଙ୍କ ସେଦିନର ଇଚ୍ଛାଗୁଡ଼ିକ । ଝିଣ୍ଟିକ ଅନ୍ତର୍ଯ୍ୟାମୀ ଝଟଟା ବଳରେ ଦୁର୍ଗାଚରଣ ବାବୁଙ୍କ ସେଦିନର ଇଚ୍ଛାଗୁଡ଼ିକର ଯେଉଁ ସବିଶେଷ ବିବରଣୀ ଦେଇଛନ୍ତି, ତାହା ନିମ୍ନରୂପ ।

...ଦୁର୍ଗାଚରଣ ଜଣେ ମନୁଷ୍ୟ ଏବଂ ମନୁଷ୍ୟମାନଙ୍କ ଶାସନ ଦପ୍ତରରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେ ଜଣେ ଲେଖକ ମଧ୍ୟ । ମେଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ଆରୋଗ୍ୟ ଲାଭ କରି ଥିଲେହେଁ ସେ ଦୁର୍ବଳ ହୋଇ ପଡ଼ିଥିବାରୁ ବର୍ତ୍ତମାନ ଦୁଇଅଞ୍ଜୁଳତା (ମନୁଷ୍ୟମାନଙ୍କ ଗଣନାରେ ଦୁଇମାସ) ଛୁଟି ନେଇ ଘରେ ବିଶ୍ରାମ କରୁଛନ୍ତି । କୌଣସି କାର୍ଯ୍ୟ ନ ଥିବାରୁ ତାଙ୍କର ଇଚ୍ଛାଗୁଡ଼ିକ ଅନେକ ଗୁଣ ବୃଦ୍ଧି ପାଇଛି । ସେଥିମଧ୍ୟରୁ କେତେଗୁଡ଼ିଏ ଇଚ୍ଛା ଅତି ହାସ୍ୟସ୍ପଦ ଥିବାରୁ ସେଗୁଡ଼ିକର ଉଲ୍ଲେଖ କରିନାହିଁ, ଯଥା— ତାଙ୍କର ଗୋଟିଏ ଇଚ୍ଛା ଝିଣ୍ଟିକ ବେଶ ପାଇ ସେ ଶୂନ୍ୟରେ ଭ୍ରମଣ କରୁଛନ୍ତି । (ଭଗବାନ୍ ଏହିଠାରେ କହିଲେ, ଝିଣ୍ଟିକ, ତୁମ୍ଭେ ସେ ଇଚ୍ଛାଗୁଡ଼ିକର ଉଲ୍ଲେଖ ନ କରି ଉଚିତ କରିଛ; କିନ୍ତୁ ତୁମ୍ଭେ ଉଲ୍ଲେଖ ନ କରିବାର କାରଣ ହାସ୍ୟାସ୍ପଦତା ଦେଖାଇବା ଉଚିତ ହୋଇନାହିଁ । କାରଣ ଅନେକ ସମୟରେ ଉକ୍ତ ପ୍ରକାର ହାସ୍ୟାସ୍ପଦ କାରଣ-ଗୁଡ଼ିକ ହିଁ ମନୁଷ୍ୟ ବୁଦ୍ଧିର ବିକାଶ ଆଣିଦେଇଛି; କିନ୍ତୁ ସେ ପ୍ରକାର ଇଚ୍ଛା-

ଗୁଡ଼ିକର ହରଣ କରିବା ମନୁଷ୍ୟର ସ୍ୱତନ୍ତ୍ର କ୍ଷମତାଭୁକ୍ତ ତାଲିକାରେ ମୁଁ ରଖିଛି । ତେଣୁ ସେଗୁଡ଼ିକ ଈଶ୍ୱରଙ୍କ ସାହାଯ୍ୟ ଦରକାର ପଡ଼ିବନାହିଁ ।)

...ଅନ୍ୟ କଳ୍ପନାଗୁଡ଼ିକ ମୁଁ ଚିନ୍ତାର ସମସ୍ତ ଅନୁସାରେ ସଜାଇ ନେଇ ଦେଲି...

...ହଠାତ୍ ଉଠିକରି ଦୁର୍ଗାଚରଣଙ୍କ ନିଦ୍ରା ଭାଙ୍ଗିଲା । ଅନେକ ଗର୍ବ ସହିତ ନିଜକୁ ବୈଜ୍ଞାନିକ ଅନେକ କଳ୍ପନା ସେ କରୁଛନ୍ତି । ଉପରେ ସେ ଖୁବ୍ ଉଚ୍ଚ ଆସନରେ ବସିଛନ୍ତି, ସାରା ପୃଥିବୀ ତାଙ୍କୁ ସମ୍ମାନିତ କରୁଛି, ସବୁ ପୁରସ୍କାର ସେ ପାଉଛନ୍ତି । ପୁଣି, କେତେ ସେ ପୃଥିବୀରେ ବଡ଼ ବୈଜ୍ଞାନିକ ହୋଇଛନ୍ତି, ତାଙ୍କର ଆବିଷ୍କାରରେ ସାରା ପୃଥିବୀ ଚମତ୍କୃତ ଇତ୍ୟାଦି ଭାବି ଭାବି ସେ କ୍ଲାନ୍ତ ହୋଇ ଶୋଇପଡ଼ିଥିଲେ ଅନେକ ରାତିରେ ।

...ସକାଳୁ ଉଠି ତାଙ୍କ ଘଣ୍ଟା ଘଣ୍ଟା ପୁଣି ସେଇ କଳ୍ପନାଗୁଡ଼ିକ ଯେ ଭାବି ବସିଲେ । ଭାବୁ ଭାବୁ ନିଜର କଳ୍ପିତ କ୍ଷମତାରେ ସେ ମୁଗ୍ଧ ହୋଇଗଲେ । ଦାନ୍ତ ଘଷିବାର ପାଇଖାନାରେ ମଧ୍ୟ ସେଇ ଭାବନା । ଗାଧୋଇ ସାରି ସେ ଜଳଖିଆ ଖାଇ ବସି ମଧ୍ୟ ସେଇଥି । ଆଜି ତାଙ୍କର ବରା ଖାଇବାକୁ ଇଚ୍ଛାହେଲା । ସାନ ପୁଅକୁ ପଠାଇଲେ ବରା ଆଣିବାକୁ । ଅଳ୍ପସମୟରେ ମୋଡ଼ ଦୋକାନରୁ ଗରମ ବରା ପୁଅ ଆଣିଦେଲା ।

...ବରାଗୁଡ଼ିକ ଖାଇସାରି ତେଲିଆ ହାତ ଗାମୁଛାରେ ପୋଛୁ ପୋଛୁ-ବେଳକୁ ତାଙ୍କର ପିଲାଦିନ ଅବସ୍ଥାର ଗୋଟିଏ ସ୍ମୃତି ହଠାତ୍ ମନେପଡ଼ିଲା । ସେତେବେଳେ ସେ ଥିଲେ ଦରିଦ୍ର । ତାଙ୍କର ସହପାଠୀ ବନ୍ଧୁ ଘନା ଥାଏ ନିକଟରେ ଗୋଟିଏ ବେଲ୍ଟପର ଘରେ । ସକାଳୁ ଉଠି ଗାଧୋଇ ସାରି ଦୁର୍ଗାଚରଣ ଚାଲିଯାଆନ୍ତି ଘନା ଘରକୁ । ଦୁଇଟି ବରା ବୁଢ଼ା ବଜାର ଦୋକାନରୁ ଏ ଧାରସୂତ୍ରରେ । ସେଥିରୁ ଗୋଟିଏ ଖାଆନ୍ତି ଘନା ଓ ଆଉ ଗୋଟିଏ ଦୁର୍ଗାଚରଣ । ଖାଇସାରି ଦୁଇଜଣଯାକ ଗାମୁଛାରେ ହାତ ପୋଛୁ ପାଣି ଗିଲାସେ ଗିଲାସେ ପିଇ ଯେତେବେଳେ ବସନ୍ତି, ସେତେବେଳେ ସେମାନଙ୍କର ଭାବରୁ ମନେହୁଏ ଯେପରି ନାନା ଉପାଦେୟ ଆହାର ସେମାନେ କରିଛନ୍ତି ।

…ଆଜି ବଡ଼ ଖାଡ଼ା ଅଛି ସ୍ୱର୍ଗତ ଶିକ୍ଷକଙ୍କ ଫଟୋଗ୍ରାଫ୍ ସେହି ମୂର୍ତ୍ତି ମୁହୂର୍ତ୍ତକ ପାଇଁ ମନରେ ନାଚିଲା । କିନ୍ତୁ ଅନ୍ୟ ପ୍ରାୟ ପଚିଶ ବର୍ଷ ହେବ ଦେଖା ହୋଇ ନାହିଁ । ମୁହୂର୍ତ୍ତକ ପାଇଁ ତାଙ୍କର ଚେହେରା ଭଲ ନାଚିଲା, ପରେ ଆଖିରେ ଦେଖା ମିଳିଲା କି !

…ପର ମୁହୂର୍ତ୍ତରେ କିନ୍ତୁ ଦୁର୍ଗାଚରଣଙ୍କ ମନେ ପଡ଼ିଗଲା ସେହି ଉତ୍କଳମଣି ଭକ୍ତମାନେ ଭଜନା ସବୁ ଚରଣରେ ଦେଖାଇ ସେ ଜୀବନରେ ଖଣ୍ଡ ହୋଇଛନ୍ତି, ସେ ସବୁ ଭାବିବାକୁ ।

ଏହା ପରେ ଏବେ ହଠାତ୍ ଦୁନିଆର ଚିନ୍ତା ତାଙ୍କ ମନ ଭିତରେ ନାଚିଲା ଯେ ଟେଲିଗ୍ରାମ ପଢ଼ାଇ ଲିପିବଦ୍ଧ କରିବା ମୋ ପକ୍ଷରେ ଅସମ୍ଭବ ବ୍ୟାପାର ହୋଇବ । ତାହା ହେଲେ ପରେ ଅସମ୍ଭବ ମୁଁ ଟେଲିଗ୍ରାମ ଜମାନ୍ତରରେ ଦେଉଛି ।

…ଖଣ୍ଡେ କାଗଜରେ ଟେଲିଗ୍ରାମ ପ୍ରଥମେ ସେ ଭାବିବାକୁ ଲାଗିଲେ, ସେ ଜଣେ ବଡ଼ ନେତା ହୋଇଛନ୍ତି । କେବଳ ରାଜନୈତିକ ନେତା ନୁହଁ, ଆଧ୍ୟାତ୍ମିକ ନେତା ବି । ତାଙ୍କର ଆଧ୍ୟାତ୍ମିକତା ବଳରେ ଭଗବାନ୍‌ଙ୍କୁ ସେ ପ୍ରତ୍ୟକ୍ଷ ଭାବରେ ପାଇଛନ୍ତି ଏବଂ ଭଗବାନ୍‌ଙ୍କୁ ପ୍ରାର୍ଥନାକରି ସେ ତାଙ୍କଦ୍ୱାରା ସବୁ କାର୍ଯ୍ୟ କରାଉଛନ୍ତି । (ଭଗବାନ୍ ସିଦ୍ଧହାସ୍ୟ କଲେ) ପ୍ରାର୍ଥନା ବଳରେ ସେ ଚୀନା ସୈନ୍ୟଙ୍କୁ ଭାରତ ସୀମାରୁ ହଟାଇ ଦେଇଛନ୍ତି ।

ତା'ପରେ ସେ ମନେ ମନେ କଳ୍ପନା କଲେ, ନା ପୁଣି ମୂଳରୁ ଭାବିବ । ଭାବିବାକୁ ଲାଗିଲେ—ମୁଁ ଜଣେ କର୍ମବ୍ୟସ୍ତ ହେଲେ ମଧ୍ୟ ବଡ଼ ଲେଖକ ହୋଇଛି । କେବଳ ଓଡ଼ିଆ ଭାଷାରେ ନୁହଁ, ଭାରତରେ ସବୁ ଭାଷାରେ ମୁଁ ବଡ଼ ବଡ଼ ଲେଖା ପ୍ରକାଶ କରୁଛି ଏବଂ ସମସ୍ତେ ପଢ଼ି ମୁଗ୍ଧ ହେଉଛନ୍ତି । (ଓଡ଼ିଆ ଛଡ଼ା ସେ ଆଉ କୌଣସି ଭାଷାର ଆଦ୍ୟ ଅକ୍ଷର ବୁଝି ଜାଣି ନାହାନ୍ତି) ମୋର ଲେଖାଗୁଡ଼ିକ ଭାରତରେ ଉଚ୍ଚ ପୁରସ୍କାର ଲାଭକରିଛି ଏବଂ ପୃଥିବୀରେ ମଧ୍ୟ ଶ୍ରେଷ୍ଠ ପୁରସ୍କାର ପାଇଛି । ଯେଉଁଠାକୁ ଯାଉଛି, ସେଠି ଲୋକେ ମୋତେ ଦେଖି ଆଶ୍ଚର୍ଯ୍ୟ ଓ ମୁଗ୍ଧ ହେଉଛନ୍ତି । ଦିନେ ମୁଁ ରେଳଗାଡ଼ିରେ ଯାଉଛି, ମୋତେ କେହି ଚିହ୍ନି ପାରୁନାହାନ୍ତି; କିନ୍ତୁ କେତେକ ଯୁବକ ଯୁବତୀ ମୋର ଲେଖା ବିଷୟରେ ଆଲୋଚନା କରୁଛନ୍ତି ଏବଂ ଉଚ୍ଚ ପ୍ରଶଂସା କରୁଛନ୍ତି । ସେମାନେ ଜାଣି ନାହାନ୍ତି ଯେ ମୁଁ

ଉଚ୍ଛି । ତା'ପରେ ମୁଁ ଆତ୍ମପ୍ରକାଶ କଲି । ନା, ସେଠା କରିବା ଅନୁଚିତ ହେବ ।

…କିପରି ସେ ଜଗତ୍‌ରେ ବୈଜ୍ଞାନିକ ରୂପେ ନିଜକୁ ଜାହିର କରିବେ, ତାହାର ଉପାୟ ନ ପାଇ ସେ ଚିନ୍ତା ତ୍ୟାଗକରି ସେ ଅନ୍ୟ ଚିନ୍ତା କରିବାକୁ ଲାଗିଲେ ।

…ଏହି ସମୟରେ ତାଙ୍କର ସ୍ତ୍ରୀ ତାଙ୍କର ପାନ ପେଡ଼ିକୁ ଆଣି ତାଙ୍କ ନିକଟରେ ଥୋଇଦେଇ କହିଲେ, ଚୁଲିରେ ହାଣ୍ଡି ବସାଇଛି; ଅଥଚ ଘରେ ଏଣୁ ତେଣୁ ଖାଇଯାଉଛୁ, ସମସ୍ତେ ରାନ୍ଧିବାକୁ କିଛି ଦେଉନାହିଁ; କିନ୍ତୁ ଭଲ ଖାଇବା, ଭୋଜନ ଖାଇବାକୁ ସବୁ । ଦୁର୍ଗାଚରଣ ରାଗିଯାଇ କହିଲେ, ତୁମର ରାନ୍ଧିବାଟା ମୋର ଚିନ୍ତା କରିବାଠୁ ବେଶି ମୂଲ୍ୟବାନ ହେଲା ? ମୁଁ ବର୍ତ୍ତମାନ କେତେ ବଡ଼ ଚିନ୍ତା କରୁଛି, ଆଉ ତୁମେ ସବୁ ଗୋଳମାଳ କରିଦେଲ ! ଏହିଭଳି ସ୍ତ୍ରୀ ପାଇ କେବେ କେହି···ଉନ୍ନତି···। ସ୍ତ୍ରୀ ପୁଅକୁ ଧରି ଚାଲିଗଲେ ଚିଡ଼ିଚିଡ଼ି ହୋଇ ଓ କହିଲେ, ଯେତେବେଳେ ଦେଖ ଚିନ୍ତା ।

…ଦୁର୍ଗାଚରଣ ପୁଣି ଭାବିବାକୁ ଲାଗିଲେ, ମୁଁ ଗୁରୁତ୍ୱରେ ଦକ୍ଷତା ଦେଖାଇ ବହୁତ ଉନ୍ନତି କରିଛୁ ଏବଂ ଅନେକ ଦରମା ପାଉଛୁ । ପ୍ରକାଣ୍ଡ କୋଠା କରିଛୁ । ଏଇଠି ସେ ଭାବିବାକୁ ଲାଗିଲେ କେଉଁଠି ଜମି କିଣି କୋଠା କରିବେ । କଟକରେ ତ ବର୍ତ୍ତମାନ ସହର ଭିତରେ ଆଉ ଜାଗା ନାହିଁ । ତାଙ୍କର ପୁରୁଣା ପୈତୃକ ବାସ ଭୂମିଟି ଅତି ସାନ । ସେଠି ତାଙ୍କ ଇଚ୍ଛାନୁସାରେ ବଡ଼ କୋଠା କରିହେବ ନାହିଁ । ଏ ସ୍ଥାନ ଗ୍ରାମ ଆଉ ଦୂରକୁ ମଧ୍ୟ ଯିବାକୁ ଇଚ୍ଛା ହେଉ-ନାହିଁ । କାରଣ ଯେଉଁମାନଙ୍କ ପ୍ରତି ତାଙ୍କର ଈର୍ଷା ଅଛି, ସେମାନଙ୍କୁ ପ୍ରତିଦିନ ଐଶ୍ୱର୍ଯ୍ୟ ଦେଖାଇ ତାଙ୍କର ଈର୍ଷା ଉଦ୍ରେକ କରିପାରିବେ ନାହିଁ । ତା ହେଲେ··· । ଏହା ପରେ କୋଠା ଭିଆଣିରେ ନକ୍ସା ଓ ହିସାବ କିତାବ କରୁ ସେ ଆଉ ଥଳକୂଳ ନ ପାଇ ତାହା ତ୍ୟାଗକରି ପୁଣି ମନେ ମନେ କହିଲେ, ନା ମୂଳରୁ ପୁଣି ଭାବିବାକୁ ହେବ ।

…ସେ ଭାବ ଗ୍ଭଲିଲେ, ତା ପରେ ମୁଁ ମଧ୍ୟ ଜଣେ ବଡ଼ ବୈଜ୍ଞାନିକ ହୋଇଛୁ । ମୋର ଗବେଷଣାରେ ମୁଁ ଆଇନଷ୍ଟାଇନଙ୍କଠାରୁ ବଡ଼ ହୋଇଛୁ ।

ଅଙ୍କଦ୍ୱାରା ବୁଝାଇ ଦେଇଛି ଭଗବାନ୍‌ଙ୍କ ଅସ୍ତିତ୍ୱ ଅଛି (ଭଗବାନ୍ ସ୍ମିତହାସ କଲେ) । ଏଠାରେ କହିରଖେ ଯେ ଅଙ୍କଶାସ୍ତ୍ରଠାରୁ ବହୁତ ଦୂରରେ ଦୁର୍ଗାଚରଣ । ଅଙ୍କ ଦେଖିଲେ ତାଙ୍କୁ ଜ୍ୱର ଆସେ ।

……ମୁଁ ମଧ୍ୟ ସନ୍ତରଣଦ୍ୱାରା ପ୍ରଶାନ୍ତ ମହାସାଗର ଅତିକ୍ରମ କରିବି ।

…ନାଃ, ନାଃ, ଏସବୁ ଅସମ୍ଭବ କଥା ଭାବି ଲାଭ ନାହିଁ । କେବଳ ମୁଁ ଜଣେ ବିଶ୍ୱବିଖ୍ୟାତ ଲେଖକ ଓ ଜଣେ ବଡ଼ ଆଧ୍ୟାତ୍ମିକ ଓ ରାଜନୈତିକ ନେତା ହୋଇଛନ୍ତି । ଏକାଧାରରେ ସବୁ ହୋଇଛନ୍ତି; କିନ୍ତୁ ଏସବୁ ହେବାକୁ ହେଲେ ଭଗବାନ୍‌ଙ୍କ ସାହାଯ୍ୟ ଦରକାର । ଭଗବାନ୍‌ଙ୍କର ଅସ୍ତିତ୍ୱ ପ୍ରତି ମନରେ ଅନୁଭବ ନ କଲେ ତାଙ୍କୁ ପାଇପାରିବ ନାହିଁ । ଅତଏବ ଏଥର ମୋର ଭଗବାନ୍‌ଙ୍କ ପ୍ରତି ପ୍ରେମ ବଢ଼ାଇବାକୁ ହେବ…ଅଚ୍ଛା…ଭଗବାନ୍‌ଙ୍କ ଅସ୍ତିତ୍ୱରେ ମୋର ବିଶ୍ୱାସ ଅଛି କି ନ ଅଛି, ସେ ଯଦି ଅଛନ୍ତି, ତେବେ କାହିଁକି ମୋ ମନରେ ତାଙ୍କ ପ୍ରତି ପ୍ରେମ ଜାଗ୍ରତ ହେଉନାହିଁ ? ହେ ଭଗବାନ୍, ମୋତେ ଜଣେ ବଡ଼ ଲେଖକ ଓ ନେତା କରିଦିଅ, ମୁଁ ରାମା, ରାମା, ରାମା ଛଡ଼ି ଜପକର ଚାହେଁ ନା…

ଭଗବାନ୍ ପଚାରିଲେ, ଐହିକ ବସ୍ତୁଟିର ବୟସ କେତେ?

—ପଇଁଚାଳିଶ ?

ଭଗବାନ୍ ସ୍ମିତହାସ କରି କହିଲେ, ଆହା, ତମ୍ଭର ବୁଦ୍ଧି ଏ ପର୍ଯ୍ୟନ୍ତ ପରିପକ୍ୱ ହୋଇନାହିଁ । ମୋତେ ସେ ପାଇବାକୁ ଚାହୁଁଛି କେବଳ ନିଜକୁ ବଡ଼ କରି ଅନ୍ୟ ଆଗରେ ଦେଖାଇବ ବୋଲି । ସେ ଇଚ୍ଛା-ପୂରଣ କରିବାର ଉପାୟ ତା'ର ସ୍ୱତନ୍ତ୍ର କ୍ଷମତାକ୍ତ । ହଉ ହେଲା, ସେଇ ବାଟେ ସେ ଯାଉ ବର୍ତ୍ତମାନ । ତୁମ ଈଶ୍ୱରରେ ତା ପ୍ରେମ ଉପର ଘୃଣା ଯୋଡ଼ାଇବାକୁ ଚେଷ୍ଟାକଲେ ହେଁ ପ୍ରସ୍ତୁ ବୁଝାପଡ଼ୁଛି । ନା, ନା, ଏମିତି ଈଶ୍ୱରୋଟ ମୋତେ ଦେବ ନାହିଁ କଦାପି । ମାନୁଛି ଏ କଥା ଯେ ପ୍ରତ୍ୟେକେ ବଡ଼ ହେବାର ସଂଘର୍ଷରେ ସମଗ୍ର ମାନବଜାତିର ଧ୍ୱଂସ ନିଶ୍ଚିତ ହେବ, ଯଦୁବଂଶ ଧ୍ୱଂସ ଭଳି; କିନ୍ତୁ ସେଥିରେ ଯାଏ ଆସେ, ଅଚ୍ଛା, ତୁମେ କେଉଁ ଇଚ୍ଛାକୁ ପ୍ରାଧାନ୍ୟ ଦେଉଛ ?

—ମୁଁ ଦୁର୍ଗାଚରଣର ଲେଖକ ହେବା ଓ ରାଜନୀତିରେ ଜାଗ୍ରତ କରିବାର ଇଚ୍ଛାକୁ ପ୍ରାଧାନ୍ୟ ଦେଉଛି ।

—କାହିଁକି ?

—ସବୁ ଇଚ୍ଛାଗୁଡ଼ିକ ମଧ୍ୟରେ ଏ ଦୁଇଟି ଇଚ୍ଛାକୁ ସେ ବାରମ୍ବାର ଧ୍ୟାନ ଦେଉଛନ୍ତି ଏବଂ ବ୍ୟାକୁଳଭାବରେ ଚିନ୍ତା କରୁଛନ୍ତି । ତେଣୁ ଏ ଇଚ୍ଛା ଦୁଇଟି ଅତି ଆନ୍ତରିକ ।

ଭଗବାନ୍ ପୁଣି ସ୍ମିତହାସ କରି କହିଲେ, ତୁମେ ଭୁଲ୍ କରୁଛ । ଯାହାହେଉ, ଏବେଠୁ ତୁମେ ତା'ର ବନ୍ଧୁ ପାଖାକୁ ଜଣକ ପଠାଅ ଏବଂ ଦୁର୍ଗାଚରଣ ସହିତ ସାକ୍ଷାତ କରାଅ । ଆଉ ଶୁଣ, ସମଗ୍ର ମାନବ ଜାତିର ସମୂହିକ ଇଚ୍ଛା ଓ ପ୍ରତ୍ୟେକ ମଣିଷର ନିଜସ୍ୱ ବ୍ୟକ୍ତିଗତ ଇଚ୍ଛା ବର୍ତ୍ତମାନ କେଉଁ ଦିଗକୁ ଅଗ୍ରସର ଓ ପରସ୍ପର ଭିତରେ କି ସମ୍ପର୍କ ଅଛି, ସେ ବିଷୟରେ ଗୋଟିଏ ସୂକ୍ଷ୍ମ ରିପୋର୍ଟ ଦିଅ ।

ଦୂତଙ୍କ ଆଦେଶ ପାଇ ଚାଲିଗଲେ ।

ଦୁର୍ଗାଚରଣ ଖୁବ ଖୁବ କ୍ଳାନ୍ତ ହୋଇପଡ଼ିଲେ । ମନରେ ତାଙ୍କର ଅବସାଦ ଆସିଲା । ଏତେ ଅସମ୍ଭବ କଳ୍ପନା କରୁଛନ୍ତି ବୋଲି ନିଜ ପ୍ରତି ଘୃଣା ମଧ୍ୟ ହେଲା । ସେ ଉଠି ଟିକିଏ ବୁଲି ଆସିବାକୁ ବାହାରିଲେ । ଘରୁ ବାହାରିଛନ୍ତି କି ନା ଦେଖିଲେ ତାଙ୍କର ବନ୍ଧୁ ପାଖା ଯାଉଛନ୍ତି । ଦୁହେଁ ଦୁହିଁଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ।

ଦୁର୍ଗାଚରଣ ପଚାରିଲେ, କିରେ ତୁ କୁଆଡ଼େ ?

—ମୁଁ ବର୍ତ୍ତମାନ ଭୁବନେଶ୍ୱରରୁ ଆସିଲି, ବାପା କହିଲେ ଖବରଦେଲେ ଆସିବାକୁ ।

ଇସ୍, ପଞ୍ଚ ବର୍ଷପରେ ଦେଖା, ନୁହେଁ ? ଆଜ ସକାଳେ ତୁମ ଖାଉ ଖାଉ ତୋ କଥା ମନେ ପଡ଼ୁଥିଲା ! ଏତେ କେତେବର୍ଷ ମୁଁ ତ ରହିଥିଲି ଦୂର ମୁଲକରେ ! ତୋର ଖବର ରଖିନାହିଁ । ଆଜ ସକାଳେ ଭାବୁଥିଲି ତୋ ସହିତ ଦେଖା ହୁଅନ୍ତା କି ?

ଦୁହେଁ ଦୁହିଁଙ୍କୁ ଆନନ୍ଦରେ କୁଣ୍ଢାଇ ପରସ୍ପରଠାରୁ ବଦାୟ ନେଲେ ।

ଦୁର୍ଗାଚରଣ ବୁଲି ଯାଉ ଯାଉ ଭବଙ୍କର କଥାଟି ମନେ ପଡ଼ିଲା···

Lord I know not
what to ask of thee
Thou only knowest
what I need.
Thou lovest me
better than I know how to love myself.
Smite me or heal me
depress me or raise me up,
I adore all thy purposes
without knowing them;
I do not know to pray.
Pray thyself in me.

(ମୁଁ କଅଣ ଲୋଡ଼ିବି ଜାଣେନା । ତୁମେ ଜାଣ ମୋର କଅଣ ଦରକାର । ମୁଁ ମୋତେ ଯେତେ ଭଲପାଏ, ତା'ଠୁ ତୁମେ ମୋତେ ବେଶି ଭଲପାଅ । ଦୁଃଖ ଦିଅ ବା ସୁଖ ଦିଅ, ଲଜ୍ଜା ଦିଅ ବା ଯଶ ଦିଅ, ତୁମର କି ଉଦ୍ଦେଶ୍ୟ ସେଥିରେ ନିହିତ ଅଛି ନ ଜାଣିଲେ ବି ଜାଣେ ସେ ଉଦ୍ଦେଶ୍ୟ ମହତ୍ । ମୁଁ ପ୍ରାର୍ଥନା କରି ଜାଣେନା । ତୁମେ ମୋ ଭିତରେ ଥାଇ ପ୍ରଭୁ ପ୍ରାର୍ଥନା କର )



# ଧ୍ୱନି

ମଣିଷର ଭିତରେ ଦୁଇଟି ମନ ଅଛି । ଗୋଟିଏ ଦେହଜମନ ଓ ଅନ୍ୟଟି ଦେହାଶ୍ରିତ ମନ । ଦେହଜ ମନ ଦେହକୁ ନେଇ ରହିଥାଏ । ଧନ, ଜନ, ମାନ, ଭୂସମ୍ପତ୍ତି, ସୁଖ, ସମ୍ଭୋଗ ପଛରେ ଦୌଡ଼ୁଥାଏ । ସେଥିପାଇଁ କେତେ ଲୋଭ, ହିଂସା, ଛଳନା, ଜାଲ୍ ଜୁଆଚୋରିର ଆଶ୍ରୟ ନିଏ । ସେତେବେଳେ ତା'ର ଦେହାଶ୍ରିତ ମନ ସେ ସବୁ ଭିତରେ କେଉଁଠି ଲୁଚିଯାଏ ସତ ତଥାପି ମଝିରେ ମଝିରେ ଏ ଦେହକୁ ସେଇ ସର୍ବତ୍ର ପରିବ୍ୟାପ୍ତ, ସର୍ବତ୍ର ଯାହାର ଆଖି ବିଦ୍ୟମାନ୍ ସେଇ ମହାନ୍ ଶକ୍ତି ଆଡ଼କୁ ଟାଣିନିଏ । ସେତେବେଳେ ମଣିଷ ନିଜର ଇନ୍ଦ୍ରିୟ-ପରିବେଷ୍ଟିତ କ୍ଷୁଦ୍ର ସଙ୍କୀର୍ଣ୍ଣ ଗଣ୍ଡି ଗୁଡ଼ିକ ବାହାରକୁ ଦୃଷ୍ଟି ପକାଏ । ସବୁଟାକୁ ସୁନ୍ଦର ଦିଶେ । ଘାସଗଛଟି ବି ଅପୂର୍ବ ସୃଷ୍ଟି ବୋଲି ମନେ ହୁଏ । ସେତେବେଳେ "ମୁରଲି ତାର ନାମ ଧରି, ଡାକଇ ଆସ ବେଗକରି ।" ସେ ମୁରଲି ସ୍ୱର ଶୁଣି 'ମନ ହୁଅଇ ଛନ୍ନି ଛନ୍ନ, ବ୍ୟାପାରେ ନ ଲାଗଇ ମନ' । ସର୍ବଦା ସଂଯୁକ୍ତ ତୁଲ୍ୟନାମ-ବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷକୁ ଆଶ୍ରୟ କରି ଅଛନ୍ତି, ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣକରେ, ଅପରଟି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଦେହାଶ୍ରିତ ମନ ଯାହାର ଅଧିକ ପ୍ରବଳ, ସେ ହୋଇଛି ପ୍ରକୃତ ନେତା, ପ୍ରକୃତ ବିପ୍ଲବୀ,, ବୁଦ୍ଧ, ଖ୍ରୀଷ୍ଟ, ଚୈତନ୍ୟମାନଙ୍କ ଭଳି ।

ଏ କଅଣ କୌଣସି ଗଳ୍ପର ବିଷୟବସ୍ତୁ ହୋଇପାରେ ? ନା ନୈତିକ ବା ଦାର୍ଶନିକ ? ସାହିତ୍ୟ କଅଣ କେବଳ ଦେହଜ-ମନର ତୃପ୍ତି ଆଣିବାପାଇଁ ? ଅଥବା କେବଳ ଦେହଜ-ମନର ତୃପ୍ତି ଯେଉଁ ସାହିତ୍ୟ ଦିଏ, ସେ କଅଣ 'ସାହିତ୍ୟ' ? ଆଜି ସକାଳୁ ଭଗବାନ୍ ବାବୁଙ୍କ ମନରେ ଯେଉଁ ସବୁ ଭାବ ଉପୁଜିଲା ସେ କଅଣ ସାହିତ୍ୟ-ଦୃଷ୍ଟିରୁ ଗୋଟିଏ କ୍ଷୁଦ୍ର ଗଳ୍ପ ନୁହେଁ ?

ଶୀତଦିନର ଗୋଟିଏ ରମଣୀୟ ପ୍ରଭାତ ? ଭଗବାନ୍ ବାବୁ ଗୃହର ଝରକା ଖଣ୍ଡେ ଖୋଲିଦେଇ ଦୂରକୁ ଚାହାଁଇଲେ । ମନଟା ତାଙ୍କର ହଠାତ୍ ଉଦାସ ହୋଇଗଲା । ପହିଲା ସୂର୍ଯ୍ୟକିରଣ ବେଗୁଣି ଦେଖାତ । ସବୁଜ ଘାସ ଉପରେ ଶିଶିରବିନ୍ଦୁ ଗୁଡ଼ିକରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ସେଗୁଡ଼ିକୁ ଏକ ଅପୂର୍ବ ବସ୍ତୁରେ ପରିଣତ କରିଛି । କାଉଚଢ଼େଇ କା କା ରବ ଦେଇ ଉଡ଼ି ଯାଉଛନ୍ତି । ଦୂରରେ ଗୋଟିଏ ଚଢ଼େଇ ଅନବରତ କହି ଚାଲିଛି କୃଷ୍ଣ କାହିଁ ଗୋ…କୃଷ୍ଣ କାହିଁ ଗୋ…ଅତି ବ୍ୟାକୁଳ ଭାବରେ । ପଢ଼ିବାବାଲାମାନେ ଘର ଘର ହୋଇ ଧାଇଁଛନ୍ତି ଡାକ ଡାକ, ଅଜ୍ଜୁ…ଅଜ୍ଜୁ । ମ୍ୟୁନିସିପାଲିଟି ମଇଳାବୁହା ଗାଡ଼ି ଚାଲିଛି ଏକବେ ପ୍ରକାର ଶବ୍ଦ କରି ଘଟର ଘଡ଼ ଘଡ଼ କେଁ ଏଁ ଏଁ ଧଡ଼— ଘଟର ଘଡ଼ ଘଡ଼ କେଁ ଏଁ ଏଁ ଧଡ଼ । ଗୋଟିଏ ଗେଣ୍ଡା ଧୀରେ ଧୀରେ ଚାଲିଛି, ନିଃଶେ ରେଖାକରି

ଭଗବାନ୍ ବାବୁଙ୍କ ମନ ଆଜ ଘର ଭିତରେ ରହିଲାନାହିଁ । ନିଜର ଅଜାଣତରେ ଦେହଟା ତାଙ୍କର ଆଗେଇଗଲା । ମନ ତାଙ୍କର ଚାହୁଁଥାଏ ସବୁ ଦେଖିବାକୁ, ସବୁ ଶୁଣିବାକୁ । କେତେଥର ଏସବୁ ଦେଖିଛନ୍ତି, ଶୁଣିଛନ୍ତି । ଅଜ କିନ୍ତୁ ଆଉ ଥରେ ନୂଆକରି ଦେଖିବାକୁ ଶୁଣିବାକୁ ଇଚ୍ଛା ହେଲା ।

ବୁଲି ବୁଲି ସେ ଆସି ପହଞ୍ଚିଗଲେ ଶଙ୍କର ବାବୁଙ୍କ ଘର ସାମନାରେ କୌଣସି ଉଦ୍ଦେଶ୍ୟରେ ନୁହଁ, ଯଦୃଚ୍ଛାକ୍ରମେ । ଶଙ୍କର ବାବୁ ତାଙ୍କର ବାଲ୍ୟବନ୍ଧୁ । ଅନେକ ଦିନ ହେବ ତାଙ୍କ ସହିତ ଦେଖା ହୋଇନାହିଁ । ନାନା ସାଂସାରିକ ଜଞ୍ଜାଳ ଭିତରେ ପଡ଼ି ଶଙ୍କର ବାବୁ ଘଣ୍ଟି ହେଉଛନ୍ତି । ଘରରୁ କଚେରି । କଚେରିରୁ ବଜାର ହେଇ ଘର । ସେଇ ଗୁଳାରେ ତାଙ୍କର ମନ ଓ ଦେହ ଚାଲିଛି ତ ଚାଲିଛି । କିଛିଦିନ ତଳେ ତାଙ୍କର ଗୋଟିଏ ପୁଅ ମରିଯାଇଛି । ସେ ଶୋକରୁ ସେ ଏ ପର୍ଯ୍ୟନ୍ତ ମୁକ୍ତ ହୋଇପାରି ନାହାନ୍ତି । ଭଗବାନ୍ ବାବୁ ତାଙ୍କର ଖବର ନେବାପାଇଁ ତାଙ୍କ ଦୁଆର ମୁହଁରେ ଛିଡ଼ାହେଲେ । ଶଙ୍କର ବାବୁଙ୍କ ଘର ଭିତରେ ଓ ବାହାରେ ସେତେବେଳେ ନାନା ପ୍ରକାର କୋଳାହଳ । ଭଗବାନ୍ ବାବୁ ପ୍ରତ୍ୟେକ ଶବ୍ଦଟିକୁ ଅଲଗା ଭାବରେ ଶୁଣିବାକୁ ଲାଗିଲେ ।

ଘର ଭିତରେ ଶଙ୍କର ବାବୁଙ୍କ ସ୍ତ୍ରୀ ମୃତ ପୁଅର ଗୁଣ ବାଖାଣି କାନ୍ଦୁଛନ୍ତି, ମୋତେ ଛାଡ଼ି ତୁ କୁଆଡ଼େ ଗଲୁରେ ମୋ ଗୁଣମଣି; ତୋତେ ଛାଡ଼ି ମୁଁ କେମିତି

ଥିବାରେ··· । ହଠାତ୍ କାହଣା ବନ୍ଦକରି ସେ ପାଦ୍ରିକର ଗୃହଗୃହିଣୀଙ୍କୁ ଗାଳି ଦେବାକୁ ଲାଗିଲେ, ହୋଇଗଲେ ହେମ, ତୋତେ କେତେଥର କହିଛି ଯେ ବାସନକୁ ମାଜିବା ପରେ ଭଲ ପାଣିରେ ଧୋଇ ରଖିବୁ ? ଆଉ କଅଣ ତୋ ଗୋଡ଼ିଚଲେ ପଡ଼ି କହିବି ?

ହେମ ମଧ୍ୟ ପାଟିକରି କହିଲା, "ରଖୁଛି ମା' ରଖୁଛି, ପାଟିଟା କରୁଛ କାହିଁକି ?"

ତା'ପରେ ଦୁଇଜଣ ଏକାସାଙ୍ଗରେ ଜଳଦ୍ଵାରା ଚନ୍ଦ୍ରକୁ ବୁଝାଇବାକୁ ଚେଷ୍ଟାକଲେ ।

କଙ୍କର ବାବୁଙ୍କ ବଡ଼ ଝୁଅଟି ପ୍ରଥମ ଶ୍ରେଣୀ ଛାତ୍ରୀ । ସେ ଚିତ୍କାର କରି ପଢ଼ା ମୁଖସ୍ଥ କରୁଛି, ଗ୍ରୀନ୍‌ଲେଣ୍ଡର ଅଧିବାସୀମାନଙ୍କୁ ଏସ୍କିମୋ ଏସ୍କିମୋ ଏକ୍‌ସିମୋ ଏକ୍‌ସିମୋ କହନ୍ତି ଉଁ···ଉଁ···ଉଁ ସେମାନଙ୍କୁ ବର୍ଷସାରା ଶୀତ ସହିବାକୁ ପଡ଼େ । ବୋଉ ଦେଖିଲୁ କୁନାକୁ । ଚୁପ୍ କର୍ ବଦ୍‌ମାସ ଏକଣ୍ଡିକା ।

କଙ୍କର ବାବୁଙ୍କ ତିନିବର୍ଷର ପୁଅଟି ମୁଣ୍ଡ ତଳକୁ କରି କାନ୍ଥ ଉପରକୁ ଗୋଡ଼ ଟେକିଦେଇ ସମସ୍ତଙ୍କ ଦୃଷ୍ଟି ତାହା ଆଡ଼କୁ ଆକୃଷ୍ଟ କରିବାପାଇଁ ଚିତ୍କାର କରୁଛି । ଦେଖିବୁ ଦେଖ, ଦେଖିବୁ ଦେଖ··· ।

ତାଙ୍କ ଦୁଆର ମୁହଁରେ ଗୋଟିଏ ଗଞ୍ଜା କୁକୁଡ଼ା ଓ ଦୁଇଟି ମାଈ କୁକୁଡ଼ା ମଇଳାଗଦାରୁ ଖୁମ୍ପି ଖୁମ୍ପି ଆହାର ଖୋଜୁଛନ୍ତି । ମଝିରେ ମଝିରେ ଗଞ୍ଜାଟା ବେକ ଅଣ୍ଟାଇ ଡାକ ଦେଉଛି, ଡଙ୍କଧର···ଅ···ଅ ରକ୍ଷାକର । ତା'ର ଡାକରେ ଆକାଶ ଯେପରି ଚିରି ହୋଇଯାଉଛି, ତାର ସ୍ତ୍ରୀମାନେ ଡରି ଯାଉଛନ୍ତି !

ଗୋଟିଏ ମାଈ କୁକୁର ପଛରେ ପାଞ୍ଚଟା ଅଣ୍ଡିରା କୁକୁର ଗୋଡ଼ାଉଛନ୍ତି । ମଝିରେ ମଝିରେ କୁକୁରଟି ଲାଙ୍ଗୁଡ଼ ପାକ ଦେଇ ପଛକୁ ଲେଉଟି ପଡ଼ି ସମସ୍ତଙ୍କୁ ଖେଙ୍କି ହୋଇ କାମୁଡ଼ି ଓ ସାଙ୍ଗେ ସାଙ୍ଗେ ଅଣ୍ଡିରା କୁକୁରମାନଙ୍କ ଭିତରେ ଲାଗି ଯାଉଛି ତୁମୁଳ ଯୁଦ୍ଧ । ପରସ୍ପର ଭିତରେ କାମୁଡ଼ା କାମୁଡ଼ି କରି ତୁମୁଳ ଶବ୍ଦ ସୃଷ୍ଟି କରୁଛନ୍ତି ସେମାନେ । ଇତିମଧ୍ୟରେ କୁତ୍ତିଟା ପଳାଇଛି ଅଣ୍ଡିରାଗୁଡ଼ାକ ନିଜ ଭିତରେ ଝଗଡ଼ା ବନ୍ଦକରି ପୁଣି ଗୋଡ଼ାଉଛନ୍ତି ତା ପଛରେ ।

ଭଗବାନ୍ ବାବୁଙ୍କ କୋଳ ଛୁଆଟି କାନ୍ଦ କାନ୍ଦ ଧଇଁ ସଇଁ ହୋଇ-ପଡ଼ିଲାଣି ।

ଗୋଟିଏ ଭିକାରି ଏତେ ସକାଳୁ ଆସି ଜୁଟିଗଲାଣି । ସେ ପାଟିକରି ଡାକୁଛି ମା...ଆ...ଧର୍ମ କର, ଗଣ୍ଡେ ଭିକ ଦିଅ, ଦଶ ଦୁଆର ଯିବି, ଏତେ ଡେରି କଲେ ଚଳିବ...

ଗୋଟିଏ ଫେରିବାଲା ଡାକି ଡାକି ଚାଲିଗଲା, ଗରମ ସିଙ୍ଗଡ଼ା, ଅଳୁଚପ୍, ପକୁଡ଼ି, ରସଗୋଲା ଛେନାଗଜା...

ଦୁଇଜଣ ମାମଲତକାର ଛୁଟିଛନ୍ତି ଓକିଲଘରକୁ । ଜଣେ ହାତ ହଲାଇ ଅନ୍ୟ ଜଣକୁ କହୁଛି, ସର୍ବନାଶ କରିଦେବି ତାହାର, ଭାଇ ନୁହଁ ଭଗାରି ।

ଦୂରରେ ଗୋଟିଏ ରେଳଗାଡ଼ି ପୋଲ ପାରିହେବା ପୂର୍ବରୁ ଗାଁ ଗାଁ ଗର୍ଜନ କରି ଉଠିଲା ।

ପାଖ ଘରର ବୈଠକଖାନାରୁ ତର୍କ ଶୁଭୁଛି...ଦୁର୍ନୀତି ପାଣି ସୁଅପରି । ତାହା ତଳୁ ଉପରକୁ ଯାଏନାହିଁ, ଉପରୁ ତଳକୁ ବହେ । ଚପରାସୀ ଚାରିଅଣା ଘୁଷ୍ ନେଲା ବୋଲି ହାକିମ ଘୁଷ୍ ନିଏ ନାହିଁ ଯେ, ହାକିମ ଶହେଟଙ୍କା ଘୁଷ୍ ନେବାରୁ ଚପରାସୀ ଚାରିଅଣା ନିଏ । ଚପରାସୀ ଘୁଷ୍ ନେବାର ଅର୍ଥନୈତିକ କାରଣ ଥାଇପାରେ; କିନ୍ତୁ ହଜାର ହଜାର ଟଙ୍କା ପାଇ ସୁଦ୍ଧା ଯେଉଁମାନେ ଦୁର୍ନୀତି-ପରାୟଣ, ସେମାନେ କେବଳ ଅପରାଧୀ ମନୋବୃତ୍ତି ପାଇଁ ।

କଙ୍କର ବାବୁଙ୍କ ପାଟି ଶୁଭୁଛି । ସେ ଗୀତା ପଢ଼ୁଛନ୍ତି—

...ପଶ୍ୟାମି ଦେବାଂସ୍ତବ ଦେବ ଦେହେ,
ସର୍ବାଂସ୍ତଥା ଭୂତବିଶେଷସଙ୍ଘାନ୍;
ବ୍ରହ୍ମାଣମୀଶଂ କମଳାସନସ୍ଥମ୍
ଋଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ ।
ଅନେକବାହୂଦରବକ୍ତ୍ରନେତ୍ରଂ
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍;
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ
ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପମ୍...

ଦୂରରୁ ଶୁଭୁଛି, ଅଲ୍ଲାହ୍ ଇଲାହା ଇଲ୍‌ଅଲ୍ଲାହ୍ ।

ଭଗବାନ୍ ବାବୁ ପ୍ରତ୍ୟେକ ଧ୍ୱନିକୁ ଅଲଗା ଅଲଗା ଶୁଣିବାକୁ ଲାଗିଲେ । ତାଙ୍କର ମନରେ ପ୍ରଶ୍ନ ଜାଗିଲା, ଏ ପ୍ରତ୍ୟେକ ଧ୍ୱନିର ଉତ୍ସ କଅଣ ଭିନ୍ନ ଭିନ୍ନ ? ଉତ୍ତର ସନ୍ଧାନ କରୁ କରୁ ସେ ଏପରି ଏକ ସ୍ତରରେ ପହଞ୍ଚିଲେ, ଯେଉଁଠି ମନେ ହେଲା ପ୍ରତ୍ୟେକ ଧ୍ୱନିର ଉତ୍ସ ସେଇଠି । ପ୍ରତ୍ୟେକ ଧ୍ୱନିର ଆଉ ପ୍ରତ୍ୟେକତ୍ୱ ରହିଲା ନାହିଁ । ସବୁ ଗୋଳେଇ ମିଶେଇ ଯାଇ ଏକ ଅପୂର୍ବ ଢେ ଝଙ୍କୃତ ହେବାକୁ ଲାଗିଲା ଧୀର ଉଦାତ୍ତ ସ୍ୱରରେ ।

ଭଗବାନ୍ ବାବୁ ମୁରୁକି ହସି ଶୂନ୍ୟକୁ ଚାହିଁ ନମସ୍କାର କରି ପୁଣି ଚାଲିବାକୁ ଆରମ୍ଭ କଲେ ।

ଏ କଅଣ ଗୋଟିଏ ଗଳ୍ପ ହେଲା ?



# ବହୁମୁଖୀ

ପ୍ରାତସମୁତ୍ଥାୟ ତବ ପ୍ରିୟାର୍ଥଂ, ସଂସାର ଯାତ୍ରାମନୁବର୍ତ୍ତୟିଷ୍ୟେ···ଅଃ··· ଅଃ···ବୋଉଲେ, ମା ତାରା, ତାରା, ତାରା···ତ୍ରିନୟନେ ସନାତନୋ···ହେ ଜନ, କନ, ମିନ ଆରେ ଉଠ ସକାଳ ହେଲାଣି । ଉଠିଲ···ଦଣ୍ଡବତ କର ସବୁ । ପରଶୁରାମ ବାବୁ ରାତି ନ ପାହୁଣୁ ଉଚ୍ଚସ୍ୱରରେ ଈଶ୍ୱର ଭଜନ୍ତି, ଭଜନ୍ତି, କହନ୍ତି

କାର୍ତ୍ତିକ ଶୀତ ସକାଳଠାରୁ ପିଲାଗୁଡ଼ିକୁ ଉଠାଉଛ । କଅଣ ପିଲେ ପଢ଼ାକୁ ଯିବେ···ଶୋଇ ଥାଆନ୍ତୁ, କନ୍ଦା ହୋଉଛି ହେଉ···

ତୁମେ ବୁଝନାଇଁ ରାଣୀ ! ସକାଳୁ ଉଠି ଥରେ ଭଗବାନଙ୍କୁ ଡାକିବା-ମାନେ ଶରୀର ଓ ମନ ପାଇଁ ଔଷଧ ଖାଇବା ସଙ୍ଗେ ସମାନ···ଦିନ ଯାଉଛି ଆଉ ଭଗବାନ ମନେ ପଡ଼ିବେ ନାହିଁ···

ପିଲାଙ୍କ ପାଇଁ ତୁମେ ଡାକଦେଲେ ଚଳିଯିବ । ଶୋଇ ଥାଆନ୍ତୁ ଟିକିଏ ଆରାମରେ···ଉଠାଅ ନା···

ରାଣୀ, ପିଲାବେଳୁ ଏସବୁ ଅଭ୍ୟାସ କରିବା ଉଚିତ । ସଙ୍ଗୀତ, ସାହିତ୍ୟ, ଚିତ୍ରାଙ୍କନପରି ଜୀବନଯାତ୍ରା ମଧ୍ୟ ଗୋଟାଏ କଳା । ସବୁ କଳାର ଦୁଇ ଗୋଟି ଦିଗ ଅଛି—ଅଭ୍ୟାସ ଓ ପ୍ରେରଣା । ପ୍ରେରଣା ଆସେ ପରେ; କିନ୍ତୁ ତା ପୂର୍ବରୁ ଅଭ୍ୟାସ ନ ଥିଲେ ପ୍ରେରଣାକୁ ରୂପ ଦେଇ ହୁଏନା । ତେଣୁ ପ୍ରେରଣା ଆସିବା ପୂର୍ବରୁ ଗଳା, ବାଦ୍ୟଯନ୍ତ୍ର, ଭାଷା ବା ତୂଳୀ ସାଧି ରଖିବା ଉଚିତ । ଗୃହସ୍ଥାଶ୍ରମ ପୂର୍ବରୁ ସେଥିପାଇଁ ବ୍ରହ୍ମଚର୍ଯ୍ୟ ଦରକାର···

ତୁମର ନଇତି ସକାଳୁ ଏପରି ବକ୍ତୃତା ନ ଦେଲେ କଅଣ ପାଇଖାନା ପରିଷ୍କାର ହୁଏନା । ତୁମ ନୀତିକଥା ଶୁଣି ଶୁଣି ମୁଁ ପାଗଳ ହୋଇଯିବି, ଏଇ ଜୀବନ ତୁମେ ସବୁ··· ରାଣୀ ବିରକ୍ତ ଭରି କହିଲା ।

ଅଳସତା, ଜଡ଼ତା ଅଚେତନ ମନୋବୃତ୍ତିର ପ୍ରଧାନ ଲକ୍ଷଣ···ତୁମେ ଉତ୍କର୍ଷତାର ସୋପାନ ଟପିବ ସେ ନମା କଥା···ସେତେବେଳେ କଳ୍ପ ଲୋକ ଗୁଡ଼ି କଳ୍ପନାକ ବନ୍ଧ ଯାଉଥିବ···

ଲେକ୍ଚରରେ ତ ଅଫେସି ଗୁଡ଼ାଏ ଫ୍ରେଞ୍ଚ, କଳ୍ପନାକୁ ବନ୍ଧୁପିଲା ଦୁର୍ବଳତାରେ ତୁମେ ଅସ୍ଥିର ଦୃଷ୍ଟନ···

ରାଣୀ, କଅଁଳ କଅଁଳ ସବୁ? ଠକ୍କା ଠକ୍କା କର ଯଦି ତୁମେ ପାଗଳ ହୋଇଯିବ। କାହିଁକି ଏତେ ଲୋଭ!!

ଲୋଭ? ସ୍ୱାକୁ ଲୋଭ କୁହ? ତା ହେଲେ ବଞ୍ଚିବାର ଇଚ୍ଛା ବି ଲୋଭ? ରାଣୀ ମୁହଁ ଫୁଟି କହିଗଲା।

ପରଶୁରାମ ବାବୁ ତଳକୁ ମୁଣ୍ଡ ପୋତି କିଛିକ୍ଷଣ ବିଛଣା ଉପରେ ବସି ଗୋଟିଏ ଗାଢ଼ ନିଃଶ୍ୱାସ ଛାଡ଼ିଲେ ଏବଂ ଉଠି ପୂର୍ବ ଦିଗର ଝରକା ଖୋଲିଦେଲେ। ତରୁଣ ଅରୁଣ ଧୀରେ ଧୀରେ ଆତ୍ମପ୍ରକାଶ କରୁଛି। ସୂର୍ଯ୍ୟଙ୍କୁ ନମସ୍କାର କରି ପରଶୁରାମ ବାବୁ କହିଲେ···ଜବାକୁସୁମ ସଙ୍କାଶଂ···। ସେ ମନରେ ଗୋଟିଏ ଅପୂର୍ବ ଦାର୍ଶନିକ ଶାନ୍ତି ଅନୁଭବ କଲେ ଆଉ ଭାବିବାକୁ ଲାଗିଲେ···କାହିଁକି ଏ ସମ୍ମାନ, ପ୍ରକୃତିର ଶ୍ରେଷ୍ଠ ଦାନ···ଏଇ ସୂର୍ଯ୍ୟ, ଯାହାର ଆଭ୍ୟନ୍ତରୀଣ ଉତ୍ତାପ ଲକ୍ଷ ଲକ୍ଷ ଡିଗ୍ରୀ, ଯାହାର ଓଜନ ଆମର ଏଇ ବିଶାଳ ପୃଥିବୀର କୋଟି କୋଟି ଗୁଣ, ତାର ମଧ୍ୟ ପ୍ରତି ସେକେଣ୍ଡରେ ଚାଳିଶ ଲକ୍ଷ ଟନ୍ ହିସାବରେ ଶକ୍ତି କମୁଛି··· ହୁଏତ ଦିନେ ଶେଷ ରାତିର ଦୀପ ଭଳି ସେ ମଧ୍ୟ ନିଷ୍ପ୍ରଭ ହୋଇ ଯାଇପାରେ··· କି ମହାନ୍ କି ଅଦ୍ଭୁତ ଏଇ ସୃଷ୍ଟି···କୋଟି କୋଟି ମାଇଲ ଦୂରରେ ସୂର୍ଯ୍ୟପ୍ରମାଣ ମହାକାଶ ଅଗ୍ନିପିଣ୍ଡ ଯାହାକୁ କହନ୍ତି ସ୍ପାଇରାଲ ନେବୁଲା···ଏ ଜଗତ ଦୈବାତ୍ ସୃଷ୍ଟି ନା କେହି ଗୋଟାଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଏହାକୁ ସୃଷ୍ଟି କରିଛି···ମନୁଷ୍ୟ ରୂପକ କୀଟର ସ୍ଥାନ ଏ ସୃଷ୍ଟିରେ କେଉଁଠି?···ଦୈବାତ୍ ପଞ୍ଚଭୂତର ମିଳନରୁ ଏହି କୀଟର ସୃଷ୍ଟି, ନା ଏହାର ସୃଷ୍ଟିରେ ସୃଷ୍ଟିର ଚରମ ଉଦ୍ଦେଶ୍ୟ ନିହିତ ଅଛି?··· ଆମର ସ୍ୱାଧୀନ ସତ୍ତା ଅଛି, ନା ଏହା ଜଡ଼ ପଦାର୍ଥର କେବଳ ସଚେତନ ଅବସ୍ଥା?···

ନାନା ବିକ୍ଷିପ୍ତ ଦାର୍ଶନିକ ଚିନ୍ତାରେ ତାଙ୍କର ମନ ପୀଡ଼ାରେ ଅବଶ ହୋଇ ଆସିଲା, ଦମ୍ ବନ୍ଦ ହୋଇଯିବା ଭଳି ଲାଗିଲା । ସେ ତୁରନ୍ତ ଭଗବାନଙ୍କ ଅସ୍ତିତ୍ୱ ସ୍ୱୀକାର କରିଦେଇ ନିଃଶ୍ୱାସ ମାରି ଊର୍ଦ୍ଧ୍ୱ ଆଡ଼କୁ ଅନାଇ ରହିଲେ ଅନ୍ୟ ଦୃଷ୍ଟିରେ । ଏଣ୍ଟ୍ରପି ଦୌଡ଼ ଦୌଡ଼ କୁଆଡ଼େ ପର୍ଯ୍ୟନ୍ତ ଯାଏ । ପରଶୁରାମ ବାବୁଙ୍କ ଚିନ୍ତାଶକ୍ତି ବିଶ୍ୱାସରେ ଆଶ୍ରୟ କରିବାକୁ ଚାହେଁ ।

ଖବରକାଗଜ ବାଲା ଝରକା ବାଟେ ଖବରକାଗଜ ଚଳାଇ ଦେଇଗଲା । ଖବରକାଗଜ ଗୋଟାଇ ନେଇ ପଢ଼ିବାକୁ ଲାଗିଲେ...କୋରିଆ ଯୁଦ୍ଧ...ତୃତୀୟ ମହାଯୁଦ୍ଧ ଆସନ୍ନ...ଘରଚର ଖାଦ୍ୟାଭାବ...

—କିରେ ପଶୁଁ, ଖବର କଅଣ ? ବନ୍ଧୁ ସୀରେନ୍ ସକାଳବୁଲା ସାରି ଫେରୁଛି ।

—କିରେ ସୀରେନ୍ ଏତେ ସକାଳୁ ?

—ବୁଲି ଯାଇଥିଲି । ଆଜିର ଖବର କଅଣ ?

—କୋରିଆ, ତୃତୀୟ ମହାଯୁଦ୍ଧ, ଏଇ ସବୁ...

—ସତେ ମ ! କୋରିଆରେ, ଚେଷ୍ଟିଏ କି ପାଳି ଲାଗିଛି ମ...

—ବୁଝିଲୁ, ସବୁ ନିର୍ଭର କରେ ଦେଶର ଅର୍ଥନୀତି ଉପରେ । ଆମେରିକା ସମଗ୍ର ପୃଥିବୀରେ କ୍ଷମତା ବିସ୍ତାର କରିବାକୁ ଚାହେଁ । କାହିଁକି ବା ଦେଶକୁ ଶିଳ୍ପ ପ୍ରଧାନ କର ? ଶିଳ୍ପପ୍ରସାର କରି କରି ନିଜର ଆବଶ୍ୟକତାଠାରୁ ବହୁଗୁଣ ବେଶି ଦ୍ରବ୍ୟ ପ୍ରସ୍ତୁତ କରିବାକୁ ଲାଗେ ବାଧ୍ୟ । ତା ପାଇଁ ତେଣୁ ବଜାର ଲୋଡ଼ା । ବଜାରକୁ ନିଜ ଅଧୀନରେ ସବୁ ଦିନ ରଖିବାପାଇଁ ସୈନ୍ୟ ଲୋଡ଼ା...ଖାଲି ସେତିକି ନୁହେଁ ସେହି ବଜାର ଯେପରି ଚିରଦିନ ଅନୁନ୍ନତ ରହେ, ତା ପ୍ରତି ମଧ୍ୟ ଦୃଷ୍ଟିଦେବାକୁ ହେବ...ବୁଝିଲ ଏମିତି ଗୋଟାଏ ଖେଳ, ଗୋଲକ ଧନ୍ଦା...ହେଉ ମହାଯୁଦ୍ଧ..

—ଛାଡ଼ ସେ ସବୁ ବଡ଼ ବଡ଼ କଥା...ମୋ ମୁଣ୍ଡରେ ଏ ସବୁ ପଶେ ନାହିଁ । ଆମ ଦେଶର ମାଲ ବର୍ତ୍ତମାନ କୁଆଡ଼େ ଚାଲିଛି ..?

—ଆମ ଦେଶର ମାନ ଏ ପର୍ଯ୍ୟନ୍ତ ଠିକ୍ କରୁ ସୃଷ୍ଟି ହୋଇନାହିଁ ! ବିଦ୍ରୋହ ନ ହେଲେ ମାନ ଜନ୍ମ ହୁଏନାହିଁ···ବର୍ତ୍ତମାନ କେବଳ ଗୋଟିଏ ମାତ୍ର ମାନ ହେଉଛି ସ୍ୱାର୍ଥ । ଏଇ ସ୍ୱାର୍ଥପରତା ଯେତେବେଳେ ଚରମକୁ ଯିବ, ସେତେବେଳେ ବିଦ୍ରୋହ ସ୍ୱୟଂ ସ୍ଫୁର୍ତ୍ତ ହେବ···ତା ପରେ ଜନ୍ମ ନେବ ମାନ···

—କିନ୍ତୁ ନେତାମାନେ ଯେ ଏତେ ବକ୍ତୃତା ଦେଉଛନ୍ତି ? ଏତେ ଆଦର୍ଶ ଦେଉଛନ୍ତି ?

ପରଶୁରାମ ବାବୁ ହସି କହିଲେ, ଧନୀମାନଙ୍କର କଥା, ରାଜନୈତିକ ନେତାମାନଙ୍କର ଆଦର୍ଶ ଏବଂ ଅଫିସରେ ଉପରବାଲାମାନଙ୍କ ଆଶ୍ୱାସବାଣୀ — ଏ ତିନୋଟିରେ ଯେ ଭୁଲେ, ସେ ବଡ଼ ଖାଲରେ ପଡ଼େ ।

—ଅଚ୍ଛା ପରଶୁ, ଦିନେ କଅଣ ସବୁ ଲାଲ ହୋଇଯିବ ? ବୀରେନ୍ କୁନ କୁନ ପଚାରିଲା ।

—ଲାଲ ? ଓ, ବୁଝିଲି । ହୋଇ ପାରେ···ତେବେ ଲାଲ ରଙ୍ଗଧର ଆସ୍ତ୍ ଆସ୍ତ୍ ଆଉ କୌଣସି ରଙ୍ଗର ସ୍ୱପ୍ନ ମାତ୍ର ଅସି ପାରେ···ଉପର ରଙ୍ଗଟାରେ ସବୁବେଳେ ବିଶ୍ୱାସ କଲେ ଚଳେନାହିଁ···ନିର୍ମଳ ଧଳା ତଳେ ତ କଳା ଦେଖିବାକୁ ମିଳୁଚି ବର୍ତ୍ତମାନ । ହେଁ···ହେଁ···

—ହେଁଃ···ହେଁ···ଠିକ୍ କହୁଚୁ ଭାଇ । ସରକାର ଯଦି ମୁଠାଏ ଦୁ’ବେଳା ଖାଇବାକୁ ଦେବାକୁ ସକ୍ଷମ ହୁଅନ୍ତା, ଆଉ ପିନ୍ଧିବାକୁ ଏତିକି ତ···

—ସେ ବିଷୟରେ ଭାଇ ମୋର ମତ ହେଉଛି ସରକାରକୁ ଖାଲି ଦୋଷ ଦେଲେ ଚଳିବନାହିଁ । ସରକାର ତ ଖାଦ୍ୟ ଦ୍ରବ୍ୟ ପାଇଁ କମ୍ ଖର୍ଚ୍ଚ କରୁନାହିଁ··· ଦୋଷ କେଉଁଠି ରହୁଚି··· ଆମର ଅସାଧୁତା···ରକ୍ତର ଭିତରେ ଧର୍ମ ହେବାର ପ୍ରବୃତ୍ତି···ଅପରାଧ ପ୍ରବୃତ୍ତିର ବୃଦ୍ଧି···ତା ଛଡ଼ା ଜନସଂଖ୍ୟା ଯେଉଁ ହିସାବରେ ବଢ଼ିଚାଲେ, ତେବେ ଉପାୟ ନାହିଁ···ସବୁଆଡ଼େ ମନୁଷ୍ୟର ହୃଦୟ କାନ୍ଦ ଭୁଷୁଡ଼ି ପଡ଼ୁଚି । ସାମ୍ୟ, ଅର୍ଥନୈତିକ ସମତା, କେବଳ ଏଥିରୁ ଆମକୁ ଉଦ୍ଧାର କରି ପାରେ ।

ଘର ଭିତରୁ ଝିଅ କଣ୍ଠରେ ଶୁଭିଲା ରାଜମାତା ସରିଲା ? ଏଥର ଗୃହମାତା ଆଡ଼କୁ ଟିକିଏ ନଜର ଦିଅ ··ବାଇଗଣ ବାଇକୁ ଡାକ ଟିକିଏ ।

—ଯା ଖାଇ ଯା, ମୁଁ ଦାନ୍ତ ଘଷି ନାହିଁ···ଏ ବାଇଗଣ, ଟିଏ କେତେ?

—ଦଶ ଅଣା ।

ଦଶ ଅଣା ? କାହିଁକିରେ ବାପ···

ଚାଉଳ ତ ଟଙ୍କାକୁ ଦେଡ଼ ସେର ହେଲା···ଆମେତ ଫେର ବଞ୍ଚିବୁ ।

—ଆଜ୍ଞା ଆମେ ? ପାଞ୍ଚଅଣା ନବୁ ତ ଦେଇଯା ।

ପାଞ୍ଚଣା !! ଘର ଖାଇବା ବାଲା । ଟୋକେଇ ଧରି ସେ ଚାଲିଲା ।

—ଏଇ, କଅଣ କହିଲୁ, କଅଣ କହିଲୁ । ଘର ବଡ଼ି ବଡ଼ି କଥା କହୁଚୁ ଯେ ।

—କହିବି ନି । ଆଜ୍ଞା, ତୁମେ କହିବ ପାଞ୍ଚଣା···ଆମକୁ ଅପମାନ ନାହିଁ ଛବ ।

—ଆଜ୍ଞା ତୁ ଯା କହିବୁ ବେଦର ଗାର ?

—ପଇସାଏ ଅଧଲାଏ କମ କରିବ ସିନା···ଏକଦମ ଅଧେ । କେବେ ଖାଇଚ ?

—ଫେର କହୁଚୁ ଦେଖିବୁ···ପରଶୁରାମ ବାବୁ ମାରିବାକୁ ହାତ ଉଠାଇଲେ ।

—ଯା ଯା ରେ । ବାବୁ ଦେଖଉଛି···ଚୁଲି ଜଳୁନି ଘରେ ବାବୁ···

ଟୋକେଇ ଉଠାଇ ସେ ଚାଲିଗଲା ।

ରାଣୀ ଘର ଭିତରୁ ଡାକିଲା, ଶୁଣ ଆସ !

କ୍ରୋଧ, କ୍ଷୋଭ ଅପମାନରେ ନିର୍ବାକ୍ ହୋଇ ପରଶୁରାମ ବାବୁ କିଛିକ୍ଷଣ ସେଠି ଛିଡ଼ାହୋଇ ରହିଲେ । ସେ ଭାବିବାକୁ ଲାଗିଲେ···କ୍ଷମତା ! ଏଇ କଣ କ୍ଷମତା···ଯଦି ମୁଁ କ୍ଷମତା ପାଆନ୍ତି···ଏମାନଙ୍କୁ ନିଷ୍ପେଷିତ କରିବା ହିଁ ଉଚିତ··· ଭିତରକୁ ମୁହାଁ ହେଲେ···

ଆସିଲ, ଘରଭିତରୁ ଆହ୍ୱାନ ଉଚ୍ଚତର ହୋଇଉଠିଲା ।

ପରଶୁରାମ ବାବୁ ଫେରୁଥିଲେ । ଗୋଟିଏ ବଡ଼ ଉଦର ଓ ଦୁଇଟି ଶୁଷ୍କ ସ୍ତନ ଲଟକିଥିବା ଅସ୍ଥିଚର୍ମସାର ଗୋଟିଏ ଶବ ତାଙ୍କର ଦୃଷ୍ଟି ଆକର୍ଷଣ

ଲାଗେ । ପରଶୁରାମ ବାବୁ ଅବାକ୍ ହୋଇ ଛିଡ଼ା ହୋଇ ରହିଲେ । ଅର୍ଦ୍ଧନଗ୍ନ ଅସ୍ଥିଚର୍ମସାର ଏହି ନାରୀ...ଏହାର ସୃଷ୍ଟି କରିବାର ଅଧିକାରତ ଦୂରରେ ଥାଉ, ବଞ୍ଚିବାର କି ଅଧିକାର ଅଛି ? ଏଇ ପ୍ରଶ୍ନ ତାଙ୍କ ମନରେ ଆଜି ଗୋଟିଏ ପ୍ରବଳ ଝଡ଼ ଉଠାଇଲା...ସେମିତି କହିଲେ ମୋର କଅଣ ବଞ୍ଚିବାର ଅଧିକାର ଅଛି ? ପ୍ରତ୍ୟେକ ନିଜକୁ ଟିକିଏ ମାରିବାରୁ ସେ ପୁଣି ଭାବିଲେ ବଞ୍ଚିବାର ଅଧିକାର ବିବେଚନା କରିବା ପୂର୍ବରୁ ଜନ୍ମର ଦାୟିତ୍ୱଟା ତ ଦେଖିବାକୁ ହେବ...ସେଥିପାଇଁ ଦାୟୀ ମୁଁ ବା ସେ ନୁହେଁ...ନାରୀଟି ହାତ ବଢ଼ାଇ ସେମିତି ଛିଡ଼ା ହୋଇଥାଏ । —ଶୀତରେ ସେ କମ୍ପୁଛି, ଆଖିରୁ ପାଣି ବହିଯାଉଛି, ପିଲାଟିଏ ନିର୍ବିକାର ଯୋଗୀଙ୍କ ଭଳି ଦୁଧ ଖାଇ ଚାଲିଛି । ପରଶୁରାମ ବାବୁ ପାଦ ଚପି ଚପି ଘର ଭିତରକୁ ଆସିଲେ, ଟ୍ରଙ୍କ ଖୋଲି ନିଜର ଗୋଟିଏ ଲୁଗା ବାହାର କଲେ, ପକେଟରୁ ଗୋଟିଏ ଆଠଣି କାଢ଼ି ସେମିତି ପାଦ ଚପି ଚପି ଯାଇ ତାକୁ ଦେଇ ହାତଠାରି ଶୀଘ୍ର ଚାଲିଯିବାକୁ କହିଲେ ।

ଆସିଲ, ଟିକିଏ ଦୟାକର ବଜାରକୁ ଯାଅ, ନାରୀର କଣ୍ଠରେ କ୍ରୋଧ-ବିକୃତ ମିନତି ।

ପରଶୁରାମ ବାବୁଙ୍କ ମନେ ପଡ଼ିଗଲା ପଇସାବାଲା କଥା...'ତୁମ୍ଭ ଜନ୍ମ ମୋର ଦୁଇବେଳା' — ହାତ କଚମଚ କରି ସେ ଗାଳିଦେଲେ । ଛି କୁକୁରର କଅଣ ଗଲା ! ତାଙ୍କର ଅପମାନିତ ପୌରୁଷ ସ୍ତ୍ରୀକୁ ମୁହଁ ଦେଖାଇବାକୁ ଲଜ୍ଜା-ବୋଧ କଲା । ଝଣ୍ଡ୍ରା ବଡ଼ ଖଣ୍ଡେ ଉଠାଇ ସେ ସିଧା ପାଇଖାନାକୁ ଗଲେ । ଏଇଟା ତାଙ୍କର ଦୁର୍ଗ । ସବୁ ଚିନ୍ତା ସେ ଏଇଠି କରନ୍ତି ମଧ୍ୟ । ବିଡ଼ି ଟାଣୁ ଟାଣୁ ସେ ଭାବିବାକୁ ଲାଗିଲେ —'ନାଃ ଅର୍ଥର ଦରକାର...ତା ନ ହେଲେ ମୋତେ ଜଣେ ସାମାନ୍ୟ ପଇସାବାଲା...ମନେପଡ଼ିବା ମାତ୍ରେକେ ତାଙ୍କର ସୁପ୍ତ କ୍ରୋଧ ଜାଗି ଉଠିଲା ।...ନା, ଦମନ...ଚାଲୁ ଲୁଟ...ଖୁନ, ହତ୍ୟା, ମୂର୍ଚ୍ଛା, ସାଧୁ, ଭଦ୍ରଶ୍ରେଣୀ ସମସ୍ତଙ୍କ ଉପରେ ଚାଲୁଥାଉ...ଯେଉଁମାନଙ୍କର ବଞ୍ଚିବାର ହକ୍ ଅଛି, କେବଳ ସେହିମାନେ ହିଁ ବଞ୍ଚନ୍ତୁ ।

—କଅଣ ଶୋଇଲ କି ସେଠି ? ଟଙ୍କାଏ ଦେବ ? ଟିକିଏ ଦୟାକରି ମାର୍କେଟ ଯାଅ...କିଛି ନାହିଁ ଘରେ ।

ପରଶୁରାମ ବାବୁ କିଛି ଉତ୍ତର ନ ଦେଇ ସେମିତି ବସି ରହି ଭାବିବାକୁ ଲାଗିଲେ···ଖାଲି ନାହିଁ···ନାହିଁ···ନାହିଁ···ଦାମ୍ପତ୍ୟର ନାରୀ କଏ କୁହେ ନାରୀ କୋମଳ···, ଦୟା କ୍ଷମା ତାଙ୍କ ଚରିତ୍ରରେ···ନିର୍ମମ ଏମାନେ । ପଳିବା ସ୍ପୃହା ଏମାନଙ୍କ ରକ୍ତରେ ଅଛି କିନା ସେଥିପାଇଁ ଏମାନେ ବାହାରକୁ ଯେମିତି ସରଳ, ଭିତରକୁ ସେମିତି ଜଟିଳ, ବାହାରକୁ ଯେମିତି କୋମଳ, ଭିତରେ ସେମିତି ନିର୍ମମ, କଠିନ । ଓଃ, କି ଦାମ୍ପତ୍ୟରେ ଚତୁର ମଣିଷ ଏମାନଙ୍କୁ ମୁହଁ ଦବାର ନୁହଁ ସତ···ନ ଜାଣି କେଉଁଣ ପୂର୍ବକାଳର ଋଷିମାନେ କହିଯାଇଛନ୍ତି

—ଆସିଲ ଅ ଅ ଽ

ହିଲ ଅ ଅ ଅ, ପରଶୁରାମ ବାବୁ ବାହାରେ ଆସିଲେ । ଶୀଘ୍ର ଦାନ୍ତ ଘଷି ଅଣ୍ଟି ଧନ ସେ ବଜାରକୁ ବାହାରିଲେ ।

କିନ୍ତୁ ବଜାରରୁ ପୁଣି ତାଙ୍କୁ ଫେରିବାକୁ ହେଲା । ତାଙ୍କର ଖିଆଲ ନଥିଲା ଯେ ବଜାର ପଇସା ସେ ଦାନ କରି ଦେଇଛନ୍ତି । ଭୟ ଓ ଦୁର୍ଭାବନାରେ ସେ କିଛିକ୍ଷଣ ମାରବଟରେ ଦାଣ୍ଡ ଦୁଆରମୁହଁରେ ଛିଡ଼ାହୋଇ ରହିଲେ । ସାହସ ବାନ୍ଧି ସେ ଘର ଭିତରକୁ ପଶି ପାଟି କରି କହିଲେ 'ଅଛା କେମିତି ତୁମେ··· ବଜାର ପଇସାଟା ମନରେ କରି ଦେଇପାରିଲ ନାହିଁ···କେତେ ସମୟ ନଷ୍ଟ ହେଲା ମୋର ।

—ଇସ୍ ସମୟ ନଷ୍ଟ ! ଫେରି ତୁମର !! ହଁ, ଘରଯାକର ଚିନ୍ତା ଯେତେବେଳେ କରିବାକୁ ହେଉଛି ତୁମକୁ, ସମୟର ଦାମ୍ ତୁମ ପାଖରେ ଅନେକ; କିନ୍ତୁ ଦାନ କରିବାର ପୁଣ୍ୟ ତୁମର, ଅଜ ମୁଁ ପାପ କରିଛି, ଏ ସଂସାର ଚଳାଇଛି ମୁଁ । ତା ନ ହେଲେ ମୋତେ ଲୁଚାଇ ଏମିତି ଦାନ କରନ୍ତ ନାହିଁକି, ପୁଣି ଅଜକାର ବଜାର ଖର୍ଚ୍ଚ ଯାକ । ପୁଣ୍ୟ ତ ତୁମେ ନେଲ, ଏଇକ୍ଷଣି ପୁଣି ବଜାର କେମିତି ହେବ ସେ ଚିନ୍ତାରେ ମୁଁ ମରେ, ତୁମର ଯାଏ କେତେ, ଆସେ କେତେ ।

ପରଶୁରାମ ବାବୁ କାଠପରି କିଛିକ୍ଷଣ ଛିଡ଼ାହୋଇ ରହିଲେ । ଇସ, ସବୁ ଏମାନଙ୍କ ଦୃଷ୍ଟିରେ ପଡ଼େ । ପରଶୁରାମଙ୍କ ତଳିପାରୁ ତାଳୁଯାଏ ଜଳିଗଲା; କିନ୍ତୁ ପୁଣି ଭାବିଲେ, ଗରିବ କ'ଣ ଜଳିବ ସବୁ ରସ ଶୁଖାଇ ଦେଇଛି ତା'ର ।

ହସି ହସି ରାଣୀ ପାଖକୁ ଲାଗି ଆସି ତାଙ୍କ ଚିବୁକରେ ହାତ ମାରି କହିଲେ, ଛିଃ ରାଣୀ, ସକାଳୁ କନ୍ଦାଅ କରନା । ତୁମକୁ ମାଗିଥିଲେ ତୁମେ ଅତି କଷ୍ଟରେ ପଇସା ଟିଏ ଦେଇଥାନ୍ତ । ମୋ ଦୋଷ ହୋଇଛି ମୁଁ ମାଗୁଛି । ଯଦି ଜାଣି ପାରିଥିଲ, ତେବେ ବଜାରକୁ ଯିବା ଆଗରୁ ଦେଇଥା ନେଲ ନାହିଁ ମୋଠୁ, ମିଛରେ ମୋ ସମୟ···

ରାଣୀ କିନ୍ତୁ ଗର୍ଜନ କରି କହିଲେ, ଦରକାର ହେଲେ ସ୍ୱରଥର ଯିବ ବଜାର, ଆରେ କଅଣ···

ଅସହାୟ ସ୍ୱରରେ ପରଶୁରାମ ବାବୁ ପଚାରିଲେ, ତାହେଲେ, ଏଇଆ ମୋ କାମ ?

—ଆଉ କି କାମ ଅଛି ତୁମର···ଖାଲି ବାଜେ ବକିବା ଛଡ଼ା କଅଣ କରି ପକାଉଛ ତୁମେ ବାହାରେ ? ଯାଅ, ବେଶି ବକ ବକ ହୁଅନା ।

ପରଶୁରାମ ବାବୁ ମନ ଦୁଃଖରେ ପଇସା ନେଇ ଚାଲିଗଲେ । ବଜାର ପାଇଁ ଆଠଅଣା ମାତ୍ର ପଇସା । ସେଥିରେ ମଛ, ପିଆଜ, ଅଳୁ ଅଧା ପାବଲିପୁ ରଜ ଆଣିବାର ଚାଲିଜା । ପ୍ରତ୍ୟେକରୁ ପଇସାଟିଏ ଦ'ପଇସା କମାଇବା ପାଇଁ ଅଧଘଣ୍ଟାଏ ମର୍ମାନ୍ତିକ ଯୁଦ୍ଧ କରି ସେ ଫେରିଲେ ପ୍ରାୟ ଦୁଇଘଣ୍ଟା ପରେ । ଦୁଲ୍ କରି ଥଳିଆ ରଖିଦେଇ ସେ ତେଲ ଢଗାର ମାରି ଗାଧୋଇବାକୁ ଦୌଡ଼ିଲେ । ଶୀତରେ ପାଣି ଶୁଙ୍ଘିବାନା ଝଡ଼ରେ ଲାଗିଲା । ଖର୍ଚ୍ଚରେ ଛୁଡ଼ା ହୋଇ ଆରାମ କରିବା ବେଳ ନାହିଁ । ଦୁଇ ଲୋଟା ପାଣି ଢାଳି ହୋଇ ସେ ଲୁଗା ପିନ୍ଧି ପିଢ଼ା ପକାଇ ବସିଗଲେ ଦୁଇ ମିନିଟ ଭିତରେ ।

ରାଣୀ ଖାଲି ଭାତ ଓ ଡାଲି ଆଣି ସାମନାରେ ଥୋଇ ଦେଲେ । ପରଶୁରାମ ବାବୁଙ୍କ ଲୋକ ନମିଷରେ ଲୁଚିଗଲା ଖାଦ୍ୟ ସାମଗ୍ରୀ ଦେଖି; କିନ୍ତୁ ନଖାଇ ଉପାୟ ନାହିଁ । କିଛି କହିବାର ମଧ୍ୟ ଉପାୟ ନାହିଁ । ମାରବରେ ସେତକ ଯଥାସମ୍ଭବ ଜଲଦିକୁ ଏଡ଼ାଇ ତଳକୁ ଠେଲିଦେଇ ସାଇକଲ ବାହାର କଲେ ।

ଟଙ୍କା ସରିଲାଣି···ଯୋଡ଼ାଏ ଟଙ୍କା ଆଣିବ, ରାଣୀ ଡାକ କହିଲେ ଘରଭିତରୁ ।

—ପାଞ୍ଚ ତାରିଖରୁ ଟଙ୍କା ଶେଷ ତୁମର ? ମାରିବ କି ମୋତେ !

—ହିସାବ ନିଅ, ସବୁତ ଲେଖା ଅଛି ।

—ହୁଁ, ହିସାବ, ହିସାବ...

—"ବାପା, ମହଲ ଆସିବ" ମିନ କହିଲା।

ଦଶରଗମ ଠକ ଠକ୍ ବାହାରିଲେ।

ଦ୍ୱାରକାପୁରେ ସ୍ୱବଗ୍ରା—ଆ—ଆ—ହି

ସକଳ ଯାଦବ ବସା—ଆ—ଆ—ଇ

ଯୋଗୀ ପ୍ରତିରୋଧ କରି ଛିଡ଼ାହେଲା।

—ଯାବେ, ଦ୍ୱାରକାପୁରେ ସ୍ୱବଗ୍ରାହ୍ମ କଅଣ ଜାଣେ କେତେ ବାପର ଇଅଣ ଟଙ୍କା, ମୋର କଅଣ ଗଲା ? ଡୁ C ।

—ବାବୁ, ଭଗବାନ୍‌ଙ୍କ ନାଁରେ ଏମିତି କେଉଁଠି ?

—ଭଗବାନ୍ ? କି ଭଗବାନ ବେ...ଯା...ଟା...

ସାଇକେଲରେ ଉଠିବା ସାଙ୍ଗେ ସାଙ୍ଗେ ଘଣ୍ଟାକୁ ଜୋଡ଼ିଏ ମାଇଲ ବେଗରେ ସାଇକେଲ ଚଳାଇଲେ। ଆଜି ମନେ ମନେ ନିଜକୁ କହିଲେ, ଚଳାବେ ଜୋରରେ...

—ହଁସ, ପଟୋ ସୁନଶ, ଅଫିସ ଘଡ଼ିକୁ ଅନାଇ ସେ ନିଜ ଚୌକିରେ ବସିଲେ।

ସାହେବ ସଲାମ ଦେଇଗଲେ, ଚପରାଶି ଶୁଭ ସମ୍ବାଦଟି ଦେଇ ଛିଡ଼ାହେଲା।

ଅଫିସ ଆସିବା ସାଙ୍ଗେ ସାଙ୍ଗେ 'ସଲାମ'ର ଅର୍ଥ ସେ ଜାଣନ୍ତି। ଟିକିଏ ହସି, ସଲାମ ସାଦରେ ଗ୍ରହଣ କଲେ—ହଁ, କିନ୍ତୁ ସେ ଉଠିଲେ। ଘୁଣ୍ଟରୁ ତାଙ୍କର ଅଡ଼ଣା ଖସି ପଡ଼ିଲା।

ପଟା ଠେଲି ସେ ଧୀରେ ଟେବୁଲ ପାଖରେ ଛିଡ଼ାହେଲେ। ଅପରାଧୀ ଭଳି ତଳକୁ ମୁଣ୍ଡ ପୋତି। ଗାଳିକୁ ସେତେ ଡରନାହିଁ ନୂଆ ସାହେବଙ୍କ ବକ୍ତୃତା ପାଇଁ ସେତିକି ଡର ତାଙ୍କର। ଦେଶ, କର୍ତ୍ତବ୍ୟ, ତ୍ୟାଗ, ଶୃଙ୍ଖଳା, ସରଳ ଜୀବନଯାପନ, ଉଚ୍ଚ ଚିନ୍ତା ଆଦି ବିଷୟରେ ଅଧଘଣ୍ଟାଏ ଧରି ଜର୍ମାନ ବକ୍ତୃତା ତାଙ୍କୁ ମର୍ମାହତ ଓ ପରିତାପ କରିଦିଏ।

ବର୍ତ୍ତମାନ ଘଣ୍ଟାରେ କେତେଟା ବାଜିଲା ? ନରସିଂହ ଗମ୍ଭୀର ସ୍ୱରରେ ହିସାବ ପ୍ରଶ୍ନ କଲେ ।

ଆଜ୍ଞା, ପରଶୁରାମ ବାବୁ କମ୍ପିତ ସ୍ୱରରେ ବିଳମ୍ବ ହେବାର କାରଣ କହିବାକୁ ଯାଉଥିଲେ ।

ମୁଁ ଗଳ୍ପ ଶୁଣିବାକୁ ଚାହେଁନା । ସେଇ ତ ଏମିତି ଗୋଟିଏ ଗଳ୍ପ କହନ୍ତି ! ଯଦ୍ୱା ପରଶୁରାମ ତାର ଉତ୍ତର ଦେଇପାରନ୍ତି । ଘଣ୍ଟାକୁ ଅନାଇ କହନ୍ତୁ ବର୍ତ୍ତମାନ କେତେଟା ବାଜିଛି । ହାକିମଙ୍କ ର ଧୀର ଅଥଚ ଦୃଢ଼ ସ୍ୱର ।

କଏ ଦେଇଛି ଏ ଦୃଢ଼ତା ? ବାଲ୍ୟକାଳରୁ ଅର୍ଜିଥିବା ଧର୍ମଧନ ? ପରଶୁରାମ ହସନ୍ତି । ସମୟ ତାଙ୍କୁ ଭଲଭାବରେ ଜଣା ଅଛି; ତଥାପି ଘଣ୍ଟାକୁ କିଛିକ୍ଷଣ ଚାହିଁ ସେ କହିଲେ 'ଦଶଟା ବାଜିଲାଣି ।'

—ଅଫିସ ଆରମ୍ଭ କେତେବେଳେ ?

—ସାଢ଼େ ଦଶଟା···କିନ୍ତୁ···

—ଚୁପ୍ । ତା' ହେଲେ କେତେ ଡେରି କରି ଆସିଛନ୍ତି ?

ଶୈଶବରେ ଏ ପ୍ରଶ୍ନର ଉତ୍ତର ସାଙ୍ଗେ ସାଙ୍ଗେ ଦେଇଥିଲେ ସେ ପ୍ରଶଂସା ପାଇ ଆସିଛନ୍ତି; କିନ୍ତୁ ଏ ବୟସରେ ଉତ୍ତର ଦେବାକୁ ଯାଇ ତାଙ୍କର ଦେହ ଥରି ଉଠିଲା । ଏ ଅପମାନ ଏଡ଼ିବାକୁ କୌଣସି ଉପାୟ ନ ପାଇ ସେ ନୀରବରେ ଛିଡ଼ା ହୋଇ ରହିଲେ ସାହେବଙ୍କ ମୁହଁକୁ ବଲ ବଲ କରି ଅନାଇ ।

—ଆପଣଙ୍କ ମୁଣ୍ଡରେ କଅଣ ସାମାନ୍ୟ ବୁଦ୍ଧି ନାହିଁ···ଏଇ ସାମାନ୍ୟ ମନସାଙ୍କ ଖଣ୍ଡେ କରିପାରୁ ନାହାନ୍ତି !!

ପରଶୁରାମ ବାବୁ ମନେ ମନେ ଉତ୍ତରଦେଲେ ଅଛି ଏବଂ ପରକୁ ଦେବାକୁ ବଳକା ବୁଦ୍ଧି ମଧ୍ୟ ଅଛି; କିନ୍ତୁ ମୁହଁରେ ସେ ଉତ୍ତର ଦେଲେ, ଆଜ୍ଞା, ବାର ମିନିଟ ।

—କାହିଁକି ? ଏମିତି ଡେରିକୁ ଠିକେଇ କଅଣ ଜୀବନ କଟାଇ ଦେବେ ?

ପରଶୁରାମ ବୁଝିପାରିଲେ ଏଥର ବକ୍ତୃତା ଆରମ୍ଭ ହେବାର ସୁବିଧା ଆସିଗଲା । ବକ୍ତୃତା ଶୁଣିବାକୁ ତାଙ୍କର ଭୟ ଓ ଘୃଣା ଉଭୟ ହୁଏ । ଏଡ଼ିବାପାଇଁ ସେ କହିଲେ, ଆଜ୍ଞା, ପିତା ପୁତ୍ରର ସବୁ ଦୋଷ କ୍ଷମା କରେ । ସ୍ୱର ପ୍ରକାର ପିତା

ମଧ୍ୟରୁ ଅନ୍ନଦାତା ପିତା ହେବ ପ୍ରଧାନ । ଆପଣ ଅନ୍ନଦାତା, ଖାଲି ମୋର ନୁହେଁ, ଅନେକଙ୍କର । ତେଣୁ ବିଷୟରେ ମୋର ଜ୍ଞାନ ନାହିଁ । ମୋର ସ୍ତ୍ରୀ ଆପଣଙ୍କ ଦୟା ବିଷୟରେ ଅଗାଧ ବିଶ୍ୱାସ ···ସେ···

ସାହେବଙ୍କ ମୁହଁରୁ କ୍ରୋଧର ଭାବ ଲୁଚିଗଲା । ସେ ସେହିପରି ଚାଳକୁ ମୁହଁ ପୋଛି କହିଲେ, ଯାଆନ୍ତୁ ଏଥର ଠିକ୍ ସମୟରେ ଆସିବାପାଇଁ ଚେଷ୍ଟା କରିବେ ।

ପରଶୁରାମ ବାବୁ ଆସି ନିଜ ଚୌକିରେ ଚାଳକୁ ମୁହଁ ପୋଛି ବସିଲେ ।

କଣହୋ, ଗାଳି ଖାଇ ଆସିଲ ? ଟାଇପ ହରିବାବୁ ପଚାରିଲେ ।

ନା, ଗାଳି ହୋଇ ଥାଆନ୍ତା; କିନ୍ତୁ ଝୁଟରେ ଭୁଲାଇ ଦେଲି । ପରଶୁରାମ ବାବୁ କଥାଟା ଦାର୍ଶନିକ ଭଳି କହିଲେ ।

—ଖୋସାମଦରେ ତ ତୁମେ ପାଶ କରିଛ ଗୋଟିଏ କଳା । ମୁଁ ପାରେ ନା କିନ୍ତୁ; କିନ୍ତୁ ଏଇ ଗୁଣଟା ହାସଲ କରିବା ଆଜିକାଲି ଦରକାର ।

—ସମସ୍ତେ କହନ୍ତି, ମୁଁ ଶୁଣିଚି, ମୁଁ ଖୋସାମଦ ପାରେନାହିଁ···ମୁହେଁ ମୁହେଁ ନ୍ୟାଯ୍ୟ କଥା କହି ପକାଏ; କିନ୍ତୁ ସମସ୍ତେ ଖୋସାମଦ କରନ୍ତି ମୁଁ ଜାଣେ । ନ କରି ଉପାୟ ନାହିଁ ।

—କାହିଁକି ? ଛିଃ···ନିଜସ୍ୱ ନାହିଁ

—ନା, ଅର୍ଥ ନ ଥିଲେ···

—ଖୋସାମଦ କରିବାକୁ ହେବ ?

—ଆରେ, ଏଥିରେ ଦୁଃଖିତ ହେବାର କଅଣ ଅଛି ? ଆମେ ହେଲୁ ବେଦର ଋଷି । ଅଗ୍ନି ସ୍ତୁତି, ବରୁଣ ସ୍ତୁତି, ଇନ୍ଦ୍ର ସ୍ତୁତି, ଏମିତିକି ଉଷା ଦେବୀ ସ୍ତୁତି, ଯାହାକୁ ଯେତେବେଳେ ଖୋସାମଦ କରିବା ଦରକାର, ଏକଦମ୍ ତୁଣ୍ଡାନ୍ତ ଖୋସାମଦ କରିବୁ···

—ଧନ ପାଇଁ ? ଛିଃ—

—ଆରେ, ଶୁଣ୍ ବେଦର ଅଜୀଗର୍ତ୍ତଙ୍କ ପୁତ୍ର ଶୁନଃଶେଫ କହୁଚନ୍ତି, ପକ୍ଷୀମାନେ ଯେପରି ନିଜର ନିବାସ ସ୍ଥାନକୁ ଧାବମାନ ହୁଅନ୍ତି, ମୋର କ୍ରୋଧ

ବଣିକ ଶିଳ୍ପୀ ସମୂହ ସେହିପରି ଧନପ୍ରାପ୍ତି ପାଇଁ ଧାବିତ ହେଉଅଛନ୍ତି । ଅତଏବ ହେ ବରୁଣ ! ମୋତେ ଧନ ଦିଅ···ସ୍ୱଗିଲେ ଚଳୁନାହିଁ ।

—ବେଦରେ ଯେଉଁ ଧନ କଥା କହୁଛନ୍ତି, ସେ ଦୁନିଆର ଏଇ ଦୁଷ୍ଟ ଧନ ନୁହେଁ—'ବାଲ୍ୟକାଳରୁ ଧର୍ମ ଧନ ମୁଁ ସଞ୍ଚୟ ଏ ଜୀବନ ଅନିଶ୍ଚିତ', କେଜାଣି କାହାର ଆଜି ମୃତ୍ୟୁ କାଳ ହୋଇଯିବ ଉପସ୍ଥିତ, — ହରବାବୁ କହିଲେ ।

ପରଶୁରାମ ବାବୁ ହସି ହସି କହିଲେ, କେଜାଣି କାହାର ଆଜି ମୃତ୍ୟୁ କାଳ ହୋଇଯିବ ଉପସ୍ଥିତ ବୋଲି ଧର୍ମ ଧନ ଲୋଡ଼ା ନୁହେଁ ଭାଇ ! ବ୍ୟାଙ୍କର କର୍ତ୍ତା ମାନଙ୍କ ସଙ୍ଗେ ଯଥାସାଧ୍ୟ ଗୋଟିଏ ଜୀବନ ବୀମା କରି ମାସକୁ ମାସ ପ୍ରିମିୟମ୍ ଦେଇଯିବା ଉଚିତ । ଗୀତାର, ବେଦର, ଉପନିଷଦର ସବୁ କାଳେ ଯେ ଲମ୍ବାଲମ୍ବା ଛଟ କରି ଲକ୍ଷ କରିଣ । ସାର କଥା ବେଦଗାୟକ ଖାଲି ମୋତେ ଧନ ଦିଅ, ମୋ ଶତ୍ରୁକୁ ମାର ।

—ହେଲେଇ ବା । ଧନ କଅଣ ସବୁ, ମାନ ସମ୍ମାନ ନାହିଁ । ସେ ଦିନ ବିଶ୍ୱନାଥନ୍‌ର କଅଣ ହେଲା···ଆମ ନୂଆ କିରାଣୀ ବିଶ୍ୱନାଥନ୍ । ଜାଣି ନା କି ? ଶୁଣ ତେବେ । ବିଶ୍ୱନାଥନ୍ ଭଦ୍ରୁଆ ହେଲେ କଅଣ ହେବ, ପେଣ୍ଟ କୋଟ୍ ପିନ୍ଧି ସ୍ମାର୍ଟ୍ ଦିଶିବାକୁ ଟିକିଏ ଚେଷ୍ଟା କରେ । ପଅର ଦିନ ସେ ଧଳା ପେଣ୍ଟ ଉପରେ କଳା କୋଟ ପିନ୍ଧି ଆସିଥିଲା । ସାହେବ ସେ ଦିନ ପାଞ୍ଚଟା ସାଙ୍ଗେ ସାଙ୍ଗେ ଯେଉଁ ଫାଇଲ୍ ମଗାଇ ପଠାଇଲେ ସେ ଫାଇଲ୍ ବିଶ୍ୱନାଥନ୍ କରେ । ସାହେବଙ୍କର ଆମ ଦେଶୀ କିରାଣୀଙ୍କ ପ୍ରତି ଯେଉଁ ଘୃଣା ତ ଜାଣ । ସେଦିନ ଆମେ ବିଶ୍ୱନାଥନ୍‌କୁ ଠେଲି-ଦେଲୁ ସାହେବ ପାଖକୁ । ଉତ୍ତାପର ବଢ଼ିଗଲା । ସାହେବ ତାକୁ ଆଗରୁ କେବେ ଦେଖିନାହାନ୍ତି । ବିଶ୍ୱନାଥନ୍‌ର ଚେହେରା ତ ସୁନ୍ଦରିଆ, ପିନ୍ଧିଛି ଓକିଲଙ୍କ ଭଳି ପୋଷାକ । ସାହେବ ତାକୁ ଦେଖି କହିଲେ ବସନ୍ତୁ ବସନ୍ତୁ, ମୁଁ ଆପଣଙ୍କୁ କି ସାହାଯ୍ୟ କରିପାରେ । ବିଶ୍ୱନାଥନ୍ ଆତୁର ଭୟପାଇ ଚୌକିରେ ବସି ଫାଇଲଟି ଧୀରେ ବଢ଼ାଇଦେଲା । ସାହେବ ତାକୁ କିରାଣୀ ବୋଲି ଜାଣି ପାରି ପାଟି କରି କହିଲେ, ଉଠନ୍ତୁ, ଉଠନ୍ତୁ ଗେଟ୍, ଗେଟ୍ । ବିଶ୍ୱନାଥନ୍ ବାପୁଡ଼ା କାନ୍ଦୁଣୁ ମାନ୍ଦୁଣୁ ହୋଇ ଫେରିଲା । ସେ ଆଉ ପେଣ୍ଟ କୋଟ ପିନ୍ଧୁନାହିଁ ।

ସମସ୍ତେ ହସି ଉଠିଲେ । ପରଶୁରାମ ବାବୁ ତଳକୁ ମୁହଁ ପୋତି କରି ରହିଲେ । ମୁହଁରେ 'ଅର୍ଥ, ଅର୍ଥ,' କହିଲେ ମଧ୍ୟ ଏ ଖୋସାମଦ ପାଇଁ ନିଜ ଉପରେ ତାଙ୍କର ଘୃଣାହେଲା ଏ ମାତ୍ରାପାଇଁ । ଖଣ୍ଡେ କାଗଜ ଟାଣି ଆଣି ସେ ଇସ୍ତଫା ପତ୍ର ଲେଖିବାକୁ ବସିଲେ । ଆଖି ଆଗରେ ଭାସିଗଲା ତାଙ୍କର ଜନ, ଜନ, ମିନର ଡାଇଭ୍ସ୍ ଇଣ୍ଡିକ୍ସ କଙ୍କାଳ, ସନ୍ତାନର ସେଇ ଭୁଷୁଡ଼ ଭଳି । କାଗଜଟି ଚିରି ଚିରି କରି ଫିଙ୍ଗିଦେଇ ସେ କାମରେ ମନଦେଲେ । ତଳକୁ ମୁହଁ ପୋତି ସେ କାମ କରି ଚାଲିଲେ ।

ମୁହଁ ଯେତେବେଳେ ଉଠେଇଲେ ସେତେବେଳକୁ ଘଣ୍ଟାରେ ଢଂ ଢଂ ପାଞ୍ଚଟା ବାଜିଲା ।

—ସାହେବ ଗଲେଣି ?

—ଯିବାକୁ ଉଠୁଛନ୍ତି ।

ସାହେବଙ୍କ ମଟର ଭର୍ ର୍ କରି ଚାଲିଗଲା ।

ପରଶୁରାମ ବାବୁଙ୍କ ମନେ ପଡ଼ିଗଲା ମଟର କଥା । ଆଜି ଗୋଟିଏ ମଟର ନହେଲେ ମିନା ରଖିବନି । ଦୁଇମାସ ହେଲା ସେ ନିଜ ମଟର ପାଇଁ କାନ୍ଦୁ ଆସିଛି ।

ସାଇକଲ୍ ଧରି ସେ ବାହାରି ପଡ଼ିଲେ ।

ଏଇ ମଟରଟା ଦାମ୍ କେତେ ?, ଗୋଟିଏ ଦୋକାନକୁ ଯାଇ ସେ ପଚାରିଲେ ।

—ସାଢ଼େ ଚାରିଟଙ୍କା ।

—ଏତେ !! ଆଚ୍ଛା ଏଇଟା ଦାମ ?

—ପାଞ୍ଚ ଟଙ୍କା ।

—ବାପରେ ! ଆଚ୍ଛା ଏଟା ଦାମ୍ ।

—ସେଟା ଆପଣ କିଣି ପାରିବେ ନାହିଁ ।

—ହଉ; କହନ୍ତୁ ଶୁଣେ ।

—ଦଶ ଟୋଟି ମୁଦ୍ରା, ଦୋକାନୀ କହିଲା ।

ମଟର ପରେ ମଟର ପରଶୁରାମ ବାବୁ ଦେଖି ଚାଲିଲେ । ମଟର ଯେଠି ଗଦା ହୋଇଗଲା । ଦୋକାନୀର ବିରକ୍ତି କ୍ରମେ କ୍ରମେ ବଢ଼ିବାକୁ ଲାଗିଲା ।

—ଅଚ୍ଛା ଦୟାକରି ସେଇଟା ଦେଖାନ୍ତୁତ… ଟିକଏ ଦୟାକରି…

—ଆପଣ ନେବେ ନାହିଁ ଜାଣେ… ତାହିଁକି ମିଛରେ…

—ନ ନେଲେ ବି ଗରାଖକୁ ଆପଣ ଦେଖାଇବା ଉଚିତ ।

ଦୋକାନୀ ବିରକ୍ତ ହୋଇ ଚାଲିଗଲା ମୋଟର ଆଣିବାକୁ । ସିଡ଼ିରେ ଉଠି ଆଲମାରି ଉପରୁ ମଟରଟି ଆଣିବା ଭିତରେ ପରଶୁରାମ ବାବୁ ଗୋଟିଏ ସାନ ମଟର ଜାମା ତଳେ ଲୁଚାଇଦେଲେ । ଦୋକାନୀ ମଟରଟି ଆଣି ସାମନାରେ ଥୋଇଲା ।

—କେତେ ଦାମ୍ ?

—ବାର ଟଙ୍କା ଦଶଅଣା ।

ମୋଟରଟି କିଛିକ୍ଷଣ ଏ ପାଖ ସେ ପାଖ କରି ଦେଖି ପରଶୁରାମ ବାବୁ କହିଲେ, ଏଇଟି ମୋର ପସନ୍ଦ ହୋଇଛି; କିନ୍ତୁ ମୋ ପାଖରେ ଏହିକ୍ଷଣି ଏତେ ଟଙ୍କା ନାହିଁ । କିଛିକ୍ଷଣ ପରେ ମୁଁ ନେଇଯିବି । ନା, ନା, ଏକୁ ଅଲଗା ରଖନ୍ତୁ; ଲୁଚାଇ ଅଲଗା ରଖନ୍ତୁ; ଆଉ କେହି ନେଇଯିବେ । ନମସ୍କାର ।

—ହୁଁଃ ଜାଣେ ଆପଣଙ୍କ ନବାବଥା, ଦୋକାନୀ ବିଦ୍ରୂପ ଭଙ୍ଗୀରେ କହିଲା ।

ପରଶୁରାମ ବାବୁ କିନ୍ତୁ ସବୁ ଅପମାନ ସହ୍ୟ କରିବାକୁ ବର୍ତ୍ତମାନ ପ୍ରସ୍ତୁତ । ସାଇକଲରେ ଉଠି ସେ ଦୌଡ଼ିଲେ ଘର ଆଡ଼କୁ ।

—ବାପା, ମୋଟର ଆଣିଚ, ମିନି ଦୌଡ଼ି ଆସିଲା ।

—ହେଁ, ହେଁ, ଏଇନେ ତ ମଟର ।

ମିନି ମୋଟରଟି ନେଇ ଦୌଡ଼ି ପଳାଇଲା । ପରଶୁରାମ ବାବୁ ତୃପ୍ତିର ସହିତ ତାକୁ ଅନାଇ ରହିଲେ ।

ବାନ ଦୌଡ଼ିଆସି ପଚାରିଲା, ମୋ ମେଜିକ୍ ଆଣିଚ ?

—ଭଲେ, ତୋର ପୁଣି କଣ ମେଜିକ୍ ?

—ସେଇ ଯେ ମୁଷା, ତଳେ ଥୋଇଦେଲେ ଆପେ ଆପେ ବୁଲୁଥାଏ ।

—ଓଃ, ହୋ, ବୁଝିଲି, ଫେରିବାଲାର ସ୍ୱର ଅନୁକରଣ କରି ସେ କହିଲେ, ଇଣ୍ଡିଆନ୍ ମେଜିକ୍, ଇଣ୍ଡିଆନ୍ ମେଜିକ୍, ନ ଖାତା ନ ପି'ତା, ଉମର ଭର ଚଲତା ।

ସୋ ମେଜିକ୍ ତ ଲେ ମା ଘ'ରେ ଘ'ରେ ମୁଁ ବି ।

ପରଶୁରାମ ବାବୁ ଆଣ୍ଠୁଇ ଦୁଇ ହାତ ତଳେ ଲଗାଇ ବାନ ଘରପଟେ ଥରେ ବୁଲି ଆସିଲେ । ବାନ ମୁଷା କଥା ଭୁଲି ଯାଇ ଆନନ୍ଦରେ ହାତ ତାଳି ମାରି ଖପ୍ କରି ବାପା ପିଠିରେ ଚଢ଼ି ବସିଲା ।

ରାଣୀ ଡାଲରେ ପାଣି ଆଣି ପରଶୁରାମ ବାବୁଙ୍କ ଗୋଡ଼ ଧୋଇ ଗାମୁଛାରେ ପୋଛି ଦେଲେ । ରାଣୀର ଏ ହଠାତ୍ ପରିବର୍ତ୍ତନରେ ପରଶୁରାମ ବାବୁ ଭିତରେ ଗୋଡ଼ ଟାଣି ଆଣୁଥିଲେ, କିନ୍ତୁ ପାରିଲେନାହିଁ । ଗରିବ ଭକ୍ତ ଭଳି ସେ ଗୋଡ଼ ବଢ଼ାଇ ଦେଲେ । ରାଣୀ ତାଙ୍କୁ ଖଟ ଉପରେ ବସାଇ କୋଳକୁ ଟାଣି ନେଲେ । ସକାଳେ ସେ ପରଶୁରାମ ବାବୁଙ୍କ ସ୍ତ୍ରୀ ଥିଲେ, ବର୍ତ୍ତମାନ ସେ ମା । ସକାଳୁ ତାଙ୍କ ମନଟା ଘାରି ହେଉଥିଲା···ବାରମ୍ବାର ସେ ଭାବୁଥିଲେ··· କାହିଁକି ମୁଁ ତାଙ୍କୁ କଟୁକଥା କୁହେ···ମାଇପି ଜାତି ସତେ ରାଗି···ଆଉ କହିବ ନାହିଁ··· ଏବେ ପରିଶ୍ରମର ଧନ ସବୁ ସେ ମୋ ପାଖେ ସନ୍ନ୍ୟାସୀ ଭଳି ଅଜାଡ଼ି ଦେଉଛନ୍ତି··· ଟିକିଏ କଥାରେ ମୁଁ ତାଙ୍କୁ ସୁଖ ଦେଇପାରୁ ନାହିଁ···

ବାନ ପାଖରେ ଆସି ଛିଡ଼ାହେଲା ।

—ଭଲେ ବାନ, ଏ ଜାମା ଚଳିବ କେମିତି ? ଆର ମାସରେ ଏତେ ଭଲ ଜାମା ପାଞ୍ଚ ଟଙ୍କା ଦେଇ କିଣି ଦେଉଛ । ଏ ଜାମାକୁ କାହିଁକି ପିନ୍ଧାଇଲ ତୁମେ, କେଉଁଠିକି ଗଲେ ଅଇଲେ ପିନ୍ଧାନ୍ତା ପିଲା ।

—ମୁଁ କଅଣ କରିବ । ସେଇ ଜାମା ପିନ୍ଧିବାକୁ ସେ ଆଜି ଅଳି ଲଗେଇଲା ପିନ୍ଧିବା ସାଙ୍ଗେ ସାଙ୍ଗେ ଜିଦ୍ ଅଡ଼ିଲା ।

—କହିଲ, ଚଳିଲ୍ କାହିଁକି ? , ପରଶୁରାମ ବାବୁ ରାଗରେ ମାରିବାକୁ ଉଠିଥିଲେ ।

ତନୁ ଘୁଞ୍ଚିଯାଇ କହିଲା, ମୁଁ କଅଣ କରିବ, ମୋ ପୁଅର ଜାମା ନାହିଁ । ଶୀତରେ ଥରୁଛି । ବାପା, ଏଇ କନାରେ ତା ଜାମା କଲେ କେମିତି ଦିଶିବ ତାକୁ ଦେଖିବ ?

ରାଣୀ ଓ ପରଶୁରାମ ବାବୁ ଦୁହେଁ ହସି ଉଠିଲେ ।

ଆସ ଖାଇବ, ରାଣୀ ପରଶୁରାମ ବାବୁଙ୍କ ହାତଧରି ଉଠାଇଲା ।

—ବୋଉ, ମୁଁ ଖାଇବ ବାପା ସାଙ୍ଗରେ,

—ମୁଁ ଖାଇବ ।

—ମୁଁ···ମୁଁ···ଖାଇବ···

ତନୁ, ମିନୁ, କନୁ ସମସ୍ୱରରେ ଚିତ୍କାରକରି ଉଠିଲେ ।

—ଆସ, ସଭିଏ ଆସ···

—ନା, ନା, ତୁମେ ଖାଇ ଯା ତୁମ ଥାଳିରେ ମୁଁ ତାଙ୍କୁ ଖୋଇଦେବି । ତୁମକୁ ଖାଇବାକୁ ଦେବେନି ସେମାନେ ।

ରାଣୀ ଆଜି ଅନେକ ପ୍ରକାରର ଖାଇବା ପ୍ରସ୍ତୁତ କରିଛି । ସଜ୍ଜିତ ନାନା ପ୍ରକାରର ଖାଦ୍ୟ ଦେଖି ପରଶୁରାମଙ୍କ ମୁହଁରୁ ଲାଳ ଝରିଆସିଲା । ଏତେ ପଇସା ଆସିଲା କୁଆଡ଼ୁ ପଚାରିବାକୁ ତାଙ୍କର ସାହସ ହେଲାନାହିଁ । ଦେଖାଯିବ ମାସ ଶେଷ ବେଳକୁ । ଖାଇବାବେଳେ ସେ ଚିନ୍ତାକରି ନଭି କଅଣ···। ନଅଣ୍ଡିଆ ଅଛ-କଲର ଏ ଗୋଟାଏ ପ୍ରଧାନ ଗୁଣ ବା ଦୋଷ ଯା କହନ୍ତୁ ।

ଆସରେ ପିଲେ···କିନ୍ତୁ ସେ ଆଉ ଜୋର କରି ଡାକିପାରିଲେ ନାହିଁ ।

—ନା, ଥାଅ ସବୁ । ବାପା ଖାଇ ଯାଆନ୍ତୁ, ତୁମ୍ଭେ ଖାଇବ ।

ନା ଆସନ୍ତୁ । ତେବେ ଏଗୁଡ଼ାକ ଖାଇଲେ ତାଙ୍କ ପେଟ ଖରାପ ହେବ । ହଉ ପରେ ତାଙ୍କୁ ଖୋଇଦେବି···

ପରଶୁରାମ ବାବୁ ପେଟେ ଖାଇ ନିଶ୍ଚିନ୍ତ ହୋଇ ଶୋଇଲେ । ସତ ବାରଟା । ପରଶୁରାମ ବାବୁଙ୍କର ନାଦ ଗର୍ଜିତ । ରାଣୀ ଭାବରେ ଶୋଇଛି । ଯେଉଁ

ଶାନ୍ତି ପରଶୁରାମ ବାବୁଙ୍କ ଆଖିକୁ ସବୁଠୁ ଭଲ ଲାଗେ ସେଇ ଶାନ୍ତି ଚିହ୍ନ ଲେଖାଇଛି । ଦୁଇ ଗୋଲ ସୁନ୍ଦର ପଡ଼ାଉଠାରେ ଘନ ଜଳନ୍ତ ଆହ୍ୱାନ । ପରଶୁରାମ ଏ ଆହ୍ୱାନର ଜବାବ ଦେବେ ନିଶ୍ଚୟ । ଜବାବ ପାଇ ରାଣୀର ବକ୍ଷ ଥରି ଉଠିଲା···

—ନା···ନା···ଥାଉ···ହେଇ ଝିଅ ଲୋଭାଇଚି ଦେଖିଲ ।

—ହୁଁ ଦେଖୁଚି ତ । କଣ କହୁଚ ତମେ ?

—ତାକୁ ଏଇ ପଞ୍ଚମୀଠୁଁ ମୋଟେ ଚଉଦ ମାସ ଟପିଲା ।

—ଆରେ ଯାଆମ, ଭଗବାନ ଜନମ ଦେଇଚନ୍ତି, ସେ ଚଳାଇବେ । ଆମର ସବୁ ଲାଭ କଅଣ !

ରାଣୀ ହାର ମାନିବାକୁ ବାଧ୍ୟ ହେଲା । ଝିଅ କାନ୍ଦି ଉଠିଲା । ରାଣୀ ତାକୁ ଖୁଆଇ ଦେବାକୁ ଗଲା । ପରଶୁରାମ ବାବୁ ଗଡ଼ିଯାଇ କହିଲେ, ଜାଣୁଆଉ ହେ···

ଉଠିଲା ବେଳକୁ ସୂର୍ଯ୍ୟଦେବ କମଳା ଶାଳ ଚୂଲିରୁ ଅର୍ଦ୍ଧ ନିର୍ଗତ ଛାଉଣି ଭଳି ଆକାଶରେ ଶୋଭା ପାଉଚନ୍ତି । ପୂର୍ବ ପଟ ଝରକା ଖୋଲି ଦେଇ ପରଶୁରାମ ବାବୁ ସୂର୍ଯ୍ୟଦେବଙ୍କୁ ନମସ୍କାର କରି କହିଲେ, ପ୍ରାତଃ ସମୁତ୍‌ଥାୟ ତବ ପ୍ରିୟାର୍ଥଂ ସଂସାର ଯାତ୍ରାମ୍ ଅନୁବର୍ତ୍ତୟିଷ୍ୟେ ।

ଶ୍ଳୋକଟି ଗାଇସାରିବା ପରେ କିନ୍ତୁ ତାଙ୍କର ଆଜି ମନେ ହେଲା···କସ୍ୟ ପ୍ରିୟାର୍ଥଂ ? କାହାର ତୁଷ୍ଟି ସାଧନ ପାଇଁ ?



# ଧଡ଼ିଭାଇ ସହିତ ଗୋଟିଏ ରାତ୍ରି

ବୈଜ୍ଞାନିକମାନେ କହନ୍ତି ଯେଉଁ ପଦାର୍ଥର ପରମାଣୁ ଗୁଡ଼ିକର ବୈଦ୍ୟୁତିକ ପ୍ରଭାବ ପରସ୍ପର ସହିତ ସଂଘର୍ଷିତ ହୁଅନ୍ତି, ସେହି ପଦାର୍ଥ ଦୃଢ଼ ଏବଂ ଯେଉଁ ପଦାର୍ଥର ପରମାଣୁଗୁଡ଼ିକର ବୈଦ୍ୟୁତିକ ପ୍ରଭାବ ମଧ୍ୟରେ ସେପରି ସଂଘର୍ଷ ନାହିଁ ତାହା ହୁଗୁଳା, ପାଣି, ବାଷ୍ପ ଆଦି ଯେମିତି। ଶିବନାରାୟଣ କର- ସମସ୍ତଙ୍କ ଧଡ଼ିଭାଇ—ହୁଗୁଳା ଚରିତ୍ରର ଲୋକ। କବୁସ୍ଥ ଏବଂ ସମାଜର କଡ଼ା ସମାଲୋଚକମାନେ କହନ୍ତି ଲଫଙ୍ଗା।

ମୋ ସହିତ ଧଡ଼ିଭାଇର ପରିଚୟ ଜୀବନର ଶୁଭମୁହୂର୍ତ୍ତରେ କି ଅଶୁଭ ମୁହୂର୍ତ୍ତରେ ହୋଇଥିଲା ତାହା ମୁଁ ବର୍ତ୍ତମାନ କହିପାରିବିନାହିଁ। ଚତୁର୍ଥାବସ୍ଥାରେ ପହଞ୍ଚି ଯେତେବେଳେ ପଛକୁ ଚାହିଁବାର ସମୟ ଆସିବ, ସେତେବେଳେ ମୋର ଜୀବନର ମୂଲ୍ୟ ମୁଁ ଦେବି, ବର୍ତ୍ତମାନ ଏହି ବୟସରେ କହିପାରୁନି। ବର୍ତ୍ତମାନ ଯାହାକୁ ମୁଁ 'ନିରର୍ଥକ', 'ନଷ୍ଟ' ଭାବୁଛି ସେତେବେଳେ ହୁଏତ ତାହା ଅର୍ଥପୂର୍ଣ୍ଣ ଓ ମୂଲ୍ୟବାନ ଦେଖାଯାଇ ପାରେ।

ବର୍ତ୍ତମାନ କିନ୍ତୁ ମୋତେ ଲାଗୁଛି ମୋର ଜୀବନ ନଷ୍ଟ ହୋଇଗଲା ଏବଂ ଏହି ନଷ୍ଟର କାରଣ ମୂଳତଃ ଧଡ଼ିଭାଇ। ବୟସରେ ସେ ମୋଠୁ ବଡ଼। ଗାଁ ମାଇନର ସ୍କୁଲରୁ ଆସି ଯେଉଁଦିନ କଲେଜିଏଟ ସ୍କୁଲରେ ନାମ ଲେଖାଇଲି, ସେହିଦିନ ତା ସହିତ ପରିଚୟ। ସେ ଦିନ ମୋ ମନ କୁତୂହଳରେ ଭରି ଉଠିଥିଲା। ଘଟଣାଟି ମୁଁ ଭୁଲିପାରିବି ନାହିଁ।

ମଫସଲିଆ ବୋଲି ମୋତେ ସମସ୍ତେ ଥଟ୍ଟା କରନ୍ତି। ମୁଁ ବସୁଥାଏ ଶ୍ରେଣୀର ସବା ପଛରେ। ଗରମ ଦିନ। ଦିନ ଦଶଟା ବେଳୁ ପଡ଼ୁଥାଏ ଅସହ୍ୟ ଗରମ। ପ୍ରଥମେ ଥାଏ ସଂସ୍କୃତ କ୍ଲାସ। ପଣ୍ଡିତ ମହାଶୟ ଜଣ ଜଣ କରି ନାମ ଡାକ-

ହେଉଥାଆନ୍ତି ଏବଂ ଆମେ ପ୍ରେଜେଣ୍ଟ ସାର୍ କହୁଥାଉ । ପ୍ରତ୍ୟେକ ନାମ ଡାକିବା ପରେ ପଣ୍ଡିତ ମହାଶୟ ଚଷମା ଉପରୁ ଆଖି ଟେକି ଥରେ ଦେଖି ନେଉଥାଆନ୍ତି– କେହି ଅନ୍ୟ ପାଇଁ 'ପ୍ରେଜେଣ୍ଟ ସାର୍' କହୁଛି କି !

ଶ୍ରୀବନାବଧୂଣ କର, ପଣ୍ଡିତ ମହାଶୟ ଡାକିଲେ ।

ସମସ୍ତେ ନୀରବ ।

ଶ୍ରୀବନାବହୁଣ, ସ୍ୱର ଉଚ୍ଚତ ହୋଇ ଆସିଲା ।

ସମସ୍ତେ ତଳକୁ ମୁହଁ ପୋତି ବସିଲେ ।

ଶୀବ, ପଣ୍ଡିତ ମହାଶୟଙ୍କ ବଜ୍ରନାଦ ସଦୃଶ ସ୍ୱର କାନ୍ଥରେ ବାଜି ପ୍ରତି-ଧ୍ୱନିତ ହୋଇଉଠିଲା । ଆମେ ସମସ୍ତେ ପ୍ରମାଦ ଗଣିଲୁ । ପଢ଼ା ଆରମ୍ଭ ନ ହେଉଣୁ ତ ଏମିତି, ପରେ କି ଦୁର୍ଯୋଗ ଅଛି ସେ କଥା କଳ୍ପନା କରି ସମସ୍ତେ ଆତଙ୍କିତ ହୋଇ ଉଠିଲେ ।

ମୁଁ ମନେ ମନେ ଖୁବ ବିରକ୍ତ ହୋଇ ଉଠିଲି ଏଇ ଅପରିଚିତ ଶୀବ ଛୁଆ । ଶ୍ଳେଷକଷାୟିତ ଆଖିରେ ଚାରିଆଡ଼କୁ ଚାହିଁ ପଣ୍ଡିତ ମହାଶୟ ଅନ୍ୟ ନାମ ସବୁ ଡାକି ଖାତା ବନ୍ଦ କଲେ । ଏହି ସମୟରେ ପଣ୍ଡିତ ମହାଶୟଙ୍କ ପଛଆଡ଼େ ଦୁଆର ପାଖରେ ଛିଡ଼ା ହେଲେ ଜଣେ ଭଦ୍ରଲୋକ ଗୁରୁଗମ୍ଭୀର ଭାବରେ । ଅବିନ୍ୟସ୍ତ ବଡ଼ ବଡ଼ ବାଳ । ପିନ୍ଧିଛନ୍ତି ଖଣ୍ଡେ ମଇଳା ଲୁଗା ଏବଂ ଖୁବ୍ ମୋଟା ଗରମ କୋଟ ।

ଏ ଅସହ୍ୟ ଗରମରେ ଏତେ ମୋଟ ଗରମ କୋଟ ପିନ୍ଧିବାର ଦେଖି ମୋଠାରୁ ଜଣେ ବଡ଼ ମଫସଲିଆ ଛାତ୍ର ମୁଁ ପଛ ବେଞ୍ଚରୁ ଖେଁ ଖେଁ କରି ହସିପକାଇଲି ।

କିଏ ହସିଲା ? ସଗର୍ଜନେ ପଣ୍ଡିତ ମହାଶୟ ଚାରିଆଡ଼େ ଚାହିଁଲେ । ମୋର ଝାଳ ବୋହିଗଲା ।

ସାର୍ ମୁଁ, ଭଦ୍ରଲୋକଟି କହିଲେ । ମୁଁ ଆଖିରେ ସମ୍ଭ୍ରମ ଓ କୃତଜ୍ଞତା ଭରି ତାଙ୍କୁ ଚାହିଁଲି ।

ପଣ୍ଡିତ ମହାଶୟ ପଛକୁ ଚାହିଁ ସାରିବାରେ ଟେବୁଲର ଡରଜା ଖୋଲିଲେ । ତା ଭିତରୁ ବାହାରିଲା ଗୋଟିଏ ବେତ । ଲମ୍ବା ଲୁହ କଳା ବେଣ୍, ସୁପୁଷ୍ଟ । ନୀତି ବ୍ୟବସାୟର ଲୋକେ ବେତର ନାନା ପ୍ରକାର ବ୍ୟବହାର ଅବସ୍ଥାରେ କରିଛନ୍ତି

କିନ୍ତୁ ଶିକ୍ଷା ବନ୍ଧୁଗ ବୋଧହୁଏ ଆବିଷ୍କାର କରିଛ ଏହାର ଏକ୍କ ନାମ ବିନିହାରଛି ।

ଭଦ୍ରଲୋକ ଯେମିତି ହସି ଛୁଆ ହୋଇଥାଅନ୍ତି ।

ଏତେବେଳେ ଆପଣ ଆସିଲେ ? ପଣ୍ଡିତ ମହାଶୟ ଖୁବ୍ ସରଳଭାବରେ ପଚାରିଲେ । ମାନ୍ୟସୂଚକ ଶବ୍ଦର ବ୍ୟବହାର ଶୁଣି ମୁଁ ଭୟରେ ଆଖି ବୁଜିଦେଲି ।

ଅଜ୍ଞା ହଁ । ଉତ୍ତର ମଧ୍ୟ ସେହିପରି ସରଳ ।

ପଣ୍ଡିତ ମହାଶୟ ଆଜି ବାହାନୁବାଦ ନକରି ମିନିଟ୍‌କୁ ପ୍ରାୟ ଶହେ ପ୍ରହାର ବେଗରେ ପିଟି ଚାଲିଲେ । ମୁହଁରେ କୌଣସି ବିକୃତି ନାହିଁ, ରାଗ ବା ଘୃଣାର କୌଣସି ଚିହ୍ନ ନାହିଁ, ଅଯଥା ଶାରୀରିକ ଶ୍ରମ ନାହିଁ, ବୃଥା ବାକ୍ୟବ୍ୟୟ ନାହିଁ, ନୀରବରେ, ନିଶ୍ଚିନ୍ତଭାବରେ ପଣ୍ଡିତ ମହାଶୟ କାର୍ଯ୍ୟ ସମ୍ପନ୍ନ କରିବାକୁ ଲାଗିଲେ । ପ୍ରହାରକ ଯେପରି ନିର୍ବିକାର, ପ୍ରହାରିତ ମଧ୍ୟ ଠିକ୍ ସେହିପରି ।

ମୁଁ ଟିକିଏ ଡେରିରେ ବୁଝେ । ଏତେବେଳେ ବୁଝିଲି ପ୍ରହାରିତ ଆଜି କେହି ନୁହଁ, ସ୍କୁଲକୁ ଆସିବା ଦିନୁ ସହପାଠୀମାନଙ୍କ ମୁହଁରୁ ଯେଉଁ ଧଡ଼ିଖାଇ କଥା ମୁଁ ଶୁଣିଛି, ସେଇ ଧଡ଼ି ଖାଇ ।

ମାଡ଼ରେ କୋଟରୁ ଧୂଳି ଉଡ଼ିଯାଉଛି । ଟିକିଏ 'ଉଃ ଆଃ' ନାହିଁ । ନିର୍ବିକାର । ପଣ୍ଡିତ ମହାଶୟ ଅଳପଟେ ଦମ ନେଲେ । କିଛି ସମୟ ଦମ ନେଇ ସେ ପୁଣି କାର୍ଯ୍ୟ ଆରମ୍ଭ କରିବାକୁ ଯାଉଥିଲେ, ଅଟକି ସେ କୋଟ କଥା ପରୀକ୍ଷା କରିବାକୁ ଲାଗିଲେ ।

—ଏ କୋଟ କାହାର ?

—ସାଆନ୍ତ ବାପାଙ୍କର ।

—ତୁମେ ତାଙ୍କର ପିନ୍ଧି ଆସିଚ ?

—ସାଆନ୍ତ ବାପା ମୋତେ ଦେଇ କହି ଯାଇଥିଲେ ଦରକାର ହେଲେ କର୍ମରେ ଆସିବ ।

ଗୋଟିଏ ମୃଦୁ କଳରବ କ୍ଲାସରେ ଖେଳିଗଲା ।

କୋଟ କାଢ଼, ପଣ୍ଡିତ ମହାଶୟ ଗର୍ଜି ଉଠିଲେ ।

—ତା ପାଉନ୍ତନାହିଁ । ମୋତେ ନଙ୍ଗଳା କରିବା ଟଲି ହେଡମାଷ୍ଟରଙ୍କ ଅନୁମତି ଅଣେନ୍ତୁ ।

ଥରେ ଗୁରୁଅଡ଼କୁ ବୁଝିଁ ପଣ୍ଡିତ ମହାଶୟ ଗୋଟିଏ ପ୍ରଚଣ୍ଡ ଚଣ୍ଡିଅରେ ଶିବକୁ ଠେଲି ଦେଇ କହିଲେ, ଯାଅ ଟଙ୍କ କେଉଁଠି ଛୁଡ଼ାହୁଅ ।

ଶିବ ସେହିପରି ନିର୍ବିକାର ଭାବରେ ଅସି ମୋ ପାଖେ ଛୁଡ଼ା ହେଲ ।

ସେଦିନଠୁ, କାହିଁକି ଜାଣେନା, ମୁଁ ଧଡ଼ିଭଇ ପ୍ରତି ଆକୃଷ୍ଟ ହେଲି । ଏହା ପରେ ମୋ ପାଠ ପଢ଼ା ଆଉ ହୋଇନାହିଁ । କେବେହେଁ ହେବ ହୋଇନ ଅବଶ୍ୟ, ଖୁବ୍ ଭଲ ଗ୍ରୁପ ବୋଲି କୋଧହୁଏ । ଧଡ଼ିଭାଇ ତାର ବନ୍ଧୁ ଦୁଷ୍କର୍ମର ସାଥୀ ହିସାବରେ ମୋତେ କାହିଁକି ବାଛିନେଲ ସେଇ ଜାଣେ ।

ସର୍କସ ଆସିଛି । ଗ୍ରେଟ୍ ରସିଆନ୍ ସର୍କସ । ଦେଖି ଯିବାକୁ ଭାରି ଇଚ୍ଛା । ସବୁଠୁ କମ୍ ଟିକେଟ ଆଠଅଣା,ଆଠ ଅଣା !!! ହତାଶଭାବରେ ଦୁହେଁ ପରସ୍ପରକୁ ଚାହିଁଲୁ । ନାକମୂଳରୁ ଗୋଟିଏ ଦୀର୍ଘ ନିଃଶ୍ୱାସ ବାହାରି ଆସିଲ । ବାପାଙ୍କୁ ପଇସା ମାଗିଲେ ଖାଲି ଶାରୀରିକ ପୀଡ଼ା ପାଇବ କଥା ସାର୍ ଆଶୁତୋଷ; ବିଦ୍ୟାସାଗରଆଦି କପରି କଷ୍ଟରେ ବଡ଼ ଲୋକ ହୋଇଥିଲେ ସେ ବିଷୟରେ ଦୀର୍ଘ ବକ୍ତୃତା ଶୁଣିବାକୁ ହେବ ।

—କିଛି ପରୁଆ କରନା । କାଲି ସକାଳୁ ମୁଣ୍ଡରେ ତେଲ ନ ଲଗାଇ ଗାଧୋଇବୁ, ବୁଝିଲୁ, ଧଡ଼ିଭାଇ କୁହେ । ଧଡ଼ିଭାଇ କହିବା ମତେ ବେଦ ବାକ୍ୟ । ସନ୍ଧ୍ୟାବେଳେ ଧଡ଼ି ଭାଇ ଆସି ଦୂରରୁ ହୁଇସିଲ ମାରି ଡାକିଲା । ଅତି ସନ୍ତର୍ପଣରେ ଘରୁ ବାହାରିଲି ।

ମୋତେ ଆପାଦମସ୍ତକ ଥରେ ଚାହିଁ ଧଡ଼ିଭାଇ କହିଲା, ଠିକ୍ ଅଛୁ । ନା, ଏ କମିଜ ଚଳିବନାହିଁ, ଖଣ୍ଡେ ମଇଳା କମିଜ ପିନ୍ଧି ଆ ।

ପୁଣି ଯାଇ ଖଣ୍ଡେ ମଇଳା କମିଜ ପିନ୍ଧି ଆସିଲି ।

—ଠିକ୍ ଅଛୁ । ଲୁଗା ମୋଡ଼ିକରି ପିନ୍ଧ୍ ।

ଲୁଗା ଦୋହରାଇ ଲୁଙ୍ଗି ଭଳି ପିନ୍ଧିଲି । ଦୁଇ ବନ୍ଧୁ ପଛ ଧଡ଼ି ଭାଇ ଆଗେ ଆଗେ ଚାଲିଲୁ ।

ଏଇ; କୋନ୍ ଦେସ୍ ? ସର୍କସ ତମ୍ବୁର ଫାଟକ ପାଖରେ ବୁଢ଼ାଦାଢ଼ୀଆ ଜଗୁଆଳ ଧଡ଼ିଭାଇକୁ ଧକ୍କା ମାରି ଫିଙ୍ଗିଲା । ଭୟରେ ପଳାଇଯିବାକୁ ବସିଲି; କିନ୍ତୁ ଉପାୟ ନାହିଁ । ଧଡ଼ିଭାଇ ମୋର ଭୀରୁ ସ୍ୱଭାବ ଜାଣି କମିଜ ଧରି ଅଟକାଇଛି ।

ଲାଇଟ୍‌କା ଫର୍ଷ୍ଟ୍ ଡେଭେଲପ୍‌ମେଣ୍ଟ ଦେସ୍ ଧଡ଼ିଭାଇ ଗର୍ବଭରେ ଅପୂର୍ବ ଭଙ୍ଗୀରେ କହିଲା ।

ଜଗୁଆଳ କହିଲା, ଯାଓ, ପହଲେ ଫର୍ଷ୍ଟ୍ ମାଙ୍ଗେ ।

କମ୍ପା ହୁଏତ ସିନେମା ଆସିଛି । ଲୁମେରିଆ ଟ୍ରିଙ୍ଗ୍ ସିନେମା ।

—ଆଇସ୍ପେ, ଆଇସ୍ପେ, ଲଙ୍କାଦହନ, ଚାର୍ ଚାର୍ ପଇସା ।

ଚାରି ପଇସା ବା ପାଇବି କୋଉଁଠୁ !

—କିନ୍ତୁ ପରୁଆ କରନା, ଆ ମୋ ସାଙ୍ଗରେ । ଧଡ଼ିଭାଇ କହିଲା । ଚାଲେ ।

ବଦମାସ, ଚାରିଆଡ଼େ ଲୋକ ଜଗାଇଛନ୍ତି, କହି ଧଡ଼ିଭାଇ ଟିକିଏ ଚିନ୍ତିତ ହେଲା ।

ତାପରେ କଅଣ ଭାବି ତଳୁ ବଡ଼ ବଡ଼ ତିନି ଚାରୋଟି ଢେଲା ଉଠାଇ ଏଣେ ତେଣେ ଚାହିଁ ସେ ଦୁମ୍ ଦୁମ୍ କରି ଦୂରରୁ ତମ୍ବୁ ଉପରକୁ ଫିଙ୍ଗିଦେଲା ।

'କୋନ୍ ଦେସ୍, କୋନ୍ ଦେସ୍' ଚିତ୍କାର କରି ବେଗରେ ଆଖ ପାଖର ଜଗୁଆଳ ଦୌଡ଼ିଗଲେ ଘଟଣା ସ୍ଥଳକୁ ।

ଏଇ ସୁଯୋଗରେ ଧଡ଼ିଭାଇ ମୋତେ ଭିଡ଼ିନେଇ ତମ୍ବୁ ଭିତରକୁ ଚାଲିଗଲା ।

ଯଥାକଥା ମୁଁ ବି. ଏ. ପର୍ଯ୍ୟନ୍ତ ଆସିଲି । ଧଡ଼ିଭାଇ ମ୍ୟାଟ୍ରିକ୍ ଥାର୍ଡ କ୍ଲାସରୁ ପଢ଼ା ଛାଡ଼ିଛି; କିନ୍ତୁ ମୋ ସାଙ୍ଗ ଛାଡ଼ି ନାହିଁ । ଆଜିକାଲି ମଝିରେ ମଝିରେ ବିରକ୍ତ ହୁଏ ତା ଉପରେ । ନିଜର ଜୀବନ ନଷ୍ଟ କରିଛି, ମୋର ମଧ୍ୟ କରିବ ।

ବି: ଏ: ପରୀକ୍ଷା କାଲିଠୁଁ ଆରମ୍ଭ । ସାରାବର୍ଷ ଧଡ଼ିଭାଇ ପାଠ ପଢ଼େଇ ଦେଇନ ।

ଶୁଣିଲେ ନା, ସେ ବାଟରେ ଗଲେ କଅଣ ଚୋର ହେବୁ ବୁଦ୍ଧିଟିକ ' ଟିକ ଶୁଣାଏ·····ଆ

ଗୋଟିଏ ଜୀର୍ଣ୍ଣ ଶୀର୍ଣ୍ଣ ଘର ପାଖରେ ଛିଡ଼ା ହୋଇ ଧଡ଼ଗ୍ରାଇ ଡାକିଲା, ମାଳତୀ ମାଳତୀ !

ପାଖ ଘରୁ ଭାସି ଆସୁଛି ମାତାଲମାନଙ୍କ ଗଡ଼୍ଗଡ଼ ସଙ୍ଗୀତ ଆଉ ଜଡ଼ିତ କଣ୍ଠର ଅବାଧ ଗାନ । କଏ ଜାଣେ କେମିତି ଦେଖିବ ଏହି ଲଜ୍ଜାରେ ତାକୁ ମୁହଁ ଫେରାଇ ଛିଡ଼ା ହେଲା ।

ମାଳତୀ; ମାଳତୀ, ଧଡ଼ଗ୍ରାଇ ପୁଣି ଡାକିଲା ।

କୋନ୍ ହେଉ ନେ, ପାଖଘରୁ ଗୋଟାଏ ମାତାଲ ଚିତ୍କାର କରି ଉଠିଲା ।

ଜୀର୍ଣ୍ଣ କବାଟ ଖୋଲି ଗୋଟିଏ ଶୀର୍ଣ୍ଣ ନାରୀ ବାହାରି ଆସିଲା । ଧଡ଼ଗ୍ରାଇକୁ ଅନାଇ କୃତଜ୍ଞତାରେ ସେ କେବଳ ଗୁହାରି ରହିଲା । ଧଡ଼ଗ୍ରାଇ ଔଷଧ ବଢ଼ାଇ ଦେଇ କହିଲା, ଡାକ୍ତର କାଲି ଆସିବାକୁ କହିଛି । ଦେଖେଁ ।

ଆଜି, ରହିବ ନାହିଁ ଟିକଏ ? ନାରୀଟି କମ୍ପିତ କଣ୍ଠରେ ପଚାରିଲା ।

—ନା, ଆଜି କାମ ଅଛି । ଆଉ ରହିବା ଦରକାର ନାହିଁ । ବେଶ ଭଲ ହୋଇଗଲାଣି ।

ହୁଁ, ଧଡ଼ଗ୍ରାଇ ତେବେ ଏଠିକି ମଧ୍ୟ ଆସେ । ଏମିତି ଲୋକ ମୋର ପୁଣି ବନ୍ଧୁ !! ନିଜ ପ୍ରତି ଭାରି ଘୃଣା ହେଲା ।

କିଛି ବାଟ ଆସିବା ପରେ ମୁଁ ପଚାରିଲି, ଧଡ଼ଗ୍ରାଇ ତୁମେ ଏଠିକି ମଧ୍ୟ ଆସ ?

—ଆସିଲେ କଅଣ ହେଲା ?

—ଲଜ୍ଜା କରନାହିଁ ? କେହି ଯଦି ଜାଣନ୍ତି ବା ଦେଖନ୍ତି ?

—ଓ ! ଏଇଥିପାଇଁ ଲଜ୍ଜା, କେହି କାଲେ ଦେଖି ଦେବେ···ନ ଦେଖିଲେ କିଛି ନାହିଁ । ବେଶ୍ ଆଦର୍ଶ ଏକା ତୋର । ତେବେ ମୋର ଏଠାକୁ ଆସିବାର ଉଦ୍ଦେଶ୍ୟ ଅଲଗା । ଦିନେ ରାତିରେ ଅନ୍ୟ ଏକ ଘରୁ ବାହାରି ଆସିବା ସମୟରେ ମାଳତୀ କହିଲା, ତାକୁ ହରି ଜର, କେହି ତାକୁ ପଚାରୁନାହାନ୍ତି, ବଡ଼ ଖରାପ ବେରାମ ହୋଇଛି···ଏତିକି କହି ସେ କାନ୍ଦି ପକାଇଲା । ସେଦିନଠୁ ମୁଁ ତାକୁ ବେଶ ମୁକ୍ତ

ଚଢ଼ିବାର ଘର ନେଇଛନ୍ତି । କିନ୍ତୁ ବର୍ତ୍ତମାନ ଏମାନଙ୍କୁ ମୋ' ଭଳି ଲଫଙ୍ଗା ମିଳିଲେ···ଅବସ୍ଥା ଖରାପ ନେଇ ।

ଆମେ ଆସିଥିଲୁ ବୁଲି ବୁଲି । ଜଣେ ଭଦ୍ରଲୋକଙ୍କୁ ଦେଖି ଧଡ଼ଘାଇ କହିଲେ, ଅରେ ଦଣ୍ଡପାଣି ବାବୁ, ନମସ୍କାର, ଏଠି ରାସ୍ତାରେ ତରତର ହୋଇ କୁଆଡ଼େ ବୁଲିଛନ୍ତି···"

—ଆଜ୍ଞା କହିଲା ଭଳି, କୁଣିଆ ଆସିଛନ୍ତି ଘର, ସେଇ ଦାଦାଙ୍କର ବଜାରରୁ ମଛ ନବାକୁ । ଏକେଇଟା ଭଳି ଦେଇଥିଲା···ଭଲ ପାଖରୁ ଫେରି ଫେରୁ···

—ଏଠି କେଉଁଠି ମିଳୁଛି, ଜାଣେ ନା କି ? ଧଡ଼ଘାଇ ପଚାରିଲା ।

—ନିଶ୍ଚୟ ଜାଣେ । ମୁଁ ଜାଣେ ନାହିଁ ମୁଁ ଦେଖି ଜାଣେ । ଆଜ୍ଞା ଚାଲନ୍ତୁ ଯିବା, କେବଳ ଦେଖି ଆସିବେ ।

ହଁ ଆପଣଙ୍କର ସେଇ ଗୁଣ୍ଡା ଲୋକମାନଙ୍କ କଅଣ ହେଲା ? ଧଡ଼ଘାଇ ତାଙ୍କୁ ବାଧାଦେଇ ପଚାରିଲା ।

ଦଣ୍ଡପାଣି ବାବୁ ସଉଦା ବୁଝାଇ ବାଁ ହାତରୁ ଡାହାଣ ହାତକୁ ବଦଳାଇ କହି ଚାଲିଲେ, କର୍ମକ୍ଷେତ୍ରରେ ତାଙ୍କର ଅସୀମ ସାହସ କଥା···କିପରି ଜୀବନରେ ସେ ମୁହଁରେ ମୁହଁରେ ସବୁବେଳେ ଜବାବ ଦେଇଛନ୍ତି···ଅନ୍ୟାୟ ବରଦାସ୍ତ କରିପାରନ୍ତି ନାହିଁ···ତାଙ୍କର ସାଧୁତା ପାଇଁ ସେ କିପରି କଷ୍ଟ ପାଉଛନ୍ତି··· ଇତ୍ୟାଦି, ଇତ୍ୟାଦି । ପ୍ରାୟ ଅଧ ଘଣ୍ଟାଏ ଧରି ବକି ଚାଲିଲେ ।

—ସତେ ଆପଣ ବଡ଼ ଖାଣ୍ଟିଲୋକ; କିନ୍ତୁ ମାଛଟା ପଚି ନାହିଁ ତ ?

—ଉଃ ଏତେବେଳ ହୋଇଗଲା, ଯାଏଁ ଭାଇ···

—ହଁ, ଯାଆନ୍ତୁ । ଆଜ୍ଞା ଆପଣଙ୍କ ଘରବାଲୀ ସହିତ ସେଇ ମକଦ୍ଦମା କଅଣ ହେଲା ? ଧଡ଼ଘାଇ ପୁଣି ବାଧାଦେଇ ପଚାରିଲା ।

ଦଣ୍ଡପାଣି ବାବୁ ପୁଣି ଅଧଘଣ୍ଟାଏ ବକି ଚାଲିଲେ ସେ ଇତିହାସ ।

—ବାଃ, କି ସାହସୀ ଲୋକ ଆପଣ ସତେ ! କିନ୍ତୁ ମୋର ମନେହେଉଛି ମାଛଟା ପଚିବ ।

—ଆରେ ନା, ଦେଖ ନା । ଉଃ ଘଣ୍ଟାଏ ଡେରି ହୋଇଗଲା···ସେ ହିସ୍ପାରେ···

—ଯାଆନ୍ତୁ, ଯାଆନ୍ତୁ । ହଁ, ମୁଁ ଶୁଣିଥିଲି ଆପଣଙ୍କୁ କୁଆଡ଼େ ବଦଳି କରି ଦେଉଛନ୍ତି ? ଧଡ଼ଘାଇ ପୁଣି ତାଙ୍କୁ ଅଟକାଇ ଦେଉଥିଲା ।

—ଘର କଲ୍ୟାଣ । ଏ ଦଣ୍ଡପାଣିଙ୍କୁ···ବୁଝିଲ···, ଦଣ୍ଡପାଣି ସ୍ମୃତି ଅଧଃପତନର ସେ ଇତିହାସ ବକି ଚାଲିଲେ । ଧଡ଼ଘାଇ ସତେ ଯେପରି କେତେ ମୁଗ୍ଧ ହୋଇ ଶୁଣୁଛନ୍ତି !

—ଚମତ୍କାର; କିନ୍ତୁ ମାଛଟି ନିଶ୍ଚୟ ଯିବ ··

ଦଣ୍ଡପାଣିବାବୁ ଆଜ କିଛି ନ କହି ପ୍ରାୟ ଦୌଡ଼ି ପଳାଇଲେ । ଧଡ଼ଘାଇ କିଛିକ୍ଷଣ ଚୁପ୍ ରହିଲା, ଲୋକଟା ମନ୍ଦ ନୁହେଁ; କିନ୍ତୁ ସ୍ତ୍ରୀ ଉପରେ ଘୋର ଅତ୍ୟାଚାର କରେ । ଯାଉ ଆଜି କିଛି ଗଲା ଖାଉ ସ୍ତ୍ରୀ ପାଖରୁ···

'ଓଃ, ଏ କଅଣ ଗୋଟାଏ ଭ୍ରମର···, ଢରକ୍ତ ଲାଗିଲା ସତେ ମୋତେ ।

—ଆରେ, ଗୋଟାଏ ମଉଜ···ଚାଲ୍

ଆଗେଇ ଚାଲିଲୁ ।

ଚୌଧୁରୀ ବଜାର, ଗୋପାଳଜୀମଠ ପାଖହୋଇ ଖୋଲାସାହି ସତ ପ୍ରାୟ ବାରଟା । ଚାରିଆଡ଼େ ନିସ୍ତବ୍ଧ । ଗୋଟିଏ ବୁଢ଼ୀ ବାହାରକୁ କାହିଁକି ବାହାରିଛି । ହଠାତ୍ ଗୋଟାଏ ସାଇକଲ ଧକ୍କା ଲାଗିଲା ବୁଢ଼ୀ ଅଙ୍ଗତ ।

ମରଗିଆରେ···ଆଲ୍ଲା···, ବୁଢ଼ୀ ଚିତ୍କାର କରି ଉଠିଲା ।

ଏତେ ଜୋରରେ ସାଇକଲ ଚଳାଇବା ଦରକାର କଅଣ ? ଧଡ଼ଘାଇ ବୁଢ଼ୀଟିକୁ ଉଠାଇ ଧୂଳି ଝାଡ଼ଝୁଡ଼ ଦେଇ କହିଲା ।

ଯୁବକଟି ଭୟରେ ଥରୁ ଥରୁ କହିଲା, ବାପା ହଠାତ୍ ଅଜ୍ଞାନ ହୋଇ ପଡ଼ିଛନ୍ତି, ଡାକ୍ତର ଡାକିବାକୁ ଦୌଡ଼ୁଥିଲି···, ଯୁବକଟି ପ୍ରାୟ କାନ୍ଦି ପକାଇଲା ।

— ଶୀଘ୍ର ପଳାନ୍ତୁ । ଯୁବକଟି ସାଇକଲ ଉଠାଇ ପଳାଇଲା ।

କିନ୍ତୁ ବୁଢ଼ୀର ଚିତ୍କାର ବନ୍ଦ ହେଲାନାହିଁ । ଧଡ଼ଘାଇ ତା ହାତରେ ଗୋଟିଏ ଟଙ୍କା ଧରାଇଦେଇ କହିଲା, ମାଉସୀ, ଯା ବଜାର ହେଲାଣି···

କିନ୍ତୁ ଆଖପାଖର ଲୋକଏ ଦଉଡ଼ି ଆସିଲେ ଠେଙ୍ଗା ବାଡ଼ି ଧରି ।

—କାହାଁ ଗିଲ୍ଲା···ବଦମାସ ।

ଧଡ଼ଦ୍ଧର ଦଉଡ଼ି, ଧନେ ହାକିକୁ, ମାରେ ହାକିକୁ ଜନ୍ମ ଯୁବକଟି ଯେଉଁଆଡ଼େ ଦୌଡ଼ୁଥିଲା, ତାହାର ବିପରୀତ ଆଡ଼େ ଦୌଡ଼ିଲା । ପଛେ ପଛେ ମୁଁ ଦୌଡ଼ିଲି, ଅନ୍ୟ ସମସ୍ତେ ବି ଦୌଡ଼ିଲେ ।

ଅନେକ ବାଟ ଅତିକ୍ରମ କଲାପରେ ଧଡ଼ଦ୍ଧର କହିଲା, ନା ଭଲା, ମିଳିଲା ନାହିଁ

ଭାଇ···

ଲୋକମାନଙ୍କର ଅନ୍ତ କିଛି ନିଶ୍ଚିତ ଜଣାପଡ଼ୁ ନାହିଁ । ଧଡ଼ି ସଡ଼ି ହୋଇ ସେମାନେ ଫେରିଲେ ।

ଧଡ଼ଦ୍ଧରର ଉପସ୍ଥିତ ବୁଦ୍ଧିରେ ମୁଁ ବିସ୍ମିତ ହୋଇ ପଡ଼ିଲି ।

ଛତ୍ରବଜାର, ଶଙ୍କରପୁର, ମାଲ୍‌ଗୋଦାମ । ରାତି ଦୁଇଟା ବେଳେ ଦେଢ଼ଟା ।

ହେ ବନ ବାପା···ଛିଲେ ମୋ ନେବାଉ, ହେ ଧବଳେଶ୍ୱର···

ଦୂରରୁ କାହାର କରୁଣ ଧ୍ୱନି ଭାସି ଆସିଲା । ଚାରିଆଡ଼େ ନିସ୍ତବ୍ଧ । ଡର ଲାଗୁଚି । ପ୍ରତ୍ୟେକ ଘର ଯେପରି ଗୋଟିଏ ଗୋଟିଏ ଜଳାପୁରୀ ଭଳି ମନେହେଲା ।

ଧଡ଼ଦ୍ଧର, ଏ କଅଣ ? କଡ଼କୁ ଲାଗିଯାଇ ପଚାରିଲି ।

—ଉତ୍ତର୍ ନା କଅଣ ? ଚାଲ ଦେଖିବା ସେଠି କଅଣ ହେଲା ।

ଗୋଟିଏ ସୁନ୍ଦରୀ ଯୁବତୀଙ୍କୁ ଘେରି ଅନେକ ଲୋକ । ଧଡ଼ଦ୍ଧର ଓ ମୁଁ ମାରବରେ ସମସ୍ତଙ୍କ ପଛରେ ଛିଡ଼ାହେଲୁ । ଯୁବତୀଟି ନିଶ୍ଚୟ ମଫସଲରୁ ଆସିଚି । ନାକରେ ଦଣ୍ଡି, ହାତରେ ଖଡ଼ୁ । ଝାଲିଆ ଶାଢ଼ୀଟିକୁ ଫାଟି ଉକୁଟୁଛି ଯୌବନର ଶୋଭା । ଚାରିଆଡ଼ୁ ଲୋଲୁପ ଦୃଷ୍ଟି । ମୁହଁରେ ସମସ୍ତଙ୍କର କୃତ୍ରିମ ସମବେଦନା । ଯୁବତୀଟି କାନ୍ଦି କାନ୍ଦି କହିଲା ତାର କରୁଣ କାହାଣୀ । ଘରେ ବାପା, ତାର ସ୍ୱାମୀ, ସମ୍ଭବତ ସେ ଧବଳେଶ୍ୱର ଯାଉଚି । ତାକୁ ଭୋଳ କରିବାକୁ ତାର ସ୍ୱାମୀ ତାକୁ ସେଇଠି ବସାଇ ଯାଇଚି ପାଣି ଆଣି ଫେରୁ ଘଣ୍ଟାଏ ହେବ । ସେମାନେ କେଉଁଠୁ ଗାଁରୁ ପଡ଼ାକୁ କାହାର ନାହାନ୍ତି । ମୋ ମନ ଉଚ୍ଛନ୍ନ ହଉଚି, ସେ କୁଆଡ଼େ ଗଲେ ଟିକେ ଦେଖନ୍ତ, ଯୁବତୀଟି ମିନତି ଜଣାଇଲା ଲୁବ୍ଧ ଜନତା ପ୍ରତି ।

ଗୋଟିଏ ଲୋକ ଭିଡ଼ ଭିତରୁ ବାହାରି ଆସି କହିଲା, କାନ୍ଦନା କାନ୍ଦନା, ମୋ ସାଙ୍ଗେ ଆ, କାଲି ସକାଳୁ ଖୋଜିଦେବ ।

ଲାଗିଛି । ମୁହଁ ଉଠିକି ପାଟି ମୋ ପାଖକୁ ଆସି କହିଲା, ନେଇ ଷ୍ଟେସନ ପଳା, ମୁଁ ଦେଖିଛି ।

ପୁଲିସଟିକୁ ଠେଲି ଦେଇ ମୁଁ ଷ୍ଟେସନ ଆଡ଼େ ଦୌଡ଼ିଲି । ଷ୍ଟେସନରେ ପହଞ୍ଚି ମୁଁ ଟଙ୍କା ମାରି ବସିପଡ଼ିଲି ।

କିଛିକ୍ଷଣ ପରେ ଧଡ଼ୁଭାଇ ଫେରିଲେ । ମୁଣ୍ଡରେ ତାଙ୍କର ପଟି ବନ୍ଧା ହୋଇଛି । ପଟି ଭେଦକରି ରକ୍ତ ତାହାର କାନ ପାଖରେ ଜମିଯାଇଛି । ଧଡ଼ୁଭାଇ ମୋତେ ଦେଖି ନିଶ୍ଚିନ୍ତ ହୋଇ ଡାକିବାକୁ ଲାଗିଲେ, ଆରେ ରମା ବୋପା ରେ । ଅନେକ କ୍ଷଣ ଡାକିବା ପରେ ଦୂରରୁ ଶୁଭିଲା, ହଁ···ଉ···ଉ ।

—ଆ'ରେ ଜଲଦି···

ରମା ବୋପା ଆସିଲା । ସମସ୍ତ ଘଟଣା ଶୁଣି ସେ ଧଡ଼ୁଭାଇ ଗୋଡ଼ ଧରିବାକୁ ଯାଉଥିଲା । ଧଡ଼ୁଭାଇ ତାକୁ ଟଙ୍କା ମାଡ଼ି କହିଲେ, ଏଇଠି ଥା ସକାଳ ହେଲେ ଯିବୁ । ବ୍ଲକ୍‌ରେ ।

—ଧଡ଼ୁଭାଇ ତୁମେ ଏତେ ମହତ୍ ! ମୁଁ ନ କହି ରହିପାରିଲି ନାହିଁ ।

—ମହତ ନା ଅଜ କହୁ ।

ଷ୍ଟେସନ ଗ୍ରାଉଣ୍ଡ ଗ୍ଲାଲକୁ ଭଲେଇ ଆଡ଼େ । ରାତି ତିନଟା । ରାସ୍ତାର ଦୁଇ କଡ଼ରେ ଶୋଇଛନ୍ତି ଅଖା ଘୋଡ଼ି ହୋଇ ଅସଂଖ୍ୟ ଭିକ୍ଷୁକ ।

ଜଣେ ବୃଦ୍ଧ ତାଙ୍କ ଭିତରେ ବୁଲୁଛନ୍ତି । ପ୍ରତ୍ୟେକଙ୍କ ପାଖରେ ଛିଡ଼ା ହୋଇ ଏଣେତେଣେ ଚାହିଁ ସେ ନଇଁପଡ଼ି କଅଣ ଯେପରି ଗୋଟାଇ ନେଉଛନ୍ତି । ନିଶ୍ଚୟ ବଦମାସ୍ । ଧଡ଼ୁଭାଇଙ୍କ ଭଳି ମୋ ମନରେ ମଧ୍ୟ ପରୋପକାର ଇଚ୍ଛା ଜାଗିଲା । ଦୌଡ଼ିଗଲି ତାକୁ ଧରିବାକୁ । ବୃଦ୍ଧ ଦୌଡ଼ିବାକୁ ଆରମ୍ଭକଲା । ଧଡ଼ୁଭାଇ ମୋତେ ଅଟକାଇ କହିଲେ, ସବୁ ସରିଗଲା, ଆରେ ବୋକା, ବଦମାସ୍ ନୁହଁ, ଜଣେ ଅଦ୍ଭୁତ ଲୋକ । ମୁଁ ମଧ୍ୟ ପ୍ରଥମେ ତୋ ପରି ଭାବିଥିଲି; କିନ୍ତୁ ଦେଖିଲି ସେ ପ୍ରାୟ ଏମିତି ଆସି ପ୍ରତ୍ୟେକଙ୍କ ପାଖରେ ଗୋଟିଏ ଲେଖାଏଁ ଆଠଅଣି ରଖିଯାଆନ୍ତି ନୀରବରେ । ସେ କିଏ; କିନ୍ତୁ ମୁଁ ଜାଣେନା । ବହୁତ ଅନୁନୟ କଲେ ମଧ୍ୟ ସେ ପରିଚୟ ଦେଲେ ନାହିଁ ।

ଅଭିଭୂତ ହୋଇ ଅନାଇଁ ରହିଲି ।

—ଚାଲ, ସେଠି କିଏ କାନ୍ଦୁଛି ଦେଖିବା, ଧଡ଼ିଭାଇ ମୋତେ ଭିଡ଼ି ନେଇଗଲେ ।

ଗୋଟିଏ ଭିକ୍ଷୁକ ଶବ ପାଖରେ ଚାରି ଝିଅ ବସି କାନ୍ଦୁଛି । ଧଡ଼ିଭାଇ ତାଙ୍କୁ ବୁଝାଇ ଚାରି କଫନ ବନ୍ଦକଲେ । ଅନ୍ୟାନ୍ୟ ଭିକ୍ଷୁକମାନଙ୍କୁ ଡାକିଲେ । ଶବଟି ବୋହିନେବାକୁ କେହି ରାଜି ହେଲେନାହିଁ ।

ଧଡ଼ିଭାଇ ଗୋଟିଏ ବାଉଁଶ ଆଣି ଶବଟିକୁ ବାନ୍ଧି ବାନ୍ଧି କହିଲେ, ଗୋଡ଼ ପାଖରୁ ଧର୍ । ଦୁଇଜଣ ସେଟିକୁ ବୋହି ବଜାରବାଟି ବାଟ ଦେଇ ଗାନ୍ଧିନଗର ଶ୍ମଶାନ ଆଡ଼େ ଚାଲିଲୁ । ଏପରି ପରିସ୍ଥିତିରେ କେବେ ପଡ଼ିନାହିଁ । ଡର ଲାଗୁଥାଏ । ସବୁ ଭୂତ ପ୍ରେତ ଯେପରି ମୋ ସାଙ୍ଗେ ସାଙ୍ଗେ ଚାଲିଛନ୍ତି । ସେମାନଙ୍କର ନିଃଶ୍ୱାସ ମୁଁ ପିଠି କାନ୍ଧରେ ଅନୁଭବ କରିବାକୁ ଲାଗିଲି; କିନ୍ତୁ ଉପାୟ ନାହିଁ ।

ବାବା କବାଟ ଖୋଲ, ଶ୍ମଶାନରେ ଶବ ଥୋଇ ଧଡ଼ିଭାଇ ଡାକିଲେ ।

ଶ୍ମଶାନର ବାବାଜୀ ଛାତି ଖୋଲି ବାହାରିଲେ । ଘଣ୍ଟରେ ସେ ରୂପ ଦେଖି ମୁଁ ଡରିଗଲି ।

କିଏ ? ବାବାଜୀ ବିକଟ ସ୍ୱରରେ ପଚାରିଲେ ।

—କେଜାଣି କିଏ ? ଭିକାରୀଟିଏ ! ନିଅ ଟଙ୍କା, କାଠ ଦିଅ ।

ଓ, ଧଡ଼ିଭାଇ, ମନେ କରୁନା, ବାବାଜୀ ଉତ୍ଫୁଲ୍ଲ ହୋଇ କହିଲେ ।

ଚାବି ଆଣି କାଠ ଘର ଖୋଲି ବାବା କହିଲେ, ନିଅ କାଠ । ସଜାଡ଼ି ଦେବି ?

—ସଜାଡ଼ !

ବାବା ଗଞ୍ଜେଇ ଦଳିବାକୁ ଲାଗିଲେ ।

ଚିତା ସଜେଇ ଜାଣୁ ? ଧଡ଼ିଭାଇ ମୋତେ ପଚାରିଲେ ।

—ନାହିଁ, କେବେ କରିନାହିଁ ।

ବାବାଜୀଙ୍କୁ କହିଲି ଉଭୟପଟେ ଲୁଗା ମେଲେଇ ଧରିବାକୁ । ମୁଁ ଓ. ବାବାଜୀ ଲୁଗା ମେଲାଇ ଧରି ପବନ ଅଟକାଇଲୁ । ଚିତା ଜଳିଲା ।

—ଇସ୍, ବାବା, ନିଆଁ ରଙ୍ଗ ଠିକ୍ ଅଛି !

—ଠିକ୍ ଅଛି, ଆଃ, ବାବାଜୀ ଅସହିଷ୍ଣୁ ଭଳି କହିଲେ ।

—ବୁଝିଲୁ, ନିଆଁର ରଙ୍ଗ ଓ ଗନ୍ଧରୁ ଜଣାପଡ଼ିବ ଚିତା ଦହନ କରିବ କି ନାହିଁ ।

—କେମିତି ?

—ଚିତା ଯଦି ଧୂ ଧୂ ହୋଇ ଜଳେ, ନିଆଁର ଶିଖା ବେଶି ଉପରକୁ ଉଠେ, ତା'ହେଲେ ଭାରି ଖରାପ । ଜାଠ ଅଧା ଜଳିଥିବ ଶବ ପଡ଼ିଥିବ । ନିଆଁ ଯଦି ବେଶି ଉପରକୁ ନ ଉଠେ, ରଙ୍ଗ ଯଦି ହଳଦିଆ ହୁଏ, ତେବେ ଭଲ ।

ଚିତାରୁ ଟିକିଏ ନିଆଁ ଆଣି ବାବାଜୀ ଚିଲମରେ ନିଆଁ ଲଗାଇଲେ । ତା'ପରେ ଗୋଟିଏ ସୁଦୀର୍ଘ ଟାଣ ଦେଇ ଚିଲମ ଧଡ଼ିଭାଇ ହାତକୁ ବଢ଼ାଇ ଦେଲେ ।

ଚିତା ଗରମରେ ମୋତେ ଆରାମ ଲାଗିଲା । ସକାଳକୁ ଥଣ୍ଡା ବେଶି ପଡ଼ୁଥିଲା । ଆଖିପତା ମୋର ଲାଗିଗଲା ।

—ତୁ ଶୋଇଯାଆ, ଶୁଅ ଏଇଠି, ଧଡ଼ିଭାଇ ମୋ ଦେହ ଅଉଁସି କହିଲା ।

ଶୋଇବାକୁ ଡର ମାଡ଼ୁଥାଏ । ବୁଢ଼ିଅଡ଼େ ବିଲୁଆ କୁକୁରଙ୍କ ଚିତ୍କାର । ଚିତାର ନିଃଶ୍ୱାସ ଯେପରି ମୁଁ ଶୁଣିବାକୁ ପାଉଥାଏ ।

ଡର ମାଡ଼ୁଛି, ବାଧ୍ୟ ହୋଇ ଧଡ଼ିଭାଇ କାନରେ କହିଲି ।

—ପାଗଳ କଉରେ, ଶ୍ମଶାନରେ ଡର କଅଣ ? ସହର ଭିତରେ ଯେତେ ଡର । ଡର ଏଠି କାହିଁରେ ? ଶୁଅ ମୋ କୋଳରେ ।

ଧଡ଼ିଭାଇଙ୍କ କୋଳରେ ମୁଣ୍ଡ ରଖି ଶୋଇପଡ଼ିଲି ।

ଯେତେବେଳେ ଉଠିଲି ପୂର୍ବ ଆକାଶରେ ସୂର୍ଯ୍ୟ ଫାଟିଲାଣି । ଅପୂର୍ବ ସେ

ଦୃଶ୍ୟ । କେତେଥର ଅନେକ ଦୃଶ୍ୟ ଦେଖିଛି; କିନ୍ତୁ ଶ୍ମଶାନରେ ଏହାର ଦୃଶ୍ୟ ମହାନ୍ ମନେ ହେଲା

ଚୋର ନହେଁ କିଛି ଅବିଶ୍ୱାସୀ । ଯତ୍ନରେ ନାଆଁ ଭିତରେ ପାଇଁ କେଞ୍ଚ କଣଣ ଖୋଜୁଛି ।

କଣଣ ଖୋଜୁଛି ଧଡ଼ଭାଇ, ଚଗ୍ରେ କି ।

—ସବୁ କହିଦେଏ, କିନ୍ତୁ ମୋ ଜଣା ହାଣ୍ଡି ଖୋଜିବାକୁ ଡର ଲାଗେ । ସେଠା କଣ୍ଟି ଅଛି ଖୋଜୁଛି ।

—କେମିତି ଜାଣିବ ଏଥର ଠିକଣା ହାଣ୍ଡି ଏ ନାଆଁ ଚଢାରୁ ?

—ଦେଖିବୁ ଜଣା ।

ବାହାରେ ସେ ନାଆଁ ଖୋଜିବାକୁ ଲାଗିଲେ ।

—ସବୁ ନାଆଁ ହଳଦିଆ ଦିଶୁଛି । କିନ୍ତୁ ସେ ଠିକଣା ଯେଉଁଠି ଥିବ ନେଳ ଦିଶିବ ।

କେଞ୍ଚ କେଞ୍ଚ ଠିକଣା ନେଳ ନାଆଁ ଦେଖି ସେ କହିଲେ, ଇଏର, ଏଇଠି, ରହମ କୁଆଡେ ଯିବୁ । ସବୁ ଶେଷକରିଯିବ ।

ସବୁ ଶେଷ କରି ଧଡ଼ଭାଇ ଦାର୍ଶନିକ ଭଳି ଢଢ଼ି ଟାଣିବାକୁ ଲାଗିଲା ।

ଆଜି ମୋର ବି. ଏ. ପରୀକ୍ଷା । କିଛି ପଢ଼ିନାହିଁ ।

—※—

# ପକ୍ଷାଘାତ

ଦୁର୍ଯ୍ୟୋଧନ ବାବୁ ବର୍ତ୍ତମାନ ସବୁବେଳେ ବାହାର ବାରିଣ୍ଡାରେ ପଡ଼ିଥିବା ଖଟଉପରେ କାନ୍ଥକୁ ଡେରି ହୋଇ ପଡ଼ିଥାଆନ୍ତି । ପିଠିଆଡ଼େ ତାଙ୍କର ଗୋଟାଏ ତେଲଚକଟା ଛିଣ୍ଡା ତକିଆ । ବଲ ବଲ କରି ଆକାଶକୁ ଚାହିଁ ସେ ପାନ ପାକୁଳ କରୁ ଥାଆନ୍ତି । କଥା କହିବାର ଶକ୍ତି ନାହିଁ, କି ଉଠିବାର ମଧ୍ୟ ଶକ୍ତି ନାହିଁ । ପକ୍ଷାଘାତ-ରୋଗୀ ସେ । କେତେବେଳେ କାହାର ଇଚ୍ଛା ହେଲେ ଖଣ୍ଡେ ପାନ ଦେଇଯାଏ, ତକିଆଟାକୁ ସଜାଡ଼ି ଦେଇ ଯାଏ ବା କଟନ ଠିକଏ କରିଦେଇ-ଯାଏ । ଘରର ସମସ୍ତେ ତାଙ୍କ ଉପରେ ବର୍ତ୍ତମାନ ବିରକ୍ତ । ତାଙ୍କ ପରିବାରର ଅନ୍ୟମାନଙ୍କ ସହିତ କ୍ଷୀଣ ଦୈହିକ ସଂଯୋଗ ଥିଲେହେଁ, ମାନସିକ ସଂଯୋଗ ଆଦୌ ନାହିଁ । ଏ ଯୁଗର ହଠାତ୍ ଧନୀ ଓ ପାଶ୍ଚାତ୍ୟ ସଭ୍ୟତାର ପୂଜାରୀ-ପରିବାର ଘରେ କୌଳିକ ଦେବତାର ଅବସ୍ଥା ଯେପରି ବହିଷ୍କୃତ ନୁହେଁ, ପରିତ୍ୟକ୍ତ ।

ପଞ୍ଚାବନ ବର୍ଷ ବୟସରେ ପେନ୍‌ସନ୍ ନେବାର ଠିକ୍ ତିନିଦିନ ପରେ ଏ ଅବସ୍ଥା ତାଙ୍କର ଘଟିଲା । ପୂର୍ବ ତିରିଶ ବର୍ଷ ଧରି ସେ ଚାକିରି କରି ପେନ୍‌ସନ ନେଲେ । ଚାକିରି ତାଙ୍କର ଆରମ୍ଭ ଖୁବ୍ ତଳରୁ, କିନ୍ତୁ ଶେଷ ଯେତେବେଳେ କଲେ, ସେତେ-ବେଳେ ଥିଲେ ସେ ଏକ ଉଚ୍ଚ ଆସନରେ । କ୍ଷମତା, ପ୍ରତିପତ୍ତି, ସମ୍ମାନ ଓ ଅର୍ଥ ସେ ଚାକିରି ଜୀବନରେ ପାଇଥିଲେ ପ୍ରଚୁର । ତଥାପି ପେନ୍‌ସନ ଯେତେବେଳେ ନେଲେ, ସେତେବେଳେ ସେ କାନ୍ଦ ପକାଇଲେ । ପେନ୍‌ସନ ନେବା ପରମୁହୂର୍ତ୍ତ-ଠାରୁ ତାଙ୍କ ସହିତ ଅଲଣା ସାଗୁ ବା ଅଧା ମଳଭର ଯେପରି କୌଣସି ପ୍ରଭେଦ ନାହିଁ ଏହିପରି ତାଙ୍କର ମନେହେଲା । ଯେଉଁ କଚେରିରେ ସେ ବର୍ଷ ବର୍ଷ ଧରି ହାକିମି କରି ଆସିଛନ୍ତି, ସମ୍ମାନ ପାଇ ଆସିଛନ୍ତି, ଆଜି ସେ କଚେରିକୁ ଗଲାବେଳେ କେହି ଠିକଏ ଉଠି ଛିଡ଼ାହେଲେ ନାହିଁ, ତାଙ୍କ ଆଡ଼କୁ ଫେରି ଚାହିଁଲେ ବି ନାହିଁ । ଅଥଚ କେହି କେହି ଜାଣିଶୁଣି ତାଙ୍କୁ ଅସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ ହଠାତର

କଲେ ତା ଭୂଇଁ । ତାଙ୍କର ମାନ ଥିବ ଲୋକ ଜବରଦ ଦେଖ ଧନ୍ଦର ଲଢ଼ିଲ । ତା ବାହାରେ ମନ ବସିଚନ୍ତି କିନ୍ତୁ ନ ହେବ । ଆଜ ସେ ଦେଖ ଯିବା ମନେ କେବଳ ମାତ୍ର [illegible] । [illegible] ଅବାନ୍ତର ଘଣ୍ଟା ଘୂରି ସେ ଘରକୁ [illegible], ମନ [illegible] ବ୍ୟାକୁଳ [illegible] ଉଠିଲା, [illegible] କରି ଉଠିଲା । [illegible] କିଏ ବର୍ତ୍ତମାନ ? କେଉଁଠି [illegible] ବର୍ତ୍ତମାନ ? ମୋର ସନ୍ତାନ [illegible], [illegible] ? ବ୍ୟାକୁଳ ଭାବରେ ସେ ପ୍ରଶ୍ନ କରି [illegible] ଚାହିଁ, ଥରି [illegible] ଲୁହ ଗଡ଼ାଇଲେ । [illegible] ଉଠିଲେ, ପାଣ୍ଡବ ଅଧମ୍ [illegible] । [illegible] କରି ଉଠିଲେ, କେହି ନାହିଁ । ସେତେବେଳେ [illegible] ଅବସନ୍ନପ୍ରାୟ [illegible] କର୍ତ୍ତବ୍ୟ । ଅତଏବ କେହି ନାହିଁ [illegible], ଆଉ କେହି [illegible] ନାହିଁ ଚେଷ୍ଟା କରିବାକୁ, ସାନ୍ତ୍ୱନା ଦେବାକୁ । ସେ [illegible] ।

ଦୁଇ ଦିନ ଭିତରେ ସେ କଲୋନୀ ଛାଡ଼ି ଗୁଡ଼ିଗଲେ । ଡ୍ରାଇଭର ଖବରଦେଲେ ସେ ଜାହାଜକୁ ଯିବାବେଳେ ଗୋଡ଼ ଝେଙ୍ଗିପିବାରୁ ଅଟକିଗଲେ । ଉଠିବାକୁ ଚେଷ୍ଟାକଲେ । ଗୋଡ଼ରେ ଶକ୍ତି ନାହିଁ । ପାଟିକରି ଡାକିବାକୁ ଚେଷ୍ଟା କଲେ, କିନ୍ତୁ ପାଟି ଫିଟିଲା ନାହିଁ । ବୁଝିପାରିଲେ ଯେ ହଠାତ୍ ପକ୍ଷାଘାତ ତାଙ୍କୁ ଆକ୍ରମଣ କଲା । ଦୁଇ ଓଠ ତାଙ୍କର ଥରି ଉଠିଲା, ଆଖିରୁ ତାଙ୍କର ଝର ଝର ହୋଇ ଲୁହ ବୋହି ବୁହି ଗଲା । ଘରଭଡ଼ା ତାଙ୍କର ସବୁ ଶୋଷି-ନେଇଛି ଏହି ଅଶି କର୍ଷ ଗତାଇ ଖଟାଇ । ଏକଦମ୍ କାଙ୍ଗାଳ କରିଦେଇଛି । ଯିଏ ଦିନେ ମାସକୁ ତିନି ହଜାର ଟଙ୍କା ପାଉଥିଲେ, ସେ ଆଜି ଦୁ-କଉଡ଼ିର ଭିକାରୀ ।

ଘରେ ତାଙ୍କର ସେତେବେଳେ କେହି ନ ଥାନ୍ତି । ସ୍ତ୍ରୀ ତାଙ୍କର ଦ୍ୱିତୀୟ ପକ୍ଷର—ବୟସର ତଫାତ୍ ପନ୍ଦର ବର୍ଷ । ଶବଦାହବେଳେ ସେ ଥିଲେ ଅତି ବ୍ୟସ୍ତବସ୍ତ, ମଫସଲ ସ୍କୁଲର । ଏକା ଗରିବ ଶୋଉଥିବାବେଳେ ସେ ସେ ଦୁଇ ବସିଥିଲେ ନିସ୍ତବ୍ଧ ହୋଇ, ଖଣ୍ଡେ କାଟିଲେ । ଦୁର୍ଯ୍ୟୋଧନ ବାବୁଙ୍କୁ ତାଙ୍କୁ ନେବା କରାଇଲେ, ଦେଖି ଶ୍ରୀ ମନରେ । ଅଣଜାଣ ସେ ଖୁବ୍ ଅଳ୍ପ ସମୟ ପାଇଁ ଘରେ ରହନ୍ତି । ମଠର ନେଇ ଚବୁବେଳେ ବୁଲୁଥାନ୍ତି ଏଠି ସେଠି ଏବଂ ଅନେକ

ଏହି ସମୟରେ ପ୍ରବେଶ କଲେ ତାଙ୍କ ବଡ଼ ପୁଅ । ଦୁର୍ଯ୍ୟୋଧନ ବାବୁ ମନେ ମନେ ଟିକିଏ ହସିଲେ ଓ ମନେ ମନେ କହିଲେ, ଆସିଲେ ନେତା !

ଦୁର୍ଯ୍ୟୋଧନ ବାବୁଙ୍କ ବଡ଼ପୁଅ ନେତା ହୋଇନାହାନ୍ତି; କିନ୍ତୁ ଦୃଢ଼-ଚିତ୍ତରେ ଆଗେଇ ଚାଲିଛନ୍ତି ନେତା ହେବାକୁ । ନାନା ଅସତ୍ ଉପାୟରେ ସେ ପ୍ରଚୁର ଅର୍ଥ ଉପାର୍ଜନ କରିଛନ୍ତି, କରୁଛନ୍ତି । ନାନା ଛଳ ଓ କୂଟନୀତି ପ୍ରୟୋଗ କରି ସେ ଧୀରେ ଧୀରେ ଉଠି ଚାଲିଛନ୍ତି ନେତା ହେବାପାଇଁ ।

ସେ ଆସିଲେ ଓ ତାଙ୍କ ପଛେ ପଛେ ଆସିଲେ ଅଉ ଦୁଇଚାରିଜଣ । ଜଣେ ହାତରେ କ୍ୟାମେରା ଧରିଛନ୍ତି । ଦୁର୍ଯ୍ୟୋଧନ ବାବୁଙ୍କ ବଡ଼ପୁଅ ଟିକିଏ ଖୁସି ମୁହଁକ ହସି ଗୋଡ଼ ଘଷିଦେବାକୁ ଲାଗିଲେ । ହଠାତ୍ ଏ ପରିବର୍ତ୍ତନ ଦେଖି ଦୁର୍ଯ୍ୟୋଧନ ଚମକି ଉଠି-ଲେ । କୃତଜ୍ଞତାରେ ତାଙ୍କ ଆଖିରୁ ପାଣି ଝରିପଡ଼ିଲା । ସେ ଗୋଡ଼ ଘଷି ଦେଉଥିବା ଅବସ୍ଥାରେ କ୍ୟାମେରାବାଲା ଜଣକ ଫଟୋ ଉଠାଇ-ନେଲେ । ତା'ପରେ ସେ ହସି କହିଲେ, ମୁଁ ବର୍ତ୍ତମାନ ଆସୁଛି ବାପା, କିଛି କଷ୍ଟ ନାହିଁ ତ ।

ଦୁର୍ଯ୍ୟୋଧନ ବାବୁ ମୁଣ୍ଡ ହଲାଇ କହିଲେ 'ନା' । ସମସ୍ତେ ଚାଲିଗଲେ । ତେବେ ପିତୃଭକ୍ତିର ଫଟୋ ଉଠାଇବାକୁ ଆସିଥିଲେ ପୁଅ ।

ଏ ମୋର ପୁଅ; କିନ୍ତୁ ମୋର ଚରିତ୍ରର ଗୋଟାଏ ଦିଗର ମୂର୍ତ୍ତି ସେ । ମୁଁ ଯେବେ ଧନଲୋଭରେ ନାନା ଅସଦୁପାୟ ଆଚରଣ କରୁଥିଲି, ନାନା କୂଟନୀତିଦ୍ୱାରା ବ୍ୟବସାୟକ୍ଷେତ୍ରରେ ଦ୍ରୁତ ଉପରକୁ ଉଠି ଚାଲିଥିଲି, ଏ ପୁତ୍ର ମୋର ସେଇ ସମୟର, ମୋର ଗୁପ୍ତ ଚରିତ୍ରର ଏକ ପ୍ରକାଶ୍ୟ ମୂର୍ତ୍ତି । ଅତଏବ ତା'ର କିଛି ଦୋଷ ନାହିଁ । ମୋର ସମ୍ପୂର୍ଣ୍ଣ ଦୋଷ । ଦୁର୍ଯ୍ୟୋଧନ ବାବୁଙ୍କ ଆଖିରୁ ପୁଣି ପାଣି ଝରିପଡ଼ିଲା, ପୁଣି ସେ ଗଁ ଗଁ କରି ଉଠିଲେ । ଅସ୍ଥିରଭାବରେ ସେ ମୁଣ୍ଡ ଛିଣ୍ଡା ତକିଆ ଉପରେ ଏପାଖ ସେପାଖ ଚଳାଇବାକୁ ଲାଗିଲେ ।

ଏହି ସମୟରେ ପ୍ରବେଶ କଲେ ତାଙ୍କର ମଝିଆଁ ପୁଅ ଟଳି ଟଳି, ହାତରେ ମଦ ବୋତଲ ଧରି । ବାପଙ୍କୁ ଦେଖି ସେ ସାଷ୍ଟାଙ୍ଗ ପ୍ରଣିପାତ କରି କାନ୍ଧ ହଲାଇ କହିଲେ, ବାପା, ଆଜି ସକାଳୁ ମୁଁ, ବେଶି ନୁହଁ, ଗୋଟିଏ ମାତ୍ର ବୋତଲ ପିଇଛି । ଆଉ ଅଛି, ନେବେ ଟିକିଏ କଅନ୍ତୁ, ଭାରି ଆରାମ ଦେବ । ଦୁର୍ଯ୍ୟୋଧନ ବାବୁ ସେମିତି ବଲ ବଲ କରି ଚାହିଁଥାନ୍ତି, ପୁତ୍ର ପିତାଙ୍କୁ ଅନୁରୋଧ କରୁଛି ଟିକିଏ ପିଇବାକୁ ମଦ । ଦୁର୍ଯ୍ୟୋଧନ ବାବୁ ମୁଣ୍ଡ ଠୁଙ୍କାରି କହିଲେ, ହଁ । ହାଃ ହାଃ ହାଃ ହାଃ—ପୁତ୍ର ଉଦ୍ଦାମ ହସରେ [illegible]

ଦୁର୍ଯ୍ୟୋଧନ ବାବୁ ଭାବିବାକୁ ଲାଗିଲେ, ଏ ମଧ୍ୟ ଆମର ଚରିତ୍ରର ଅଙ୍ଗ ଏକ ପ୍ରକାଶ୍ୟ ମୂର୍ତ୍ତି । ମୁଁ ମଧ୍ୟ ଦିନେ ଘରର ସମସ୍ତଙ୍କ ଆଗରେ ମଦ ପିଉଥିଲି ଏବଂ ମାତାଲ ହେଉଥିଲି । ମୁଁ ହିଁ ଦିନେ କହୁଥିଲି, ମଦ ପିଇବା କିଛି ଖରାପ ନୁହେଁ, ସବୁ ସଭ୍ୟଦେଶରେ ସମସ୍ତ ପରିବାର ବସି ମଦ ପାନକରନ୍ତି । ତେଣୁ ମୁଁ ଆଜି ପୁତ୍ରରୂପରେ ଦେଖାଦେଇଛି, ମୋର ଚରିତ୍ରର ସେଇ ଦିଗଟି ମୂର୍ତ୍ତି ପାଇଛି ।

ଦୁର୍ଯ୍ୟୋଧନ ବାବୁ ଗାଁ ଗାଁ କରି ଉଠିଲେ ପୁଣି ହାତ ଉପରକୁ ଉଠାଇ; କାହାକୁ ଧରିବାକୁ ଚେଷ୍ଟା କଲେ; କିନ୍ତୁ ପାଇଲେ ନାହିଁ । ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ନିଜ ହାତରେ ନିଜର ବେକ ଚିପି ଆତ୍ମହତ୍ୟା କରିବାକୁ ଚେଷ୍ଟାକଲେ; କିନ୍ତୁ ପାରିଲେ ନାହିଁ ।

ଏତେ ବଡ଼ ଘର, କିନ୍ତୁ ଶୂନ୍‌ଶାନ୍ ଗୃହଅଙ୍ଗ, କେହି କେଉଁଠି ନାହାନ୍ତି । ସମସ୍ତେ ଯେ ଯା'ର ପ୍ରବୃତ୍ତି ମାର୍ଗ ଧରି କଏ କୁଆଡ଼େ ଯାଇଛନ୍ତି, ଫେରିବେ ଅନେକ ରାତିରେ । ସେତେବେଳ ପର୍ଯ୍ୟନ୍ତ ସେ ଏକା, ନିହାତି ଏକା । ଅନ୍ତରେ ବାହାରେ ଏକା ।

ମନ ତାଙ୍କର ହାହାକାର କରିଉଠିଲା । ଧନ ଥିଲା ଯେବେ ସେ ଦେହର ନାନା ଇନ୍ଦ୍ରିୟରୁ ଜାତ ନାନା ଇଚ୍ଛାକୁ ସମ୍ପୂର୍ଣ୍ଣ ପ୍ରାଧାନ୍ୟ ଦେଇଥିଲେ ଏବଂ ଚରିତାର୍ଥ କରିଥିଲେ । ଦେହଦ୍ୱାରା କୌଣସିଥିରେ ପ୍ରତାରିତ ନ ହୋଇ ନୁହନ୍ତି । ଯେ ଥାଇପାରେ ସେ କଥା ସ୍ୱୀକାର କରୁ ନ ଥିଲେ । ଆଜି ସେ ବୁଝିଚନ୍ତି ପ୍ରଥମଟି ବ୍ୟକ୍ତି ଓ ସମାଜପକ୍ଷରେ ଅମଙ୍ଗଳଜନକ, ଧ୍ୱଂସକାରକ ଏବଂ ଦ୍ୱିତୀୟଟି ଉଭୟଙ୍କ ପକ୍ଷରେ ମଙ୍ଗଳକାରକ; କିନ୍ତୁ ନେଡ଼ିଗୁଡ଼ କହୁଣିକି ଗଡ଼ି ଗଲାପରେ ଆଉ କି ଉପାୟ ଅଛି । ସେ କୌଣସିମତେ, ବହୁ ଯନ୍ତ୍ରଣା ପାଇଲେ ମଧ୍ୟ, ଦୁଇ ହାତ ଯୋଡ଼ି ନମସ୍କାର କଲେ ।

ନମସ୍କାର କରନ୍ତୁ କାହା, ହେଇ ଏକମାତ୍ର ସହାୟ, ଆଶ୍ରୟ ସାର୍ଥକତା, ଆଜି ସବୁ ବ୍ୟର୍ଥ, କହୁ କହୁ ପ୍ରବେଶ କଲେ ଦୁର୍ଯ୍ୟୋଧନ ବାବୁଙ୍କ ଜ୍ୟେଷ୍ଠ ପୁତ୍ର । ପିନ୍ଧିଛନ୍ତି ଗେରୁଆ ଖଣ୍ଡେ ଲୁଗା ଓ ଚଦର । ଖୁବ୍ ମେଧାବୀ ଛାତ୍ର ଥିଲେ ସେ; କିନ୍ତୁ କଲେଜରେ ପଢ଼ୁ ପଢ଼ୁ ସେ ସନ୍ନ୍ୟାସୀ ହୋଇ ଚାଲିଯାଇଥିଲେ । ସେ ଆଜକୁ ପାଞ୍ଚ ବର୍ଷ ଆଗର କଥା । ସେତେବେଳେ ଦୁର୍ଯ୍ୟୋଧନ ବାବୁ ଓ ସମସ୍ତେ ସିଦ୍ଧାନ୍ତ କରିଥିଲେ ସେ କୁଳର କଳଙ୍କ । ଦୁର୍ଯ୍ୟୋଧନ ବାବୁ ସେଇଦିନୁ ଲଜ୍ଜାରେ ଜ୍ୟେଷ୍ଠ ପୁତ୍ରର ନାମ ମଧ୍ୟ କାହାରି ଆଗେ ଉଲ୍ଲେଖ କରନ୍ତି ନାହିଁ, କେହି ଉଠାଇଲେ ଲଜ୍ଜିତ, ଅପମାନିତ ମନେ କରନ୍ତି ।

ଆଜି କିନ୍ତୁ ସେ ସ୍ୱପ୍ନକୁ ଦେଖି ସେ ମନରେ ଅଶେଷ ବଳ ଓ ସାନ୍ତ୍ୱନା ପାଇଲେ; କିନ୍ତୁ ଆଶ୍ଚର୍ଯ୍ୟ ହେଲେ ଭାବି, ଯେ ଏ ସ୍ୱପ୍ନ ମୋର କେତେ କାଳ ହେଲା। ଲୋକେ କହନ୍ତି ବାହାରର ସବୁ ବସ୍ତୁ-ପ୍ରକୃତି ଭିତରେ ଗୋଟିଏ ଗୋପନ ଶୁଦ୍ଧ ଚିନ୍ତା ଲୁକ୍କାୟିତ ଥାଏ !! କାହିଁ, ମୁଁ ତ କେବେ ତା'ର ସନ୍ଧାନ ପାଇନି । ଏଇ କଥାଟା ଲୋକେ ଜାଣନ୍ତି ! ଓଃ ! ମୁଁ କି ଭୁଲ କରିଛି !

ଦୁର୍ଯ୍ୟୋଧନ ବାବୁଙ୍କ ଗାଲୁ ଲୁହ ବାପାଙ୍କ ଦେହ ଆଉଁଷି ଦେଉଦେଉ କହିଲେ, "ବାପା ! ଧନଟା, ପ୍ରତିପତ୍ତି, ଜୀବନ, ମାନ, ସମ୍ମାନ ପାଇବା ସବୁରୁ ବ୍ୟକ୍ତିଗତ ଯୋଗ୍ୟତା ଉପରେ; ତାହା ଯାହାର ଅର୍ଜିବାର ଇଚ୍ଛା ବା କ୍ଷମତା ନାହିଁ, ସେ ଆଧ୍ୟାତ୍ମିକ ନୈତିକତାରେ ଲାଗିବା ଉଚିତ । ତା ନ ହେଲେ ସେ ଯେତେ ବୁଦ୍ଧିମାନ୍ ହେଉ ନା କାହିଁକି ଏ ଜଗତ ଘୋର ଅମଙ୍ଗଳ କରିବ ।"

ଦୁର୍ଯ୍ୟୋଧନ ବାବୁଙ୍କ ଇଚ୍ଛା ହେଲା ଏ ସୁଖ ମାଗରେ ଜୀବନର ସବୁ ଦୋଷ, ସବୁ ଦୁର୍ବଳତା ଖୋଲି କହିଦେବାକୁ, କହିବାର ଚେଷ୍ଟାରେ ହିଁ ତାଙ୍କର ଓଠ ଥରିଲା । ଆଖିରୁ ତାଙ୍କର ପାଣି ବାହାରି ପଡ଼ିଲା । ଅସ୍ଥିରଭାବରେ ସେ ମୁଣ୍ଡ ହଲାଇବାକୁ ଲାଗିଲେ ।

ବାପାଙ୍କୁ ଆଉଁଷି ଦେଉ ଦେଉ ସେ କହିଲେ, ବାପା ! ଆପଣ ଯାହା କହିବାକୁ ଚେଷ୍ଟା କରୁଛନ୍ତି ମୁଁ ଜାଣେ । ଭୁଲ କିଛି ନାହିଁ, ଅତଏବ ଦୈନ୍ୟତ ନିଷ୍ଠାରୁ ଜାତ ଲକ୍ଷ୍ୟକୁ ପ୍ରାପ୍ତ ହୋଇ ଓ ସ୍ୱାଧୀନତା ଦେବା ହିଁ ଅମୃତ । ଯେଉଁ ଅଦ୍ଭୁତ ନିୟମରେ ବା ଯାହାର ଇଚ୍ଛାରେ କୋଟି କୋଟି ବ୍ରହ୍ମାଣ୍ଡ ପ୍ରତି ମୁହୂର୍ତ୍ତରେ ସୃଷ୍ଟି ହୋଇ ପ୍ରତିମୁହୂର୍ତ୍ତରେ ବିଲୟ ହେଉଛି, ତାଙ୍କ ଠାରୁ ହିଁ ଶୁଦ୍ଧ ଚିନ୍ତା । ଆପଣ ସେ ଚିନ୍ତା ତ ନାହାନ୍ତି ବୋଲି ବ୍ୟସ୍ତ ହୁଅନ୍ତୁ ନାହିଁ, ବର୍ତ୍ତମାନ ମଧ୍ୟ ସମୟ ଅଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବେଳ ଅଛି ।

ଦୁର୍ଯ୍ୟୋଧନ ବାବୁ ପୁଣି ଥରେ ବହୁ କଷ୍ଟରେ ଦୁଇହାତ ଯୋଡ଼ି ନମସ୍କାର କଲେ ।

— ॥୦॥ —

ମୁଦ୍ରଣ—ଗ୍ରନ୍ଥ ପ୍ରେସ୍, [illegible]